ଶୂଦ୍ରମୁନି ଶାରଳାଦାସଙ୍କ କୃତ

# ମହାଭାରତ

उद्योग पर्व

## ଉଦ୍ୟୋଗ ପର୍ବ



ମୂଲ୍ୟ ଟ୬-୫୦

ପ୍ରକାଶକ
ଶ୍ରୀରାଧାରମଣ ପୁସ୍ତକାଳୟ, ନମିଠଉଡ଼ି, କଟକ - ୨

## ମହାଭାରତ ଉଦ୍‌ଯୋଗ ପର୍ବର

# ସୂଚୀପତ୍ର



ବିଷୟ — ପୃଷ୍ଠା

**ବିଷୟ**  **ପୃଷ୍ଠା**



ଉଦ୍‌ଯୋଗପର୍ବର—ସୂଚିପତ୍ର ସମ୍ପୂର୍ଣ୍ଣ



# ମହାଭାରତ

## ଉଦ୍‌ଯୋଗ ପର୍ବ



ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଗ୍ୟନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ତଂ ବେଦଶାସ୍ତ୍ରପରିନିଷ୍ଠିତଶୁଦ୍ଧବୁଦ୍ଧିଂ,
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୁତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ,
ବ୍ୟାସଂ ନମାମି ଶିରସା ତିଲକଂ ମୁନୀନାଂ ॥

ଆଦୌ ଧୃତରାଷ୍ଟ୍ରପାଣ୍ଡୁଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସ୍ୟାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା କୃଷ୍ଣଣଂ,
ଭୀଷ୍ମଦ୍ରୋଣସୁଯୋଧନାଦି ଦଳନଂ ଏତନ୍ମହାଭାରତଂ ॥

ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ ଯକର୍ଣ୍ଣଧାରୋ ହରିଃ ॥

ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ ।
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ॥
ଭାରତ ଶ୍ରୁତମାତ୍ରେଣ ଗଙ୍ଗାସ୍ନାନେନ ମାନବଃ ।
ବିଷ୍ଣୁସ୍ମରଣମାତ୍ରେଣ ସର୍ବପାପୈଃ ପ୍ରମୁଚ୍ୟତେ ॥
ବ୍ୟାସ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ॥

ତଥୈବ ଗଙ୍ଗା ଯମୁନା ଚ ତତ୍ର, ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର ଯତ୍ରାଚ୍ୟୁତୋଦାରକଥାପ୍ରସଙ୍ଗଃ ॥

## ଗଣେଶଙ୍କ ବନ୍ଦନା

ଜୟ ଜୟ ଗଣନାଥ ଶୁଭଫଳ ଦାତା
ଜୟ ବିଘ୍ନରାଜ ଭୂତ ଭବିଷ୍ୟଜ୍ଞାତା ।
ମଙ୍ଗଳମୟ ପାର୍ବତୀ ସୁତ ଲମ୍ବୋଦର
ସପ୍ତସିନ୍ଧୁ ଗୋପ୍ୟ ହେଲା ଯାହାର ଉଦର ।
ଜୟ ଗଜେନ୍ଦ୍ର ବଦନ ଜୟ ବିନାୟକ
ଜନକ ଅଟଇ ତବ ଦେବ ତ୍ରିଅମ୍ବକ ।
ସର୍ବଦେବାଗ୍ରତେ ପୂଜ୍ୟ ତୁହି ଗଣନାଥ
ଶାରଳା ଦାସର ପୂର୍ଣ୍ଣକର ମନୋରଥ ।

---

## ପାଣ୍ଡବଙ୍କ ଇନ୍ଦ୍ରପ୍ରସ୍ଥେ ପ୍ରବେଶ ଧୃତରାଷ୍ଟ୍ର ସଞ୍ଜୟ ସମ୍ବାଦ ଓ ଧୌମ୍ୟ ପୁରୋହିତଙ୍କର ଦୂତପଣେ ହସ୍ତିନା ଗମନ

ଅଗସ୍ତିଙ୍କ ପାଦପଦ୍ମେ କରଣ ଭକତ
ଚତୁରନ୍ତ ବୈବସ୍ୱତ ମନୁ ନରପତି ।
ବିରାଟ ପର୍ବ ଶୁଣିଲି ପ୍ରସାଦେ ତୁମ୍ଭର
ଉଦ୍‌ଯୋଗ ପର୍ବର କଥା କୁହ ଅତଃପର ।
ସେହିକଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ହୋଇଣ ହରଷ ।
ଏହୁ ଅଟେ ଉଦଯୋଗ ପର୍ବର ବାରତା
ଯା ହେତୁ କଲେ ସଙ୍ଗରେ ହୁଅନ୍ତି ବକତା ।
ଯେ ଗ୍ରନ୍ଥ ଶୁଣିଲେ ନରେ ହୁଅନ୍ତି ସର୍ବଜ୍ଞ
ଯାହା ପଢ଼ିଲେ ଦକ୍ଷତା ଲଭେ ମନ୍ଦ ବିଜ୍ଞ ।
ଉଦଯୋଗ ପର୍ବ ଜଗତେ ଧ୍ୟାନକଲେ
ସର୍ବ ଶାସ୍ତ୍ର ଜତାହୋନ୍ତି ଅଭ୍ୟାସ କରିଲେ ।
ଉଦଯୋଗ ପର୍ବ ପଢ଼ି ବଢ଼ାଇଲି ବୁଦ୍ଧି
ଉଦଯୋଗ ଚଢ଼ି ନରେ ହେବ ସର୍ବ ସିଦ୍ଧି ।
ଏ ପର୍ବ ପଢ଼ିଲେ ସଦା ହୁଏ ଧର୍ମ ଉଦେ
ଏହାକୁ ଧ୍ୟାଇ ପାଇଲେ ଶାନ୍ତି ପାନ୍ତି ହୃଦେ ।
ଉଦଯୋଗ ବୋଲିକରି ଭାରତ ସେ ପର୍ବ
ଧର୍ମ ଅର୍ଥ କାମ ମୋକ୍ଷ ମିଳେ ଏଥେଁ ସର୍ବ ।
ଚତୁର୍ବର୍ଗ ଫଳ ପାଇ ଏଥେଁ ହୁଏ ପୁଣ୍ୟ
ଆୟୁଷ ଧନ ସନ୍ତାନ ହୁଅଇ ବର୍ଦ୍ଧନ ।
ଉଦଯୋଗ ପର୍ବ ପୁଣି ଅଟେ ଦିବ୍ୟବାଣୀ
ସୁବୁଦ୍ଧି ସୁବିଜ୍ଞ ହେବ ନରେ ଏହା ଶୁଣି ।
ପାଣ୍ଡବେ ବାହାର ହେଲେ ଶୁଭେ ମତ୍ସ୍ୟଦେଶୁ
ଆକାଶେ ମଙ୍ଗଳ ଶୁଭେ ପାଣ୍ଡବଙ୍କ ଆସୁ ।
ବିରାଟ ଯେ ଅଗ୍ରୁଆଣି ହେଲେ ଦଣ୍ଡ ଘେନ
ପଞ୍ଚାଳ ସୁତ ଶୀଖଣ୍ଡୀ ପଛେ ଥାଇ ବେନ ।
ସୁଦେଷ୍ଣା ଦ୍ରୌପଦୀ ଦୁହେଁ ହେଲେ ସମ୍ଭାଷଣ
ପାଞ୍ଚାଳିକ ପ୍ରବୋଧିଲେ କରି ସମାର୍ଜ୍ଜନ ।
ଗୋପାଳୀ ନଦୀକୂଳରେ ବିରାଟ ପ୍ରବୋଧି
ବହୁତ ବିନୟୀ ରାଜା ହେଲା ଯଥାବିଧି ।
ଯୁଧିଷ୍ଠି ଦେବ ବହୁତ ବଚନ ପ୍ରକାଶି
ବୋଇଲେ ଶୁଭେ ରାଜ୍ୟକୁ ବାହୁଡ଼ ଯାଅସି
ବିରାଟ ପ୍ରଣାମ କଲା ଯୁଧିଷ୍ଠିର ପାୟେ
ବୋଇଲାକ ମୁହିଁ ଯିବ ଇନ୍ଦ୍ରପ୍ରସ୍ଥ ଯାଏ ।
ତହୁଁ ଯୁଧିଷ୍ଠି ବୋଇଲେ ସମଦଣ୍ଡ ଗଲେ
ଦୁର୍ଯ୍ୟୋଧନ କୋପିବ ଯେ ଥାଟକୁ ଦେଖିଲେ
ସୋଦର ପାଇଁ ବୁଲିଲି କାଳକ ମୁଁ ବନେ
ଧର୍ମ କପାଇଁ ଲଙ୍ଘିବୁ ପୁଣି ଅଳ୍ପଦିନେ ।
ଶାସ୍ତ୍ରରେ ଥିବା କପାଇଁ ଅରଜିବା କଳ
ଅସ୍ତ୍ରାବଧାନରେ ସିନା ଶତ୍ରୁକୁ ସମ୍ଭାଳ ।
ବିରାଟ ଶିଖଣ୍ଡୀ ଗଲେ ଯହୁଁ ସୈନ୍ୟ ଘେନ
ଚାଲିଲେ ପାଣ୍ଡବଗଣ ଦିବସ ରଜନୀ ।
ପଞ୍ଚତ୍ରିଂଶ ଦିନେ ହେଲେ ଯାଇ ଇନ୍ଦ୍ରପ୍ରସ୍ଥେ
ନଗ୍ର ଭିତରେ ରହିଲେ ତହୁଁ ବୀରପାର୍ଥେ ।
ଭୀମସେନ ବୋଲେ ସ୍ୱାମୀ ଯିବା ଆସ୍ଥାନକୁ
ଦେଖିବାକୁ ଦୁର୍ଯ୍ୟୋଧନ ଭୀଷ୍ମ ଯେ ଦ୍ରୋଣଙ୍କୁ
ଯୁଧିଷ୍ଠି ବୋଇଲେ ଆଗ ଜାଣିବା ତଦନ୍ତ
ବାର୍ତ୍ତାପାଇ ଦୁର୍ଯ୍ୟୋଧନ କରଇ କେମନ୍ତ ।
ବିଜୟ ମାନ ଗୋବିନ୍ଦ ସନ୍ଧିରେ ଆସ୍ଥାନେ
ବାର୍ତ୍ତାପାଇ ଜଣାଇଲେ ଦେଶାନ୍ତରମାନେ ।
ପାଣ୍ଡବ ଆଗତ ବୋଲି ଜଣାଇଲେ ପାଶ
ଇନ୍ଦ୍ରପ୍ରସ୍ଥରେ ଆସିଣ ହୋଇଲେ ପ୍ରବେଶ ।
ଚରମାନଙ୍କ ମୁଖରୁ ଏହି ବାର୍ତ୍ତା ଶୁଣି
ପ୍ରତିବାକ୍ୟ ଦେଲା ତହିଁ ମନ୍ତ୍ରୀ ଚୂଡ଼ାମଣି ।
ପାଣ୍ଡବେ ପ୍ରବେଶ ହେଲେ ସେ ଯେ ଇନ୍ଦ୍ରପ୍ରସ୍ଥେ
ରଥ ଗଜ ଅଶ୍ୱ ସୈନ୍ୟ ସଙ୍ଗେ ନେଇ ହେତେ

ଉଗର ବୋଇଲା ଦେବ ଶୁଣ ମହାମତି
ଅଧବାଟୁଁ ଫେରିଗଲା ବିରାଟ ନୃପତି ।
ପଣ୍ଡୁ ପୁତ୍ର ପାଞ୍ଚ ଜଣ ପୁଣି ଅଭିମନ୍ୟୁ
ପଞ୍ଚାଳ କୁମାରୀଙ୍କର ଛନ୍ତ ବାଳସୂନୁ ।
ଦ୍ରୌପଦୀ ସୁଭଦ୍ରା ପୁଣି ଉତ୍ତରା କୁମାରୀ
ଏହା ଛଡ଼ା ଅନ୍ୟ ନାହିଁ ସଙ୍ଗରେ ତାଙ୍କର ।
ସଞ୍ଜୟ କହିଲା ଯାଇ ଧୃତରାଷ୍ଟ୍ର ଆଗେ
ପାଣ୍ଡବେ ଉଦ୍ୟମ ହେଲେ ଯୁଦ୍ଧ ଉପଯୋଗେ
ଶୁଣି ଧୃତରାଷ୍ଟ୍ର ବୋଲେ କରିବା କେମନ୍ତ
ହେ ଦେବ ପୁରୁଷ ଏଥେ ହୁଅ ଉପଗତ ।
ଦୁର୍ଯ୍ୟୋଧନ କର୍ଣ୍ଣେ ବିଜେ ହୁଅ ବାକ୍ୟଦେବୀ
ପାଣ୍ଡବ କୌରବ ପ୍ରୀତି ହେଉ ଯେହ୍ନେ ଭାବି
ସଞ୍ଜୟ ବୋଇଲା ଦେବ ନ କର ସନ୍ତାପ
ଧର୍ମ ଅବଶେଷେ ଆସି ହେଲା ବହୁପାପ ।
ଦୁର୍ଯ୍ୟୋଧନ ହୃଦଗତେ ଭାବିଲା ଅନୀତି
ଆବର କୁରୁ ପାଣ୍ଡବେ କାହିଁ ଲୋଡ଼ୁ ପ୍ରୀତି ।
ଧୃତରାଷ୍ଟ୍ର ବୋଲେ ତୁହି ଶୁଣ ରେ ସଞ୍ଜୟେ
ବହୁ କାଳ ବଞ୍ଚାଇଲେ ବଶିଷ୍ଠଙ୍କ ପୋଏ ।
ପୂର୍ବେ ବିଶ୍ୱାବସୁ ରାଜା ହୋଇଥିଲା ସ୍ୱର୍ଗେ
ଭୂପତି ହେଲା ସେହୁ ଦୁର୍ବାସାଙ୍କ ରାଗେ ।
ଏ ମହୀ ସ୍ଥଳରେ ରାଜ୍ୟ କଲା ଏକ ମନୁ
କାଳେ ଉତପତ୍ତି ହେଲେ ଅଷ୍ଟୋତ୍ତର ସୂନୁ ।
ଗତିବାକ୍ୟ ପାଇଁ ଯାଇ ଦୁର୍ବାସା ସେବିଲେ
ପିତାଙ୍କୁ ନେଇଣ ସ୍ୱର୍ଗପୁରରେ ବସିଲେ ।
ଆହୋ ସଞ୍ଜୟ ଏରୂପେ କହିଲୁ ତୁ ଯହିଁ
କୋପକଲା ପରମାର୍ଥ ମୋତେ କହୁଁ କହୁଁ ।
ସାଧୁ ସାଧୁ ବିଦୁରରେ ତୋହର ଭାରତୀ
ବୋଇଲୁ ପୁତ୍ରବଧରେ ଶୋକ ହେବ ଅତି ।
ଶୁଣି କୋପକରି ତୋତେ ପ୍ରହାରିଲି ପାଦେ
ଏ ବଂଶ ବୁଡ଼ିବ ଦୁର୍ଯ୍ୟୋଧନର ବିବାଦେ ।
ସଞ୍ଜୟ ବୋଇଲେ ପ୍ରକାଶ ନ କର ଏ କଥା
ଆପଦ ଚିନ୍ତିବା ଭଲ ନୁହଇ ସର୍ବଥା ।
ଆଗେ ଯାହା ଅରଜନ୍ତି ତାକୁ କର୍ମ ବୋଲି
ଅନିତ୍ୟ ସଂସାର ଏହା ପ୍ରତ୍ୟକ୍ଷ ଦେଖିଲି ।
ପାଣ୍ଡବେ ମିଳିଲେ ଯହୁଁ ଯାଇ ଇନ୍ଦ୍ରପ୍ରସ୍ଥ
ଶୁଣି ଲକ୍ଷେ ଦ୍ୱିଜ ଘେନି ବିଜେ ପୁରୋହିତ ।

ଧର୍ମଙ୍କ ନନ୍ଦନ ସୌମ୍ୟ ପୁରୋହିତ ଦେଖି
ଉଠିଲେ ପାଣ୍ଡବମାନେ ଆସ୍ଥାନ ଉପେକ୍ଷି ।
ପାଦ୍ୟ ଅର୍ଘ୍ୟଦେଇ ତାଙ୍କୁ କଲେ ଦ୍ରବ୍ୟପୂଜା
ଅନେକ ଧର୍ମ କାର୍ପଣ୍ୟ ହେଲେ ଧର୍ମରାଜା ।
ସୁବର୍ଣ୍ଣ ଚଉତା ନେଇ ଲମ୍ବାଇଲେ ହୃଦେ
ବୋଇଲେ କଷ୍ଟୁ ତରିଲୁ ତୁମ୍ଭର ପ୍ରସାଦେ ।
ସୁବର୍ଣ୍ଣ ଆସନେ ନେଇ ବସାଇଲେ ରାୟେ
କୁଶଳ ପୁଚ୍ଛିଲେ ତାଙ୍କୁ ବହୁତ ବିନୟେ ।
ପୁରୋଧା ବୋଇଲେ ବାବୁ କହ ତୁ ଆମ୍ଭଙ୍କୁ
ଭାଇ ହେଳସିବୁଟି କି ହସ୍ତିନା ସଭାକୁ ।
ଯୁଧିଷ୍ଠିର ବୋଇଲେ ଦେବ ଏହା କି ଉଚିତ
ବହୁକାଳ ବଞ୍ଚିଲି ମୁଁ ଦୁର୍ଗମ ବନସ୍ଥ ।
ସେ ମୋର ସୋଦର ଯିନା ମୋ ପାଶେ ଆସନ୍ତା
ତେବେ ମୁଁ ଜାଣନ୍ତି ନାହିଁ ତା ମନେ ଅଛନ୍ତା
ତୁମ୍ଭେ କି ନ ଜାଣ କିସ କହିବି ମୁଁ ତାହା
ପାପବୁଦ୍ଧି ଆଚରିଲା ମୋତେ କୁରୁନାହା ।
ଅଭାବ ସୋଦର ପୁଣି ଅଭକତ ବାଳ
ଅନ୍ୟାୟୀ ଭାର୍ଯ୍ୟା ଜାଣ ବିପଦର ମୂଳ ।
ଅଭାବ ମଇତ୍ର ଆଉ ଦୁଷ୍ଟ ସୁପକାର
କଳହ ବନ୍ଧୁ ବାନ୍ଧବ ନଷ୍ଟେଁ ଆୟୁହର ।
କାଳରୁଦ୍ର ଦେବତାଦି ଦୈତ୍ୟଯୋଗୀ ତୀର୍ଥ
ପଣ୍ଡିତଜନେ ଏହାଙ୍କୁ କରନ୍ତି ତ୍ୟକତ ।
ପୁରୋଧା ବୋଇଲେ ବାବୁ ପଣ୍ଡୁ ଧୃତରାଷ୍ଟ୍ର
ଏକଆତ୍ମା ତନୁଁ ଜାତ ତୁମ୍ଭେ ଭାଇ ଅଛ ।
ନୀର କ୍ଷୀର ପରକାରେ ଅଛଇ ଅଭେଦ
ମିଶିପାରିଲେ ହୁଅନ୍ତା ବହୁ ସୁଖପ୍ରଦ ।
ବିଶେଷ ସେ ନ ବୟସେ ସେହୁ ମତ୍ତଗର୍ବ
ତାଙ୍କର ଦୋଷ ଉପେକ୍ଷା କରିବୁ ତୁ ସର୍ବ ।
ଧର୍ମ ବୋଇଲେ ତେମନ୍ତ ଭାଇ ପୋଡ଼ୁ ପୋଡ଼ୁ
ଭୁଞ୍ଜି ବସାଇ ଭୀମକୁ ଦେଲେ ବିଷଲଡ଼ୁ ।
ଭୋଜନକାଳରେ ବିଷ ଘାରେ ଯେତେବେଳେ
ରାନ୍ଧେ ବାନ୍ଧି ମେଲିଦେଲେ ନେଇ ସିନ୍ଧୁଜଳେ
ଜତୁଗୃହ ଦାତୁଣୀରେ କରାଇଲେ କୂଟେ
ନେଉ ସଜଳସ ଗୁଆଘୃତ ଛଣପଟେ ।
ରାତ୍ରିକାଳରେ ସେ ଗୃହ ଦେଲେ ଭସ୍ମକରି
ଧର୍ମ ବଳରେ ଅଇଲୁ ତହିଁରୁ ଉବୁରି ।

ପୂର୍ବେହିଁ କପଟ ପଶା ଖେଳି ଶକୁନି
କୂଟ କପଟରେ ରାଜ୍ୟ ଭାର୍ଯ୍ୟା ଗଲେ ନେଇ ।
ପୁଣି ବସାଇଲେ ମୋତେ ଅଜ୍ଞାନର ତଳେ
ଦୁଃଶା ଯାଇ ଧରିଆଣେ ଦ୍ରୌପଦୀଙ୍କୁ ବଳେ ।
ମହାସତୀଙ୍କୁ ଧରିଣ ବିବସନା କଲେ
ଧର୍ମବଳରେ ଦ୍ରୌପଦୀ ତହୁଁ ଉଦ୍ଧରିଲେ ।
ଘୋଷଯାତ୍ରା କରିଗଲେ କାମ୍ୟକ କାନନେ
ଅତି କ୍ଲେଶ ସହିଲେ ନାହିଁ ଦେବମାନେ ।
ଚିତ୍ରସେନ ଦୁର୍ଯ୍ୟୋଧନେ ବାନ୍ଧିନେଲ ରାଗେ
ଗନ୍ଧର୍ବଙ୍କୁ ଜିଣି ପାର୍ଥ ଆଣିଲାକ ବେଗେ ।
ପାଞ୍ଚାଳ ଦେଶେ ନ କଲେ କେଉଁ କେଉଁ କଥା
ତୁମ୍ଭେ ତାହା ଶୁଣିଅଛ ଯେମନ୍ତ ବାରତା
ବନୁ ଦ୍ରୌପଦୀଙ୍କୁ ନିଏ ଜୟଦ୍ରଥ ବଳେ
କେତେ ଦୁର୍ବାଦ କଥା ସହିଛୁ ମୁଁ କାଳେ ।
ବିପତ୍ତି ପଡ଼ଇ ଯେବେ ଧର୍ମକଥା କହୁ
ବେଦଶାସ୍ତ୍ରମାନ ସତ୍ୟ ହୋଇବ ବା କାହୁଁ ।
ରାଜକୁଳେ ଜନ୍ମ ହୋଇ ଏମନ୍ତ ଅବସ୍ଥା
କୁରୁ ପାଣ୍ଡବଙ୍କ ପ୍ରୀତି ହେବ କି ସର୍ବଥା ।
ପଶ୍ଚିମେ ଆଦିତ୍ୟ ଯେବେ ହୋଇବଟି ଉଦେ
ପୂର୍ବରେ ଅସ୍ତ ହୋଇବେ ଯଦ୍ୟପି ସେ ହାଦେ
ଚନ୍ଦ୍ର ନକ୍ଷତ୍ରଏ ଯେବେ ପୂର୍ଣ୍ଣିମୀ ତଥିରେ
ଜଳପ୍ରଳୟରେ ଭୂମି ନାଶ ଯାଇପାରେ ।
ଧାତୁ ବାଦ୍ୟ ବୃକ୍ଷ ସେ ସୃଜେ ଅନ୍ୟ ସୃଷ୍ଟି
ପର୍ବତ ଉପରେ ଯେବେ ପଦ୍ମପୁଷ୍ପ ଫୁଟି ।
ଜଳ ଉପରେ ଯଦ୍ୟପି ଭାସିବ ପଥର
ସୋଲ ବୁଡ଼ିଯିବ ଜଳେ ନୋହିବ ଗୋଚର
ସ୍ଥିର ହୋଇବ ପ୍ରଭୁତ ଦିବସ ରଜନୀ
ଜଳ ସେ ଅଗ୍ନି ଶୀତଳ ହୋଇବ ବହନ ।
ଯଦ୍ୟପି ଏ କଥାମାନ ସତ୍ୟହିଁ ହୋଇବ
ତେବେ ଯୁଧିଷ୍ଠିର କଥା ଅନ୍ୟଥା ନୋହିବ ।
ଦୁର୍ଯ୍ୟୋଧନ ସଙ୍ଗେ ଯେବେ ବିବାଦ ନୁହଇ
ତେବେ ନରକେ ତ ଥାଉ ବସ ମୁଁ ଭରଇ ।
ହିବ ଦ୍ରୋଣ ହୋଇବଇଁ କହିଲେ ନିୟମ
ନିଶ୍ଚୟ ସଙ୍କଳ୍ପ ମୋର ହୋଇଲା ସଂଗ୍ରାମ ।
ପୁରୋଧା ବୋଇଲେ ବାବୁ ଧର୍ମରାଜ ଗଲ
ସହଦେବ ବୋଲେ କଳି ନିକଟ ହୋଇଲ ।

ଯୁଧିଷ୍ଠି ବୋଇଲେ ପୁଣି ଶୁଣ ପୁରୋହିତେ
ହସ୍ତିନା ଗମନ କର ତୁମ୍ଭେ ମୋ ନିମନ୍ତେ
ସମ୍ବାଦ ମାତ୍ର ବସିଲା ମୋର ଧାର୍ତ୍ତରାଷ୍ଟ୍ରି
ବନ୍ଧୁରେ ପୁରୋଧା ମୋତେ ହୋଇଲା ଅଚେଷ୍ଟି
ପୁଣି ଧୃତରାଷ୍ଟ୍ର ଆଗେ ଜଣାଇବ ଯାଇଁ
ଇନ୍ଦ୍ରପ୍ରସ୍ଥ ରାଜ୍ୟଖଣ୍ଡ ଦେଉ କୁରୁସାଇଁ ।
ତୁମ୍ଭେ ପୁରୋଧା ଆମ୍ଭର ଗୁରୁଙ୍କର ଗୁରୁ
ବୁଝାଇ କହିବା ଧୃତରାଷ୍ଟ୍ର ଦୟା କରୁ ।
ପୁରୋଧା କହିଲେ ଆମ୍ଭେ ଯିବୁ ତୋର ବୋଲେ
କି ବୋଲିବୁ ଦୁର୍ଯ୍ୟୋଧନ ନିଷେଧ କରିଲେ
ଯୁଧିଷ୍ଠି ବୋଇଲେ ତୁମ୍ଭେ କରିବ ବା କିସ
ନାସ୍ତି ବଚନ ବୋଇଲେ ବାହୁଡ଼ିଣ ଆସ ।
ମେରୁତୁଳ ଦେଲ ଏହି କୁଣ୍ଡଳ ଆମ୍ଭଙ୍କୁ
ଅପୂର୍ବ ପଦାର୍ଥ ଏହା ଦେବଟି ପିତାଙ୍କୁ ।
ଯୁଧିଷ୍ଠିରଙ୍କ ନିବଧାର ବଚନକୁ ଶୁଣି
ପୁରୋହିତ ଚଳିଗଲେ ଦୂତରୂପେ ପୁଣି ।
ସଙ୍ଗେ ଘେନିଣ ଚଳିଲେ ଏକ ଲକ୍ଷ ଶିଷ୍ୟ
ହସ୍ତିନାପୁରରେ ଯାଇ ହୋଇଲେ ପ୍ରବେଶ ।
ଦୁର୍ଯ୍ୟୋଧନ ବସିଅଛୁ ସମ୍ଭବ ଆସନେ
କର୍ଣ୍ଣ ଦୁଃଶାସନ ମନ୍ତ୍ରୀ ଅଛନ୍ତି ଏମାନେ ।
ପୁରୋହିତ ପ୍ରବେଶିଲେ ନିକଟରେ ଯାଇଁ
ତାହାଙ୍କୁ ଦେଖି ଶକୁନି ରାଜାକୁ କହଇ ।
ଦେଖ ଧୌମ୍ୟ ପୁରୋହିତ ଆସୁଛି କାହିଁକି
ଏ କଥା ବିଚାର କର ଜାଣିଲ କି ଦେଖି ।
କର୍ଣ୍ଣ ବୋଇଲେ ତୁ ଅଟୁ ପଣ୍ଡିତ ସୁଧୀର
ତୋତେ ସିନା ସବୁକଥା ହୁଅଇ ଗୋଚର ।
ଶୂରବନ୍ତ ଗୁଣବନ୍ତ ଭବିଷ୍ୟତଜ୍ଞାତା
ଅଦୃଷ୍ଟିକୁ ଦୃଷ୍ଟି କରୁ ବିଶେଷ ବିଧାତା ।
ଶକୁନି ବୋଲଇ ବୁଝ ହୃଦୟ ନିବେଶି
ଦୂତପଣେ ଯୁଧିଷ୍ଠିର ସ୍ଥାକୁ ଅଛି ପେଷି ।
ଏହି ଯେ ପ୍ରମାଣ କଥା ହୋଇବ ଯୁକତେ
ଏହୁ ଆସୁଅଛି ଗ୍ରାମ ମାଗିବା ନିମନ୍ତେ ।
ଶକୁନି ମନ୍ତ୍ରୀ କହିଲେ ପଛେ ଏ ସନ୍ଦେଶ
ଧୌମ୍ୟପୁରୋଧା ଆସ୍ଥାନେ ହୋଇଲେ ପ୍ରବେଶ
ବସିବାପାଇଁ ଆସନ ଦେଲେ କୁରୁବଂଶେ
ମାତ୍ର ବସିଲେ ପ୍ରୋହିତ ମନ ଗଳାଟିଏ ।

କଲ୍ୟାଣ କରି କହନ୍ତି ଧୌମ୍ୟ ପୁରୋହିତ
ଆମ୍ଭର ଆୟୁଷ ଦେହ ବର୍ଦ୍ଧି ଶତ ଘୃତ ।
ସବୁ କୁଶଳ ବୋଲିଣ ବୋଲେ କୁରୁରାଣ
ତୁମ୍ଭେ ଆସିଅଛ ଏଥେ କେବଣ କାରଣ ।
ପୁରୋହିତ ବୋଇଲେ ବାବୁ ଶୁଣ ଧାର୍ତ୍ତରାଷ୍ଟ୍ର
ବନବାସ ଦୁଃଖ ସାରି ଆସିଲେ ଯୁଧିଷ୍ଠି ।
ବାହାରେ ବାହାରେ ଆସିଛନ୍ତି ଇନ୍ଦ୍ରପ୍ରସ୍ଥ
କେଉଁପରି ଛନ୍ତି ତାହା ଦେଖିବା ବିହିତ ।
ତୋହର ସେ ନିଜରାଜ୍ୟ ଅଟେ ଇନ୍ଦ୍ରପ୍ରସ୍ଥ
ତୋର ତହିଁକି ଯିବାର ଅଟଇ ଉଚିତ ।
ବାବୁ ସୁଧାବିଷ ଦୁଇ ରସନା ଧରଇ
ସତ ଛାଡ଼ି ଅସତକୁ ଯିବା କାହିଁପାଇଁ ।
ବାବୁ ଧର୍ମପଥେ ଥିଲେ ହେ ମାନଗୋବିନ୍ଦ
କଦାଚ ପ୍ରାଣୀମାନଙ୍କୁ ନ ପଡ଼େ ଆପଦ ।
ସୋଦରଙ୍କୁ ସମ୍ଭାଳିଲେ ଉଦ୍ଧଜଇ ଧର୍ମ
ସମସ୍ତ ପ୍ରାଣୀମାନଙ୍କ ଅଟଇ ଏ କର୍ମ ।
ଉଠ ଉଠ ବାବୁ ଚାଲ ଇନ୍ଦ୍ରପ୍ରସ୍ଥେ ଯିବା
କୌରବେ ପାଣ୍ଡବଗଣେ ଢେଳଣ ଆସିବା ।
ବଂଶେ ଦଶ ପୁନ ସିନା ବଂଶ କରେ ରକ୍ଷା
ଇହ ପରଲୋକେ ତାକୁ କରନ୍ତି ଅପେକ୍ଷା ।
ଏକଥା କହିଲୁ ହୋଇ ତୁମ୍ଭର ଯେ ଗୁରୁ
ପରମ ଗତି ପାଇବୁ ଯେବେ ଏହା କରୁ ।
ଦୁର୍ଯ୍ୟୋଧନ ବୋଲେ ଗୁରୁ ଏବେ ରୁହ ରୁହ
ପାଇଲୁ ବାରତା ପୁଣି ଆଉ ଯେ ନ କୁହ ।
ପେଷିଅଛୁ ଯୁଧିଷ୍ଠିର ଯହିଁର ନିମନ୍ତେ
ନିଶ୍ଚୟ କରି ସେ କଥା କୁହ କିନା ମୋତେ
ପୁରୋହିତ ବୋଇଲେ ତୁହି ସର୍ବ ସୁଲକ୍ଷଣ
ପର ମନ ଜାଣିନ୍ତା ତୁ ଅତି ବିଚକ୍ଷଣ ।
ତୁହି ଯେତେବେଳେ ତାଙ୍କୁ ନ ଗଲୁ ପାଛୋଟି
ତେଣୁ ସନ୍ତାପ ପାଇଲେ ମନରେ ଯୁଧିଷ୍ଠି ।
ଅନେକ ପୁରଃସରଣ କହିଲେ ଆମ୍ଭଙ୍କୁ
ଇନ୍ଦ୍ରପ୍ରସ୍ଥ ରାଜ୍ୟଖଣ୍ଡି ଦିଅ ପାଣ୍ଡବଙ୍କୁ ।
ଏକା ଗ୍ରାମକରେ ଥିବେ ଏ ସକଳ ପ୍ରାଣୀ
ଦୁର୍ଯ୍ୟୋଧନର ମୁକୁଟେ କମ୍ପେ ତାହା ଶୁଣି ।
ବୋଲେ ପୁରୋହିତ ତୁମ୍ଭେ ବଂଶର କାରଣ
ଏପରି ଅନ୍ୟାୟ କଥା କହ ଅକାରଣ ।
ତୁମ୍ଭେ ବୋଲି ଏଡ଼େ କଥା କହିଲ ଏ ସ୍ଥଳେ
ଆନ ହୋଇଥିଲେ ଶିର ଛେଦନ୍ତି ମୁଁ ହେଳେ
ତୁମ୍ଭେ ପୁରୋହିତ ଯେବେ ଦେଖିବାକୁ ଗଲ
ଉଭୟ କୁଳ ମଙ୍ଗଳ ମନେ ନ ଚିନ୍ତିଲ ।
ପୁରୋଧା ବୋଇଲେ ବାବୁ ଉତ୍ତମ ବଂଶର
ଗୁଣବନ୍ତ ଶ୍ରୀମନ୍ତ ତୁ ତୋ ଜୀବନ ସାର ।
ଦୁଇ ଭାଇ ଯେଣୁ ତୁମ୍ଭେ ଆମ୍ଭ ବୋଲକଲେ
ବଂଶ ବର୍ଦ୍ଧିତ ହୁଅନ୍ତା ଧନ ଯାନ୍ତା ଭଲେ ।
ମାନଗୋବିନ୍ଦ ବୋଲାଉ ଶ୍ରେଷ୍ଠ ତୋର ବାକ୍ୟ
ଜାଣିଲି ଏବେ ତୁ ଅଟୁ ବଡ଼ ଅବିବେକ ।
ଏକ ପଡ଼ାଏ ପାଆନ୍ତା ଯଦ୍ୟପି ଯୁଧିଷ୍ଠି
ସକଳ କୁଶଳ ହୋନ୍ତା ଦୁଅନ୍ତା ଅରିଷ୍ଟି ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ସମସ୍ତେହିଁ ଅଛ
ଆମ୍ଭ ବାକ୍ୟ ସୁମରିବ ତୁମ୍ଭେମାନେ ପଛ ।
ଏତେ ବୋଲି ପୁରୋହିତ ଉଠିଲେ ଆସ୍ଥାନୁ
ନାସିକାରେ ହସ୍ତ ଦେଇ ହସେ କୁରୁସୂନୁ ।
ବହୁ ବୁଝାଇ ଉଠିଲେ ଧୌମ୍ୟ ପୁରୋହିତ
ମୂର୍ଖ ଦୁର୍ଯ୍ୟୋଧନ କଲାନାହିଁ କର୍ଣ୍ଣପାତ ।
ଲଜ୍ଜାପାଇ ଚାଲିଗଲେ ତହୁଁ ପୁରୋହିତ
ଇନ୍ଦ୍ରପ୍ରସ୍ଥରେ ଯାଇଣ ହେଲେ ଉପସ୍ଥିତ ।
ମନମଧ୍ୟରେ ବିରସ ହର୍ଷଭାବ ନାହିଁ
ଯୁଧିଷ୍ଠି ଦେବ ଜାଣିଲେ ତାଙ୍କ ମୁଖ ଚାହିଁ ।
ବିରସ ଦେଖି ପୁଚ୍ଛନ୍ତି ତାଙ୍କୁ ଧର୍ମରାଜ
ସୁସିଦ୍ଧ ପ୍ରାୟ ନ ଦିଶେ ନିଶ୍ଚେ ମୋର କାର୍ଯ୍ୟ
ମନ ବିରସେ ବୋଲନ୍ତି ପୁରୋଧା ବ୍ରାହ୍ମଣ
ଯେ ଯାହାର କର୍ମଫଳ ଭୁଞ୍ଜି ଦୁଇଜଣ ।
ଦ୍ୱନ୍ଦ୍ୱ କରିବାର ଯାର ଅଟଇ ପ୍ରକୃତି
ସର୍ବଦା ଇଚ୍ଛଇ ସେ କି ଲଭିବାକୁ ଶାନ୍ତି
ସଂକ୍ଷେପଭାବେ ଧର୍ମକୁ କହିଲେ ସେ ଧୌମ୍ୟ
କଉରବେ ପାଣ୍ଡବେ କି ଆଉ ହେବେ ସାମ୍ୟ
ଦ୍ୱନ୍ଦ୍ୱ କରିବାର ଇଚ୍ଛା ତୋର ଯେବେ ଅଛି
ଅଷ୍ଟାଙ୍ଗର ସମାଧାନ ନ ହୋଇଲେ କିଛି ।
ତୁ ଯେବେ ସହିବୁ ତେବେ ରହିବଟି ବଂଶ
ନ ସହିଲେ ଦୁଇକୁଳ ନିଶ୍ଚେ ଗଲେ ନାଶ ।
ଯୁଧିଷ୍ଠି ବୋଇଲେ ମୋତେ ଯେବେ ଦଶବର୍ଷ
ପିତା ପଣ୍ଡୁ ମହାରଜା ପ୍ରାଣେ ଗଲେ ନାଶ ।

ଊଣେଇଶ ବର୍ଷେ ଜତୁଘରେ ଦହାକଲେ
ପଞ୍ଚବିଂଶ ବର୍ଷେ ତହୁଁ ଉଦ୍ଧରିଲୁ ଭଲେ ।
ଦ୍ୱାଦଶ ବରଷ ଆମ୍ଭେ ହେଲୁ ବନବାସୀ
ପାଞ୍ଚାଳୀକୁ ଲଭି ଜିଲୁ ମହାଲକ୍ଷ ନାଶି ।
ତହିଁ ଉତ୍ତରୁ ଯେବେ ମୁଁ ଅଇଲି ରାଜ୍ୟକୁ
ପୁଣିହିଁ ପଶି ନ ଦେଲେ ମୋତେ ହସ୍ତିନାକୁ
ସମସ୍ତେକ ରହିଲ ମୁଁ ବାରୁଣା ନଗରେ
କପଟ ପଶା ଖେଳାଇ ମୋ ସର୍ବସ୍ୱ ହରେ ।
ପୁଣିହିଁ ବାରବରଷ ବୁଲି ଘୋରବନେ
ବର୍ଷେ ତେରଦିନ ପୁଣି ରହିଲୁ ଗୋପନେ ।
ହେ ପୁରୋଧା ଯେତେ ଦୁଃଖ ସହିବା ସ୍ୱଭାବେ
ପଞ୍ଚାବନ ବର୍ଷ ମୋତେ ହେଲା ଆସି ଏବେ
କି ଅଶୁଭ କାଳେ ରାଜା ହୋଇଲୁ ଏଠାୟେ
ଅନର୍ଥ ଦଶାଇ ମୋତେ ଶୁଭଯୋଗ ପ୍ରାୟେ ।
ତୁମ୍ଭେ ସାକ୍ଷୀ ହୋଇଥାଅ ହେ ପୁରୋଧାଧୌମ୍ୟ
ନିଶ୍ଚୟ ବ୍ରତ ହୋଇଲା ମୋହର ସଂଗ୍ରାମ ।
ଯୁଧିଷ୍ଠିର ଯେଉଁ ମଣି ତାଙ୍କୁ ଦେଇଥିଲେ
ତାହା ପୁରୋହିତ ପୁଣି ଲେଉଟାଇ ଦେଲେ ।
ଯୁଧିଷ୍ଠିର ମନମଧ୍ୟେ ବହି ଅତି ତମ
ମନ୍ଦିରକୁ ଚଳିଗଲେ କରି ନିତ୍ୟକର୍ମ ।
ଭକତ ବତ୍ସଳ ପ୍ରଭୁ ଜଗତର ନାଥ
ଭାରତରେ ଫେଡ଼ିଦିଅ ଭକତର ଆରତ ।
ଆହେ ଦୀନବନ୍ଧୁ ପ୍ରଭୁ ଦୀନ ଉଦ୍ଧାରଣ
ଶମନ ଦାଉରୁ ମୋତେ କର ପରିତ୍ରାଣ ।
ଅଭୟ ଚରଣେ ପ୍ରଭୁ ପଶିଣ ଶରଣ
ଶାରଳା ଦାସ କରିଲ ଭାରତ ରଚନ ।

---

## ବିଦୁରଙ୍କୁ ଯୁଧିଷ୍ଠିର ନିକଟେ ଧୃତରାଷ୍ଟ୍ର ଦ୍ୱାରା ପ୍ରେରଣ, ଯୁଧିଷ୍ଠିରଙ୍କର ସମର ପ୍ରତିଜ୍ଞା ଓ ଧୃତରାଷ୍ଟ୍ର ଭୁରିଶ୍ରବା, ବିଦୁର ଦୁର୍ଯ୍ୟୋଧନକୁ ପଢ଼ା ପ୍ରାର୍ଥନା

ଏଥିଅନ୍ତେ ପଚାରିଲେ ଶଳଜୋର ପତି
ନିବେଦନ କେନ ମୋର ଅଛି ମହାମତି ।
ଅଜାତଶତ୍ରୁ ଯୁଧିଷ୍ଠିର ହେଲେ କୋପମନ
ଶୁଣି କସ କଲେ ପୁଣି ସେ ଅନ୍ଧ ରାଜନ ।
ସେହି କଥା ଶୁଣିବାକୁ ମୋ ଚିତ୍ତ ବଳଇ
କହନ୍ତୁ ଅଗସ୍ତି ମୁନି ଶୁଣ ମନଦେଇ ।
ତଦନ୍ତ ପ୍ରଭାତ ହେଉ ଅନ୍ଧ ନରପତି
ବିଦୁରଙ୍କୁ ଡକାଇଲେ ଆପଣାର କତି ।
ବୋଇଲେ ଯାଅ ବିଦୁର ଯୁଧିଷ୍ଠିର ତହିଁ
ଧର୍ମ ଆଶ୍ରେ କରି କାଳେ ଥାଉ ତହିଁ ରହି ।
ପଣ୍ଡିତ ଜନ ଯଦ୍ୟପି ଅନ୍ୟାୟୀ ହୋଇବ
ନ ସହିଲେ ସେହୁ କାହିଁ ପୃଥିବୀ ରହିବ ।
ମୂର୍ଖ ଦୁର୍ଯ୍ୟୋଧନ ସିନା ଲଙ୍ଘିଲା ତାହାକୁ
ସେ ସମସ୍ତ ଦୋଷ କ୍ଷମା କରିବ ଆମ୍ଭଙ୍କୁ ।
ଦୁହିଁଙ୍କର ମନ୍ତ୍ରଗର୍ବ ଶାନ୍ତ ହେବାପାଏ
ଅପେକ୍ଷା କରି ରହନ୍ତୁ ଦିବସ ଥୋକାଏ ।
ଅନେକ ପ୍ରବୋଧବାକ୍ୟ କହେ ତଆରଣି
ଉଭୟ କୁଳ ଯେମନ୍ତ ହେଉ ସୁରକ୍ଷଣ ।
ଧୃତରାଷ୍ଟ୍ର ବାକ୍ୟ ଶୁଣି ବିଦୁର ମହାତ୍ମା
ଇନ୍ଦ୍ରପ୍ରସ୍ଥକୁ ଚଳଇ ଭାରତର ବ୍ରହ୍ମା ।
ଉଦୟ ସେ ଦିନକର ବେଳ ପାଞ୍ଚଘଡ଼ି
ବିଦୁର ଭେଟିଲେ ତହିଁ କାଳବେଳ ଗୁଡ଼ି ।
ନିତ୍ୟକର୍ମ ସାରିକରି ହେବ ଧର୍ମରାୟେ
ଆପଣା ସଭାରେ କରିଅଛନ୍ତି ବିଜୟେ ।
ଦେଖି ଆସ୍ଥାନ ତେଜିଲେ ଧର୍ମଙ୍କ କୁମର
ଭାଇଙ୍କୁ ସଙ୍ଗରେ ଘେନି କଲେ ନମସ୍କାର ।
ଯଥାବିଧି ମାନ୍ୟ ତାଙ୍କୁ କଲେ ଧର୍ମରାୟ
ସଙ୍ଗରେ ବସିଲେ ଆମ୍ବିକାର ତନୟ ।
ଭୀମ ଅର୍ଜୁନ ନକୁଳ ସହୋଦର ଘେନି
କୁଶଳ ବାରତା ଧର୍ମ ପଚାରିଲେ ପୁଣି ।
ସମସ୍ତ କୁଶଳ ବୋଲି ବିଦୁରେ ପ୍ରକାଶି
ଶୋକଭରେ ଯୁଧିଷ୍ଠିର ବିଦୁର ସମ୍ଭାଷି ।
ଯୁଧିଷ୍ଠିର ବୋଇଲେ ତାତ ବନେ ଥିଲି ସୁସ୍ଥ
ରାଜ୍ୟେ ଆସି ଏବେ ମୁହିଁ ହେଉଅଛି ବ୍ୟସ୍ତ ।
ବିଦୁର ବୋଇଲେ ଯେବେ ବନେ ସୁଖେ ଥିଲ
କିଙ୍ଗାସ ସହିବା ପାଇଁ କପାଇଁ ଅଇଲ ।
ଯୁଧିଷ୍ଠିର ବୋଇଲେ ତାତ ହେଲି ବନବାସୀ
ତଥାପି କୌରବେ ଯାଇ ଆସନ୍ତି କିଙ୍ଗାସି ।
ବିଦୁର ବୋଇଲେ ବାବୁ ମହତ ଜନଙ୍କୁ
ଧର୍ମରେ କଷଣ ପଡ଼େ କହୁଛୁ ତୁମ୍ଭଙ୍କୁ ।

ତୁହ୍ମ ମହତ ବିବେକ ଅଟୁ ଧର୍ମଶୀଳ
ସୁଜ୍ଞାନ ସୁବୁଦ୍ଧି ତୋର ଅଟେ ସର୍ବକାଳ ।
ଆଉ କଷ୍ଟକାଳ ବାବୁ ସହିକିନା ଧର୍ମ
କାଳେ ଦୁଷ୍ଟଜନ୍ମ ବାବୁ ହୁଅଇ ଅକର୍ମ ।
ଯୁଧିଷ୍ଠି ବୋଇଲେ ତାତ ଏମନ୍ତ ନ କହ
କେମନ୍ତେ କୁରୁ ପାଣ୍ଡବେ ବଢ଼ିବ ସେନେହ ।
ତୁ ମହାମତ ପଣ୍ଡିତ ସୂତ୍ରରେ ସବୁ ବୁଦ୍ଧି
ତୁମ୍ଭେ ଉପଦେଶ ଦେଇ କର ବେଗେ ସନ୍ଧି ।
ତୁମ୍ଭ ବିହୁଁ ଆନ ନାହିଁ ଆମ୍ଭ ହିତକାରୀ
ସମବାକ୍ୟ ଘେନିଯାଅ ହସ୍ତିନା ନଗରୀ ।
ସେ ସ୍ଥାନକୁ ଯାଇ ଧୃତରାଷ୍ଟ୍ର ଆଗେ କହ
ଶାନ୍ତ ଭଜାଇଣ କଥା ଯେମନ୍ତେ ବୁଝାଅ ।
ଇନ୍ଦ୍ରପ୍ରସ୍ଥ ପଞ୍ଚବିଂଶ ସହସ୍ରେକ ପୁଣ
ହସ୍ତିନା ପନ୍ଦର ସହସ୍ର ଅଟଇ ପ୍ରମାଣ ।
ଯମପ୍ରସ୍ଥ ଅଷ୍ଟାବିଂଶ ସହସ୍ରର ସ୍ଥଳୀ
ଜଇନ୍ତା ଦ୍ୱିସହସ୍ରପୂର୍ଣ ଏଥକୁ ଉଗୁଳ ।
କୋଡ଼ିଏ ସହସ୍ରପୂର୍ଣ ବାରୁଣା ପ୍ରଦେଶ
ଏହି ପଞ୍ଚରାଜ୍ୟ ଲକ୍ଷେ ଯୋଜନ ପ୍ରକାଶ ।
ସମସ୍ତ ସେ ଭୋଗ କରୁ କୁରୁରାଜ୍ୟ ମାଡ଼ି
ଭାଇଙ୍କୁ ଘେନି ମୁଁ ଥାଏ କୋଣକରେ ପଡ଼ି ।
ଧୃତରାଷ୍ଟ୍ରଙ୍କ ଚରଣ ସେବା କରୁଥିବୁ
ଏହା ଅଟେ ଦୃଢ଼ ଆଉ କିସ ବା କହିବୁ ।
ଯଦ୍ୟପି ସେ ପଞ୍ଚପଡ଼ା ନ ଦେବ ଆମ୍ଭଙ୍କୁ
ନିଶ୍ଚୟ ସମର ହେବ ବୋଲିବ ପିତାଙ୍କୁ ।
ମୁଁ ଯେବେ ତାହାଙ୍କ ତୁଲେ ରଣ ନ କରଇ
ହେ ପିତା ତୋ ଚରଣରେ ଦ୍ରୋହୀ ମୁଁ ହେବଇଁ
ଧର୍ମ ଧର୍ମ ସୁମରିଲେ ଅମ୍ବୁବର୍ଷି ପୁଅ
ସରିଲା ସକଳ ଧର୍ମ ଗୁଡ଼ିଲା ସନ୍ଦେହ ।
ଉଠିଲେ ବିଦୁର ଶୁଣି ନରଧାର ବାଣୀ
ଯୁଧିଷ୍ଠିଙ୍କୁ ତିଆରିଲେ ଉଭା ହୋଇ ପୁଣି ।
ବାବୁ ତୁହି ସଗ୍ରାମକୁ କଲୁ ଯେବେ ପଣ
ପ୍ରତ୍ୟକ୍ଷରେ ଜାଣୁଛି କି ଭୀଷ୍ମଙ୍କର ଗୁଣ ।
ଏହିପରି କହନ୍ତି ଯେ ବିଦୁର ମହାତ୍ମା
ଇଚ୍ଛାମୃତ୍ୟୁ ବର ପାଇଅଛନ୍ତି ଜାଣିମା ।
ସେ ଭୀଷ୍ମଙ୍କୁ ଯୁଦ୍ଧେ କରେ କରିବେ ଉପ୍ରୋଧ
ସାକ୍ଷାତ ସମରେ ତାଙ୍କୁ ଜିଣିମା ଅସାଧ ।
ଦ୍ରୋଣାଚାର୍ଯ୍ୟ ଜାଣ କିନା ପାଠରଷି ଗୋହୀ
ନିମିଷକେ ମହୀଭାର ପାରନ୍ତି ନିପାତ ।
ହସ୍ତେ ଅସ୍ତ୍ର ଧରିଥିଲେ ଯାର ନାହିଁ ମୃତ୍ୟୁ
ମୌନଭାବେ ଜାଣଇ ସେ ସବୁଙ୍କର ହେତୁ ।
କୃପାଚାର୍ଯ୍ୟ ଭାରତର ଅଟେ କୁଳବ୍ରହ୍ମା
ଚିରଜୀବୀ କଲ୍ପକ୍ଷୀ ଅଟେ ଅଶ୍ୱତ୍ଥାମା ।
ମଦ୍ରଦେଶ ଅଧିପତି ଶଲ୍ୟ ମହାରଥୀ
ରଣେ ଡରନ୍ତି ଶ୍ରୀକୃଷ୍ଣ ଦେଖି ଯାର ମୂର୍ତ୍ତି ।
ଭୂରିଶ୍ରବା ବାହ୍ଲିକ ସେ ଆଉ ସୋମଦତ୍ତ
ଅକ୍ଷୟ ରଣଯୋଦ୍ଧା ଏ ଅଟନ୍ତି ଦୁରନ୍ତ ।
କର୍ଣ୍ଣ ମହାରଥୀ ତୋର ସୋଦର ଅଟଇ
କେହି ନ ବର୍ତ୍ତଇ ସେହୁ ଯାହାକୁ ଭେଟଇ ।
ଅଭେଦ୍ୟ କବଚ ବଜ୍ର ଦେହରେ ଛଉଣୀ
ଅମୃତ କୁଣ୍ଡଳ ବେନି କର୍ଣ୍ଣେ ଅଛି ଭରି ।
କେ ତାହାକୁ ସମ ହେବ ଏ ତିନି ଭୁବନ
ଯା ଅଙ୍ଗରେ ନ ଭେଦଇ ଦେବ ଅସ୍ତ୍ରମାନ ।
ବଜ୍ର ପାଶୁପତ ଅସ୍ତ୍ର ନ ଭେଦେ ଯା ଗାତ୍ରେ
ଅମୃତ ଝରଇ ସୂର୍ଯ୍ୟ କିରଣ ଲାଗନ୍ତେ ।
ଏ ମହୀମଣ୍ଡଳେ ସଦା ପଡ଼େ ଯାର କଥା
ତାକୁ ଜିଣିବାକୁ ତୁହି ହେବୁ କି ଶକତା ।
ଯୁଧିଷ୍ଠି ବୋଇଲେ ପିତା ନ କହ ତୁ ଏହା
ଅନାଥ ଲୋକଙ୍କୁ ଧର୍ମ ନିଶ୍ଚେ ହୁଅନ୍ତି ସାହା ।
ସବୁକାଳେ ନ ପଡ଼ଇ ପ୍ରାଣୀଙ୍କୁ ପ୍ରମାଦ
ସବୁଦିନ ପ୍ରାଣୀଙ୍କର ନ ଥାଏ ସମ୍ପଦ ।
ବଳବୀର୍ଯ୍ୟ ଥାଉଁ ଥାଉଁ ହୀନବୀର୍ଯ୍ୟ ହେଲେ
ନିଶ୍ଚୟ ଜାଣିବ ସେହୁ ଜୀଇଁଥାଉଁ ମରେ ।
ତାଙ୍କୁ ଜିଣିବାକୁ ମୁହିଁ ସମର୍ଥ ନୋହିଲେ
ବିବାଦକୁ ଇଚ୍ଛା କିପାଁ କରିବି ମୁଁ ଭଲେ ।
ଚଳିଯାଅ ଆହେ ପିତା ନ ବୋଲ ତୁ ଏହା
ଅନେକ ପ୍ରସ୍ତାବେ ମୁହିଁ ଜାଣିଅଛି ତାହା ।
ଆଷାଢ଼ ଶୁକଳ ତ୍ରୟୋଦଶୀ ସୋମବାର
ମୂଳା ନକ୍ଷତ୍ରକୁ ଭୋଗ ଥିଲା ସେ ଦିନର ।
ତୈତିଳ ନାମେ କରଣ ଇନ୍ଦ୍ର ନାମେ ଯୋଗ
ଚଳନ୍ତି ବିଦୁର ତହୁଁ ହସ୍ତିନାକୁ ବେଗ ।
ଏହି ବାକ୍ୟ ସମାପତ ପର୍ବ ଉଦଯୋଗେ
ବିଦୁର ପ୍ରବେଶ ଯାଇ ଧୃତରାଷ୍ଟ୍ର ଆଗେ ।

ମଣୋହି ଅନ୍ତେ ବାହାର ମନ୍ଦିରେ ବଇସି
ଏକସ୍ଥାନେ ରହନ୍ତ ଅନ୍ଧ ଗାନ୍ଧାରୀ ସଞ୍ଜୟ ।
ସଞ୍ଜୟ ବୋଇଲେ ତୁମ୍ଭେ ଶୁଣ ଦେବସ୍ୱାମି
ବିଦୁର ତବ ଚରଣେ ହେଉଛି ପ୍ରଣମି ।
ଏହି ବାକ୍ୟେ ଧୃତରାଷ୍ଟ୍ର ପାଇଣ ସମ୍ବାଦ
ପୁଚ୍ଛିଲେ କୁଶଳ ବାର୍ତ୍ତା ଲଭିଣ ପ୍ରମୋଦ ।
ବୋଲେ ବିଦୁର ପାଣ୍ଡବେ ଯେବେ କର ତଉ
ତାଙ୍କ ସଙ୍ଗେ ସନ୍ଧି କାହିଁ ନ କର ହେ ଭ୍ରାତ ।
ବହୁକଷ୍ଟ ପାଇ ବନୁ ପାଣ୍ଡବେ ଫେରିଲେ
ତୁମ୍ଭର ସୁତେ ଅଭାବ କପାଇ କରିଲେ ।
ଧୃତରାଷ୍ଟ୍ର ବୋଲେ ବାବୁ ଦେଖିଲ ଯୁଧିଷ୍ଠି
ମୋ ପୁତ୍ର ହେତୁ ବାଳକେ ବନେ ହେଲେ କଷ୍ଟ
ବାଳ୍ମତକାଙ୍କୁ ଅଟଇ ଏ ପରମ ଯୋଗୀ
ସଦାକାଳରେ ଧର୍ମକୁ ନ ପାରେ ସେ ଲଙ୍ଘି ।
ବାବୁ ସେ ପାପକୁ ଭୟ କରେ ସଦାକାଳେ
ଧର୍ମ ଆଶ୍ରୟେ ବଞ୍ଚନ୍ତି ସେମାନେ ସକଳେ ।
ବିଦୁର ବୋଇଲେ ଦେବ ବୋଇଲୁ ତୁ ଧର୍ମ
ର ଲକ୍ଷଣେ ପୁତ୍ରଙ୍କୁ ତୁ କରିଲୁ ଜନମ ।
ଜ୍ଞାନ ଥାଉଁ ପ୍ରାଣୀ ଯେବେ ହୁଏ ମହାମୂର୍ଖ
କେତେକାଳ ଧର୍ମ ତାଙ୍କୁ ରଖିବ ଆବୋର ।
ତୁହି ଥିଲା ସୋମବଂଶେ ସହନ୍ତା ସଧାତା
ତୁହି କେମନ୍ତେ ଛାଡ଼ିଲୁ ସେ ପୁତ୍ରଙ୍କ ଚିନ୍ତା ।
ଆବର ବୋଲେ ଯୁଧିଷ୍ଠି ଦୁଲି ବନପ୍ରସ୍ଥେ
ପୁଣି ନ୍ୟାୟ ସମାଦର କରିଲେ ତୋତେ ।
ମୋତେ ବସାଇ କହିଲେ ବହୁ ପ୍ରୀତମତେ
ରାମ ସାଷ୍ଟାଙ୍ଗେ ଦେଲେ ରହିବେ ନିଶ୍ଚିନ୍ତେ ।
ତେତେକ ପାଇଲେ ଯେବେ ସନ୍ତୁଦେବେ ମୁକ୍ତି
ଶାନ୍ତିକୁ ଭଜିବ ଧର୍ମ ନ କରିବ କେଉଁ ।
ତୁମ୍ଭେ ଯେ ପରମ ପୁତ୍ର ବସ୍ତିନା ସୁରଗେ
ତୁମ୍ଭେ ଥାଉଁ ସେ କପାଇଁ ଯିବ ଅନ୍ୟମାର୍ଗେ
ହେ ସ୍ୱାମି ଯାବତ କର୍ମେ ଛୁଅ ଧର୍ମପକ୍ଷ
ଅନର୍ଥ ନିବାରି ଏବେ ଦୁଇକୁଳ ରକ୍ଷ ।
ତୁହି ଅନର୍ଥ ନ ଜାଣୁ ଅଦୃଷ୍ଟେ ତୋ ଚକ୍ଷୁ
ତୁ ଅବା କାହାକୁ ବୁଦ୍ଧି ଉଦ୍ବୋଧ କରୁଛୁ ।
ହେ ସ୍ୱାମି ପୁତ୍ରେ ବୁଝାଇ କହ ମେଳକଥା
ମନ୍ତ୍ରବେରେ ପ୍ରମାଦ ପଡ଼ିବ ସର୍ବଥା ।

ଧୃତରାଷ୍ଟ୍ର ବୋଇଲେ ତୁ ଅଟୁ ସର୍ବଜ୍ଞ
ଧାର୍ମିକ ପଣ୍ଡିତ ଜ୍ଞାତା ଅଟୁ ଅଭିମାନୀ ।
ପୁଅଙ୍କୁ ତୁଆରି ତୋର କରାଅ ପୀରତ
ଉଭୟ କୁଳ ରହିବ ନ ହେବ ଅଖ୍ୟାତ ।
ଭୂରିଶ୍ରବା ବାହ୍ଲୀକ ଯେ ହକାରି କୌରବେ
ଏକାନ୍ତେ ବସାଇ କରି କହ ପ୍ରିୟଭାବେ ।
ବାବୁରେ ସୋମବଂଶର ଅଟ ଅଧିକାରୀ
କୌରବ ବଂଶ ପାଣ୍ଡବୁଟିକ ରକ୍ଷାକରି ।
ଯେମନ୍ତ ସୁବିଧା ହେବ ବେଳ ଥାଉଁ କହ
ଯେପରି ପାଣ୍ଡବ କୁଳେ ବଢ଼ିବ ସେନେହ ।
ଯେବେ ସୁବିଧାରେ କରି ନ ପାରିବୁ ସନ୍ଧି
ଅଥବା ପଣ୍ଡୁପୁତ୍ରଙ୍କୁ ତୁଆରି ପ୍ରବୋଧି ।
ଧୃତରାଷ୍ଟ୍ରଙ୍କ ବଚନେ କହେ ଭୂରିଶ୍ରବା
ଆଦ୍ୟରୁ ଏମନ୍ତ କଥା ନ ଭାବିଲୁ ଅବା ।
ଶତପୁତ୍ର ଜାତ ତୋର ହେଲେ ଯେତେବେଳେ
ଦୁର୍ଯ୍ୟୋଧନକୁ ବିଦୁର ଦେଲେ ତୋର କୋଳେ
ବୋଇଲେ ଯେ ବିଚକ୍ଷଣ ହେବ ଏ ପୁତ୍ରଟି
ମ ନଗୋବିନ୍ଦ ନାମରେ ହେବ ଜଗତ୍‌ଶ୍ରେଷ୍ଠୀ
ହସ୍ତେ ପଦ୍ମ ପାଦେ ପଦ୍ମ ଏ ପୁତ୍ରର ଦେଖି
ଏହା ଠାରୁ ନ ଛାଡ଼ିବେ କେବେ କମଳାକ୍ଷି
ବଡ଼ ବିଚକ୍ଷଣ ଜନ୍ମି ଅଛି ମହାଗୁଣୀ
ଲକ୍ଷେ ନୃପତି ଖଟିବେ ହୋଇ କୃତାଞ୍ଜଳି ।
କଥାଏ ମାତ୍ର ଅଛଇ ଏହାର କେବଳ
ଦୁଷ୍ଟ ପ୍ରକୃତି ହୋଇବ ଏ ମଧୁପିଙ୍ଗଳ ।
ଉଦୟ ବଂଶ ହରିବ ତୋହର ଏ ବତ୍ସା
ପାଇବୁ ଐଶ୍ୱର୍ଯ୍ୟ ପୂର୍ଣ୍ଣହେବ ମନୋବାଞ୍ଛା ।
ଏହା ଯୋଗେ ବଂଶ ତୋର ନ ହୋଇବ ରକ୍ଷ
ଏହାକୁ ନାଶି ଅନେଶ୍ୱତ ପୁତ୍ର କର ରକ୍ଷା ।
ହେୟଜ୍ଞାନ କଲୁ ତେବେ ବିଦୁରର ବାଣୀ
ପଶ୍ଚାତ କଷ୍ଟ କଥାକୁ ନ ପାରିଲୁ ଗୁଣି ।
ଭୂରିଶ୍ରବାଙ୍କ ବଚନେ ବୋଲେ ଦଣ୍ଡଧର
ଗତ କଥାକୁ ଶୋଚନା ଆଉ ଯେ ନ କର ।
ମୁହିଁ ଯେତେବେଳେ ଏହା ଶୁଣିଲି ସାକ୍ଷାତେ
ବୋଇଲି ଆମ୍ଭରୁ କାଢ଼ି ମାରିବ କେମନ୍ତେ ।
ସେ କଥା ଗୋଟାକୁ ଏବେ ନ କର ସ୍ମରଣ
ଯୁଧିଷ୍ଠିର କୋପ କେମନ୍ତେ କରିବା ମୋଚନ ।

ବିଦୁର ଆଗରେ ଯାହା କହିଲ ଯୁଧିଷ୍ଠି
କଣ୍ଠତରେ ଦେଉ ମୋତେ ପଡ଼ା ପାଞ୍ଚଗୋଟି
ଭୂରିଶ୍ରବା ବୋଇଲେ ସେ ବହ୍ନିକୁ ନ ଇଚ୍ଛି
ଧର୍ମ ସାକ୍ଷୀ କରି ନ୍ୟାୟେ ସବୁଙ୍କୁ କହୁଛି ।
ତାହାଙ୍କୁ ପ୍ରିୟବଚନରେ ଯଦ୍ୟପି କହିବୁ
ଦୁର୍ଯ୍ୟୋଧନ କୋପାନଳେ ନଷ୍ଟମୃ ପଡ଼ିବୁ ।
ବାବୁ ଦୈବ ଘଟସୂନ ରହିଅଛି ପୂର୍ବେ
ପାଣ୍ଡବେ କରିବେ କ୍ଷୟ ନଷ୍ଟପ୍ରୁ କୌରବେ ।
ଏହି କଥାଗୋଟି ଆଜ କହୁଅଛି ଯାହା
ଆଉ କଷ୍ଟଦିନେ ନଚେଷ୍ଟେଁ ଦେଖାଯିବ ତାହା ।
ଏହି କଥାରେ କଞ୍ଚନେ ନାହିଁ ମୋର ଭ୍ରମ
ଦୁର୍ଯ୍ୟୋଧନ ଦେବନାହିଁ ଏକଗୋଟି ଗ୍ରାମ ।
କଳ ସର୍ବଦା ଇଚ୍ଛଇ ସେ ମାନଗୋବିନ୍ଦ
ଯେବେ ଯୁଧିଷ୍ଠି ସହିତ ନ ହୋଇବ ଦ୍ୱନ୍ଦ୍ୱ ।
ଧୃତରାଷ୍ଟ୍ର ବୋଇଲେ ଚାଲ ଯିବା ହୋ ସଭାକୁ
କୁଟୁମ୍ବପାଇଁ ବୁଝାଇ କହିବା ତାହାକୁ ।
ଅନ୍ଧ ଚଳେ ସଞ୍ଜୟର ହସ୍ତେ କର ଧରି
ଆଗରେ ଚଳେ ବିଦୁର ପଛେ ଗଲେ ଭୂରି
ପ୍ରବେଶିଲେ ଅନ୍ଧରାଜା ଯାଇଣ ଆସ୍ଥାନେ
ଦୁହୁଁ ଦେଖିଣ ହସିଲେ କୁରୁ ଦୁଷ୍ଟମାନେ ।
ଦେଖି ସେ ଦୁଷ୍ଟ ପ୍ରକୃତି କହଇ ଶକୁନି
ଦେଖ ବଡ଼ ସଂଯୋଗରେ ଆସୁଛନ୍ତି ତିନି ।
କି କି କଥା ମନେ ପାଞ୍ଚି ଆସନ୍ତି ସଭାକୁ
ଯାଇଥିଲ ସେ ବିଦୁର ଆଣି ପାଣ୍ଡବଙ୍କୁ ।
ଏମନ୍ତ ବଚନ କହୁଁ ସଭାସ୍ଥଳେ ଉଠି
ଆସନ ଛାଡ଼ିଲେ ଦେଖି ସେ ଯୋଦ୍ଧା ସମଷ୍ଟି
ଭୀଷ୍ମ ଭୂରିଶ୍ରବାଙ୍କୁ ସେ କଲେ ନମସ୍କାର
ଚହୁଁ ପ୍ରଣମିଲେ ଧୃତରାଷ୍ଟ୍ରର ପୟର ।
ଆସ୍ଥାନେ ବଜେ କରିଛି ଚହୁଁ କୁରୁବୀର
କଦାପି ସେ ନ କରିଲ ତାଙ୍କୁ ନମସ୍କାର ।
ଅନ୍ତର ଆସ୍ଥାନେ ବଜେ କଲ ସୋମବଂଶୀ
ସଭା ମଧ୍ୟରେ ବିଦୁର ବଚନ ପ୍ରକାଶି ।
ଶୁଣ ଦେବ କଉରବକୁଳ ଚକ୍ରବର୍ତ୍ତୀ
ରାଜରାଜେଶ୍ୱର ପଞ୍ଚରାଜ୍ୟ ଅଧିପତି ।
ମୋତେ ହକାରି ନେଇଣ ବୋଲଇ ଯୁଧିଷ୍ଠି
ମୋହର ବିନୟ ଏବେ ଘେନ ଧାର୍ତ୍ତରାଷ୍ଟ୍ରି ।
ସବୁ ମୋହର ସୋଦର ଅଟଇ ଯୁକତେ
ପଞ୍ଚଖଣ୍ଡି ଗ୍ରାମ ଦେଇ ରଖିଥାଉ ମୋତେ ।
ଭାଇଙ୍କୁ ଘେନକରି ମୁଁ ଥାଏ କୋଣକରେ
ସେବା କରୁଥିବୁ ଧୃତରାଷ୍ଟ୍ରଙ୍କ ପୟରେ ।
ଲକ୍ଷେ ଯୋଜନର ସେହୁ ଅଟେ ଅଧିକାରୀ
ମୋତେଦେଲେ ଧର୍ମନଷ୍ଟ ହୋଇବ ତାହାରି
ବିଦୁର ବଚନ ସର୍ବେ ଶୁଣିଣ ଏସନେ
ମୂକ ପ୍ରାୟେ ବସିଛନ୍ତି ବଧିର ସମାନେ ।
ଏହା ଶୁଣିଣ ଗାଙ୍ଗେୟ ଦେଲ ପ୍ରତିବାକ୍ୟ
ସେଥି ସମସ୍ୟା କରିବ କିଏ ଭଦ୍ରଲୋକ ।
ଉଭୟ କୁଳର ତୁମ୍ଭେ ଅଟ ପିତାମହ
ପ୍ରସ୍ତାବ ଜାଣି ସମସ୍ୟା କପାଇଁ ନ କହ ।
ଭୂରିଶ୍ରବା ଆଦି କରିଛନ୍ତି ମଧ୍ୟପାଶ
ଦ୍ରୋଣଙ୍କର ଗୁରୁପଣ ଧୃତରାଷ୍ଟ୍ର ତାତ ।
ସଞ୍ଜୟଙ୍କ ମନ୍ତ୍ରିପଣ କୃପଙ୍କର ବୁଦ୍ଧି
ଏମାନଙ୍କୁ ସେବିଲେ କି କାର୍ଯ୍ୟ ହୁଏ ସିଦ୍ଧି ।
ଶକୁନି ବୋଇଲେ ଭଲ ପ୍ରକାଶିଲ କର୍ଣ୍ଣ
ମୋ ମନକୁ ଯୋଗାଇଲ ଏହି କଥାମାନ ।
ଅନ୍ଧ ଧୃତରାଷ୍ଟ୍ର ତାର ନାହିଁ ବେନି ନେତ୍ର
ଭୂରିଶ୍ରବାଙ୍କୁ ବନ୍ଧିଲେ ନ ଭେଦଇ ଶସ୍ତ୍ର ।
ଦ୍ରୋଣ ଗୁରୁପଣେ ବିଦ୍ୟା ଭଲ ନ ଦିଅନ୍ତି
ଏକ ଶିଷ୍ୟ ଗଣ୍ଡି ମୁଠି ଅନ୍ୟେ ନ ଶିଖାନ୍ତି ।
ସଞ୍ଜୟର ମନ୍ତ୍ରୀପଣ ଜାଣି ନ କହଇ
ଏହାଙ୍କୁ ବରିଲେ କାର୍ଯ୍ୟ କେଭେ ନ ହୁଅଇ
ଭୂରିଶ୍ରବା ବୋଇଲେ ହୋ ଆମ୍ଭେ ବୃଦ୍ଧକାଳେ
ମିଛେ ମିଛେ ଅସ୍ତ୍ର ଧରୁ ପେଟର ବିକଳେ ।
ଧୃତରାଷ୍ଟ୍ର ସେ ତ ଅନ୍ଧ ଅଟଇ ଯୁକତେ
ରାଜାର ପିତା ବୋଲନ୍ତି ମାନ୍ୟର ନିମନ୍ତେ ।
ଦ୍ରୋଣଙ୍କର ଗୁରୁପଣେ ଟିକେ ମାନ ନାହିଁ
ଜାଣିଣ ସଞ୍ଜୟ ମନ୍ତ୍ରୀ କାହୁଁ ନ କହଇ ।
ଅନର୍ଥ ବଢ଼ାନ୍ତି ସିନା କୁଳବୃଦ୍ଧ ଲୋକ
ମୂର୍ଖ କାହିଁ ବଖାଣିବ ସମୁଚିତ ବାକ୍ୟ ।
ମାନଗୋବିନ୍ଦ ରାଜକୁ ଶକୁନି ସେ ମନ୍ତ୍ରୀ
ଦୁଃଶାସନ ଯୋଦ୍ଧା ପୁଣି କର୍ଣ୍ଣ ସେନାପତି ।
ଦୁର୍ଯ୍ୟୋଧନ ରାଜା ଅଟେ ମଧ୍ୟ ସେ ପିଙ୍ଗଳ
ଶକୁନିର ମନ୍ତ୍ରିପଣେ ନାଶଯିବ କୁଳ ।

ଦୁଃଶାସନ ଯୋଦ୍ଧା ଅଟେ ମୂର୍ଖ ଅପଣ୍ଡିତ
କର୍ଣ୍ଣ ସେନାପତି ସେହୁ ହିଳୁଚେ ଅର୍ଜିତ ।
ରାହୁ କେତୁ ମଙ୍ଗଳ ଯେ ଗ୍ରହ ଶନିଷ୍ଟରେ
ଏ ଗୁରେ ବସନ୍ତି ଯେବେ ଏକ ଆସନରେ ।
ଇନ୍ଦ୍ର ବୃଷ୍ଟି ନ କରଇ ପୃଥ୍ୱୀ ଶସ୍ୟହୀନ
ଅସ୍ଥି କଙ୍କାଳ ରୁଧିରେ ପ୍ଲାବିତ ମେଦିନୀ ।
ବାବୁ ଧୃତରାଷ୍ଟ୍ର ତୁମ୍ଭେ ଜନ୍ମିଅଛ ଏଥେ
କର ସୃଷ୍ଟେ ରାଜ୍ୟ ଦେବ ଏ ମହାଭାରତେ ।
ତୁ ଏହା ସମାର୍ଜି କର ନହିଲୁ ରେ କର୍ଣ୍ଣ
କାଳେ ବୁଝାଯିବ ସିନା ଏହା ସ୍ୱବଧାନ ।
ଯୁଧିଷ୍ଠିର ସହ୍ୟ କଲେ ସବୁ ସିନା ସିଦ୍ଧି
ନ ସହିଲେ ଶେଷ ହେବ ସବୁ ମନ୍ଦ ବୁଦ୍ଧି ।
ଚଣ୍ଡାଳ ସଭାକୁ ଦ୍ରବ୍ୟ ବ୍ରାହ୍ମଣ ବଚଲେ
ସେ କସ ଜାଣିବେ ବେଦ ଅଧ୍ୟୟନ କଲେ ।
ଦୁଃଶାସନ ବୋଇଲା ତୁ କୁଳବୃଦ୍ଧ ଅଟୁ
ସାନ ହୋଇଥିଲେ ସେ କ ବର୍ତ୍ତନ୍ତା ନକଟୁ ।
ଭୂରିଶ୍ରବା ବୋଲେ ଏବେ କ କଥା ବୁଝିବୁ
ନକଟ ହୋଇଲ ଧନ ଦେଖିବୁ ଦେଖିବୁ ।
ସର୍ବଦାହିଁ ପ୍ରାଣୀଙ୍କର ନ ଥାଏ ସମ୍ପଦ
କାଳେ ନଷ୍ଟପ୍ର ତୁମ୍ଭଙ୍କୁ ପଡ଼ିବ ପ୍ରମାଦ ।
ବିଦୁର ବୋଇଲେ ମାନଗୋବିନ୍ଦଙ୍କୁ ବୁହିଁ
ତୋର ପ୍ରତିବାକ୍ୟ ଯାହା ନ ବୋଲୁ କପାଇଁ
ଆମ୍ଭେ ସମସ୍ତେହିଁ ଅନ୍ଧ ତୋର ଦିବ୍ୟଚକ୍ଷୁ
ତୁହି ଦଶାହେଲେ ସର୍ବେ ଅମାର୍ଗେ ଯାଉଛୁ ।
ଆମ୍ଭେ ସମସ୍ତେହିଁ ମୂର୍ଖ ତୁ ସିନା ପଣ୍ଡିତ
ତୁ ବାକ୍ୟ ନ କହିଲେ କ ଆମ୍ଭର ଉଚିତ ।
ତୁହି ସେ ବକତା ଆମ୍ଭେ ସର୍ବେ ଜଡ଼ା କାଲ
ନ ଶୁଣାଇଲେ ଶୁଣିବୁ ଆଉ କାହା ବୋଲ ।
ବାବୁ ଆମ୍ଭେମାନେ ସର୍ବେ ଅଟୁ ଜନ୍ମରୋଗୀ
ତୁ ଗାରେଡ଼ିଆ ରାଉଳ ଅଟୁ ପରଂଯୋଗୀ ।
ଆମ୍ଭ ସଭୁଙ୍କ ଦେହରେ ଅବୋଧରୁ ବ୍ୟାଧି
ତୋହର ବଚନ ଗୋଟି ସୁଧା ମହୌଷଧି ।
ମୌନବ୍ରତ ନୋହି ବାବୁ ଫେଡ଼ି କଥା କହ
ଗୁରୁ ଜ୍ୟେଷ୍ଠ ଜନସ୍ଥିର ବାବୁ ଦ୍ରୋହୀ ନୁହ ।
ବାବୁ ଅନ୍ଧାର ଘୋଟିଛି ମହା ମହାରାତ୍ର
ସୁବାକ୍ୟ କହି ପ୍ରକାଶ କର ସୂର୍ଯ୍ୟଜ୍ୟୋତ ।

ଅନେକ ବିନୟ ହୋଇ କହନ୍ତେ ବିଦୁର
ଦୁର୍ଯ୍ୟୋଧନ ବୋଲେ ତାତ କ୍ଷଣେ ହୁଅ ସ୍ଥିର
ଏହି କୁରୁସାଗରରେ ଶକୁନି ମୋ ବନ୍ଧୁ
ସେହୁ ମହାହିତକାରୀ ତାଙ୍କୁ କପାଁ ନିନ୍ଦୁ ।
ବଂଶଯାକ ମାରଣ ମୁଁ ତାକୁ କଲ ରକ୍ଷା
ମୋର ସମ୍ପଦ ରକ୍ଷଣେ ହେଲା ସେହି ସଖା ।
ଏକା ବୁଦ୍ଧି ତାର ମୋର ସମାନ ପ୍ରକୃତି
ଏକା ଭରସା ମୋହର ଅଟେ ଭାନୁମତୀ ।
ଏକା ଦେବତା ଆରାଧେ ମୁହିଁ କର୍ଣ୍ଣଙ୍କର
ଏକା ପୁତ୍ର ମୋହର ସେ ଲକ୍ଷ୍ମଣ କୁମର ।
ଏକୋହିଁ ମନ୍ତ୍ରୀ ମୋହର ଅଟଇ ଶକୁନି
ଏକା ମଇତ୍ର ମୋହର କର୍ଣ୍ଣ ମହାଦାନୀ ।
ଏହି ବାକ୍ୟ ମୋହର ଯେ ବେଦବାକ୍ୟ ହେଲେ
ସ୍ଥାନଗୀବ ହୋଇବ ନା ବାକ୍ୟ ବିଚଳିଲେ ।
ଏକା ଭରସାରେ ରହେ ସିନା ସତିନିସ୍ୱା
ଅଳପେ ଆପୁଷ ତୁଟେ ଯାର ବେଦପ୍ରିସ୍ୱା ।
ଏକା ପୁତ୍ର ଜାତ ହେଲ ନାମ ଭଗୀରଥ
ଷଠିସହସ୍ର ପିତୃଙ୍କୁ କଲ ସେ ମୁକତ ।
ପାପ କରୁ ପୁଣ୍ୟକରୁ ଅଥବା ଯା କରୁ
ସନ୍ଧି ବିସନ୍ଧି ଯା ବୋଲ ଶକୁନି ବିଚାରୁ ।
ଦୁଇ ଜିହ୍ୱାକୁ ବହନ୍ତି ଯେଉଁ ପ୍ରାଣୀମାନେ
କୁଟୁମ୍ବ ନାଶ ଯାଆନ୍ତି ତାହାର ବଚନେ ।
ଏବେ ମୁହିଁ ବୋଲୁଅଛି ସମସ୍ତେ ହେ ଶୁଣ
କୌରବ ପାଣ୍ଡବକୁଳ ପ୍ରାଣଦାତା ଜାଣ ।
ଶକୁନି ମନ୍ତ୍ରୀ ଜିହ୍ୱାରେ ଅଛି ଯମ ଧର୍ମ
ସେ ଯାହା ଭାଷିବ ନିଷ୍ଟେ ଭୁଞ୍ଜିବ ସେ କର୍ମ
ସକଳର ବୁଦ୍ଧିଦାତା ଶକୁନି ମୋହର
ତାର ବୁଦ୍ଧିବଳେ ଚଳେ ସେ ରାଜ୍ୟ ସମ୍ଭାର
ବିପଦ ସମ୍ପଦ ହେଉ ମୋ କର୍ମେ ଯା ଥିବ
ଶକୁନି ବଚନ କେବେ ଅନ୍ୟଥା ନୋହିବ ।
ଦୁର୍ଯ୍ୟୋଧନ ନିରାଧାର ବଚନକୁ ଶୁଣି
ଧୃତରାଷ୍ଟ୍ର ଆସ୍ଥାନରୁ ଉଠିଲେ ତକ୍ଷଣି ।
ଭୂରିଶ୍ରବା ଲଜ୍ଜାପାଇ ଚଳିଲେ ଭୁବନ
ବିଦୁର ଇନ୍ଦ୍ରପ୍ରସ୍ଥକୁ ଚଳିଲେ ବହନ ।
ଯହୁଁ ସେ କଥା ଘଟିଲା ଶୁଣ ସୁଜ୍ଞଜନ
କହେ ଶ୍ରୀଶାରଳାଦାସ ଶାରଳା ସେବଣ ।

## ଶ୍ରୀକୃଷ୍ଣଙ୍କୁ ଆଣିବା ନିମନ୍ତେ ଅର୍ଜୁନଙ୍କର ଦ୍ୱାରକା ଗମନ ଏବଂ ତାହାଙ୍କୁ ଘେନି ପ୍ରତ୍ୟାଗମନ

ପୁଣିହିଁ ପୁଚ୍ଛା କରିଲେ ମନୁ ନୃପବର
ଏଥୁଅନ୍ତେ କିସ କଲେ ଧର୍ମ ଯୁଧିଷ୍ଠିର ।
କୌରବ ସଭାରେ ରାଜା ଯେମନ୍ତ ବୋଇଲା
ତାହା ଧର୍ମଙ୍କୁ ଗୋଚର ହେଲା କି ନ ହେଲା ।
ସେହି କଥା ଶୁଣିବାକୁ ବଳେ ମୋ ମାନସ
କହ ହେ ଅଗସ୍ତି ମୁନି କରିଣ ବିଶେଷ ।
ବୋଇଲେ ସେ ମୁନି ଏଥୁଅନ୍ତେ ହେଲା ଯାହା
ଉଦ୍‌ଯୋଗ ପର୍ବେ ଶୁଣ ମୁଁ କହୁଅଛି ତାହା
ଭୋଜନ ସାରିଣ ତହୁଁ ମହାତ୍ମା ବିଦୁର
ବିଚାରେ ଯୁଧିଷ୍ଠି ପାଶେ କି ଦେବି ଖବର ।
ଦେଖୁ ଦେଖୁ ମୋ କୁଟୁମ୍ବ ପାଇବେ ସେ କଷ୍ଟ
ମୋହର ବାକ୍ୟ ଗୁଡ଼ିକ ହୋଇଗଲା ନଷ୍ଟ ।
ପ୍ରାଣ କି ତେଜିବି ମୁହିଁ ପ୍ରୟାଗକୁ ଯାଇ
କିବା ସମରେ ହାସିବି କୃଷ୍ଣ ମୁଖ ଚାହିଁ ।
ଏମନ୍ତ ବିଚାରି କରି ଅମ୍ବୁବଣି ସୁତ
ମନ ଦୁଃଖେ ଧର୍ମ ପାଶେ ହେଲା ଉପସ୍ଥିତ ।
ବିଜୟ ଧର୍ମନନ୍ଦନ ଯେ ଇନ୍ଦ୍ରପ୍ରସ୍ଥରେ
ତାଙ୍କୁ ଯାଇ ଏହିରୂପେ କହେ ଗୁପତରେ ।
ଆହେ ବାବୁ ଏକା ମନ୍ତ୍ରୀ ହୋଇଛି ଶକୁନି
ଦୁର୍ଯ୍ୟୋଧନ ତାହା କଥା ସଦା ଅଛି ମାନି ।
କୁଳକ୍ଷୟ ମନ୍ତ୍ରୀ ସେହି ଗାନ୍ଧାରର ବାଳ
କୁରୁବଂଶକୁ ଅଟଇ ସେହି ମହାକାଳ ।
ତୁ ଯେବେ ରାଗ ସଂହାର କରିବୁ ଯୁକତେ
ପାପ ପୁଣ୍ୟ ଧର୍ମାଧର୍ମ ଲାଗଇଟି ତୋତେ ।
ଯୁଧିଷ୍ଠି ବୋଇଲେ ତାତ ଏଥକୁ ତୁ ସାକ୍ଷୀ
କେଶବ ପ୍ରସାଦେ ମୁହିଁ ନୁହଇ କର୍ମାକ୍ଷୀ ।
ଏମନ୍ତେ ସେ ବିଦୁରଙ୍କ ବଚନକୁ ଭେଦି
ଅର୍ଜୁନକୁ ହକାରିଲେ କୌରବ ବିବାଦୀ ।
ତୁହୋ ଅର୍ଜୁନ ବେଗରେ ଚଳିବୁ ଦ୍ୱାରକା
ଶ୍ରୀଜଗନ୍ନାଥଙ୍କୁ ଘେନିଆସ ଯାଇ ଏକା ।
ଆପଦ ବିପଦ କିବା ପ୍ରାଣୀ ଅନ୍ତକାଳେ
ଶ୍ମଶାନେ ଜଗିବେ ଥାଇ ଯଥା ତଥାବେଳେ ।
ଶ୍ରୀହରି ଆମ୍ଭର ପକ୍ଷ ଅଟନ୍ତି ସଦାକାଳେ
ତାହାଙ୍କୁ ସାକ୍ଷୀ କରିଣ ପଶିବି ମୁଁ ରଣେ ତ ।
ଶ୍ରୀଧର୍ମନନ୍ଦନଙ୍କର ଆଜ୍ଞା ଶିରେ ଘେନି
ଚଳଇ ଭିରେଇମଲ୍ଲ ବୀର ଫାଲଗୁନ ।
ଭୁଜେ ଶୋଭଇ ଅକ୍ଷୟ ତୂଣ ଆଉ ଧନୁ
ଦ୍ୱାରକାରେ ପ୍ରବେଶିଲେ ବାସବର ସୂନୁ ।
ଅର୍ଜୁନଙ୍କୁ ଦେଖି କୃଷ୍ଣ ହୋଇ ଆନନ୍ଦିତ
ଶ୍ରୀଭୁଜେ ଭିଡ଼ିଲେ ଧାଇ କରି କୋଳାଗତ ।
ପଚାରିଲେ ନାରାୟଣ ପ୍ରିୟଭାବ କରି
ଦିବ୍ୟ ମନ୍ଦିରେ ବସାନ୍ତି ନେଇ ହାତଧରି ।
ରତନ ଆସନେ ବିଜେ ଶ୍ରୀହରି ଅର୍ଜୁନ
ବହୁ ଅଳଂକୃତ କରି କଲେ ସନମାନ ।
ସ୍ନାନ ନିତ୍ୟକର୍ମ ସାରି ପାର୍ଥ ଦେବହରି
ମଣୋହିକୁ ଗଲେ ଧନଞ୍ଜୟ କର ଧରି ।
ମଣୋହି ସାରିଣ ଦେବ ଆଚମନେ ବିଜେ
ତାମ୍ବୁଳ ଭୁଞ୍ଜିଲେ ତହୁଁ ପାର୍ଥ ଦେବରାଜେ ।
ଦିବ୍ୟ ପଲଙ୍କେ ପଡ଼ିଛି ହଂସୁଳୀର ତୂଳି
ଅର୍ଜୁନ ଘେନି ବିଜୟ କଲେ ବନମାଳୀ ।
ଘେନି ପାଶରେ ଖଟନ୍ତି ସତ୍ୟା ଜାମ୍ବୁବତୀ
ଆଲଟ ଚାମର ଧରି ପାଦ ମଣ୍ଡାଳନ୍ତି ।
ଛାମୁରେ ନୃତ୍ୟ ସଙ୍ଗୀତ କରନ୍ତି ବନିତା
ତାଣ୍ଡବ ନୃତ୍ୟରେ ସର୍ବେ ହୋଇ ଉନମତା
ଅର୍ଜୁନଙ୍କୁ କୋଳେ ଧରି ଭୁଜେ ଭିଡ଼ିକରି
ବଦନକୁ ଚାହିଁ ପୁଣି ପୁଚ୍ଛନ୍ତି ଶ୍ରୀହରି ।
ମୋର ଦ୍ୱାରକା ପୁରର ଥିଲା ବହୁ ପୁଣ୍ୟ
ତୋତେ ଦେଖି ନିସ୍ତରିଲ ଆଜ ରେ ଅର୍ଜୁନ ।
ବହୁତ ତପସ୍ୟା କରି ଧର୍ମ ମୁଁ ଅର୍ଜିଲି
ପ୍ରାଣ ସଖାକୁ ମୋହର ନେତ୍ରରେ ଦେଖିଲି ।
ପ୍ରିୟସଖା ତୁ ମୋହର ଆରେ ଫାଲଗୁନ
ତୋତେ ଦେଖିଣ ଉପତ ସମସ୍ତ କାମିନୀ ।
ଅନୁଗ୍ରହ କରି ଦେଖି ଆଇଲୁ କି ମୋତେ
ଅଥବା ଆସିଲୁ କେଉଁ ଗୁରୁକାର୍ଯ୍ୟ ଅର୍ଥେ ।
ଅର୍ଜୁନ ବୋଇଲେ ଦେବ ଶୁଣ ମଧୁହାରି
ମୋତେ ପଠାଇ ଅଛନ୍ତି ଧର୍ମ ଦଣ୍ଡଧାରୀ ।
ବୈନତେୟର ପୃଷ୍ଠରେ କରିବାକ ବିଜେ
ବହନ ହୋଇ ଗମନ କରି ଦେବରାଜେ ।

ଶୁଣି ସାନନ୍ଦ ହୋଇଲେ ତହୁଁ ଯୋଗେଶ୍ୱର
ଅର୍ଜୁନଙ୍କୁ ଘେନି ଚଢ଼ିଲେ ଗରୁଡ଼ ପିଠିର ।
ଶ୍ରୀକୃଷ୍ଣ ଅର୍ଜୁନ ବେନି ଗମନ୍ତେ ଶୋଭଇ
ଇନ୍ଦ୍ର ଗୋବିନ୍ଦ ପରାଏ ଜଗତ ମୋହଇ ।
ପବନ ଗତିକୁ ଜିଣି ଚଳେ ବୈନତେୟ
ଇନ୍ଦ୍ରପ୍ରସ୍ଥରେ ପ୍ରବେଶ କୃଷ୍ଣ ଧନଞ୍ଜୟ ।
ଯେତେବେଳେ ଯୁଧିଷ୍ଠିରଙ୍କ ଦେଖିଲ ଆସନ
ବାହନକୁ ତେଜ୍ୟାକଲେ କୃଷ୍ଣ ଅରଜୁନ ।
ପାଦତଳେ ପ୍ରଣିପାତ ହେଲେ ଯାଇ ବେନି
ଯୁଧିଷ୍ଠିର କଲ୍ୟାଣ କଲେ ଯଥାବାକ୍ୟ ଘେନି ।
କୃଷ୍ଣାର୍ଜୁନ ଗଲେ ବେଗେ ଧରମ ଯୁଧିଷ୍ଠି
ଅଗ୍ରତରେ ଉଭା ହେଲେ ଶ୍ରୀକୃଷ୍ଣ କିରୀଟି ।
ଯୁଧିଷ୍ଠିର ପୁଛିଲେ ତାଙ୍କୁ କୁଶଳ ବାରତା
କୃଷ୍ଣ ବୋଇଲେ ତାଙ୍କର ମଙ୍ଗଳ ସର୍ବଥା ।
ପରସ୍ପର ପୃଚ୍ଛାପୃଚ୍ଛି ହୋଇ କୁଶଳତା
ଯୁଧିଷ୍ଠିର କହିଲେ ତହୁଁ ଧର୍ମଶାସ୍ତ୍ର କଥା ।
ହେ ଦେବ ବିଦୁର ଆଗେ କହିଲା ମୁଁ ଯାହା
କାଳେ ଦୁର୍ଯୋଧନ ରାଜା ନ ଶୁଣିଲା ତାହା
ଭୂତ ଭବିଷ୍ୟତ ଜ୍ଞାତା ଆହେ ଦେବ ହରି
ଶାରଳା ଦାସ କରଇ ସେ ପାଦେ ଗୁହାରି ।

---

## ଉତ୍ତରାବାଳୀର ରଜୋବତୀ ହେବା ସମ୍ବାଦ ଓ ସମସ୍ତ ଯୋନି ରଜୋବତୀ ହେବାର ଶୁଭାଶୁଭ ବିବରଣୀ

ଏଥୁଅନ୍ତେ ଶୁଣ ରାଜା ମତ୍ସ୍ୟଦେଶ ଦୂତ
କୁଙ୍କୁମର ଜଳ ଘେନି ଆସେ ଇନ୍ଦ୍ରପ୍ରସ୍ଥ ।
ଉତ୍ତରା ଯୁବତୀ ହେବା କହିଲାଟି ବାଣୀ
ଅଭିମନ୍ୟୁ ପରେ ସିଞ୍ଚେ ସେ ହଳଦୀ ପାଣି ।
ତହୁଁ ସେ ପଞ୍ଚପାଣ୍ଡବ ଶ୍ରୀକୃଷ୍ଣ ସହିତ
ଦ୍ରୌପଦୀ ସୁଭଦ୍ରା ସଙ୍ଗେ ଘେନି ପାର୍ଥସୁତ ।
ପ୍ରବେଶ ହୋଇଲେ ବେଗେ ମତ୍ସ୍ୟଦେଶେ ଯାଇ
ବାର୍ତ୍ତା ପାଇଣ ବିରାଟ ପାଛୋଟି ଆସଇ ।
ମକର ଶୁକ୍ଳ ପକ୍ଷ ଅଟେ ସୋମବାର
ମୂଳା ନକ୍ଷତ୍ରର ଯୋଗ ଅଟେ ସେ ଦିନର ।
ତୈତିଳ ନାମେ କରଣ ଇନ୍ଦ୍ର ନାମେ ଯୋଗ
ମିଥୁନ ମାସର ସତାଇଶ ଦିନ ଭୋଗ ।
ଉଦୟ ଅରୁଣ ବେଳ ବେନି ଘଡ଼ିଠାରେ
ରଜୋବତୀ ହେଲା ବାଳୀ ମଙ୍ଗଳ ବେଳରେ
ସୁରସେନ ସର୍ବାଙ୍ଗ ଯେ ପାତାଳେକ ଖଡ଼ି
ସରବ ପ୍ରସନ୍ନ କାମ କନ୍ୟା ନାଗନାଡ଼ୀ ।
ଆଦିତ୍ୟରେ ରଜହେଲେ ସ୍ୱାମୀ ପୀଡ଼ା ହୁଏ
ନିଜେ ମଧ୍ୟ ରୋଗେ ପଡ଼ି ବହୁକଷ୍ଟ ପାଏ ।
ଚନ୍ଦ୍ରବାରେ ନାରୀ ଯେବେ ହୁଏ ରଜୋବତୀ
ଆୟୁ ଧନ ପୁତ୍ର ବଢ଼େ ସ୍ୱାମୀରେ ଭକତି ।
କୁଜବାରେ ରଜୋବତୀ ହୋଇଲେ ରମଣୀ
ପୁତ୍ର ସନ୍ତାନ ନୁହଇ ହେଲେ ନଷ୍ଟ ପୁଣି ।
ବୁଧବାରେ ରଜୋବତୀ ହୁଏ ଯେବେ ନାରୀ
ଧନ ସନ୍ତାନ ବର୍ଦ୍ଧିତ ହୁଅଇ ତାହାର ।
ଗୁରୁବାରେ ସ୍ତିରୀ ରଜ ପ୍ରାପତ ହୋଇଲେ
ସର୍ବକାର୍ଯ୍ୟ ସିଦ୍ଧ ହୁଏ ତା ମୁଖ ଚାହିଁଲେ ।
ଯେଉଁ ସ୍ତିରୀ ରଜୋବତୀ ହେବ ଶୁକ୍ରବାର
ପୁତ୍ର ଦୁହିତା ହୁଅଇ ଅପାରୁ ଅପାର ।
ଶନିଶ୍ଚର ବାରେ ଯେବେ ହୁଏ ରଜୋବତୀ
ଅବଶ୍ୟହିଁ ପତି ପତ୍ନୀ ବିନାଶ ଲଭନ୍ତି ।
ସାତ ବାରକୁ ଯେ ଭୋଗ ପଞ୍ଚଦଶ ତିଥି
ତିଥିକୁ ଗଣନା କଲେ ରଜଷ୍ଟନ୍ଧ ପାନ୍ତି ।
ପ୍ରତିପଦା ଦିନ ସ୍ତିରୀ ରଜୋବତୀ ହେଲେ
ଶିଶୁହତ୍ୟା ଦୋଷ ଲଗେ ବୃହସ୍ପତି ବୋଲେ ।
ଦ୍ୱିତୀୟାରେ ରଜୋବତୀ ହୁଏ ଯେଉଁ ନାରୀ
କାମ ଅସାଷ୍ଟମେ ସେହୁ ହୁଅଇ ଦୋଗୃହୀ ।
ତୃତୀୟା ଦିବସେ ସ୍ତିରୀ ହେଲେ ରଜୋବତୀ
ଅର୍ଥଲାଭ ହୁଏ ତାର ବଢ଼ଇ ସନ୍ତତି ।
ଯେଉଁ ସ୍ତିରୀ ରଜୋବତୀ ହୁଏଇ ଚତୁର୍ଥୀ
ଅତି ମହାପାପିଷ୍ଠା ସେ ରତି କଷ୍ଟେ କଷ୍ଟୀ ।
ଯେଉଁ ସ୍ତିରୀ ରଜୋବତୀ ହୁଅଇ ପଞ୍ଚମୀ
ଲକ୍ଷ୍ମୀକଳା ବହି ସ୍ତିରୀମାନଙ୍କ ଉତ୍ତମୀ ।
ଷଷ୍ଠୀଦିନ ରଜୋବତୀ ହୁଏ ଯେ ରମଣୀ
ଦୁହିତା ଜନମି ହୁଏ କଳିଆଖୋରଣୀ ।
ସପ୍ତମୀ ତିଥିରେ ନାରୀ ହେଲେ ରଜୋବତୀ
ଧନ ବର୍ଦ୍ଧିତ ହୋଇ ସେ ହୁଏ ରଜୋବତୀ ।

ଅଷ୍ଟମୀ ତିଥିରେ ରଜପ୍ରାପ୍ତ ହେଲେ ନାରୀ
ସ୍ୱାମୀ ଥାଉଁ ଥାଉଁ ହେବ ହୁଅଇ ଦୋଷୀ ।
ନବମୀ ଦିନରେ ଯେବେ ହୁଏ ରଜସ୍ୱଳା
ସର୍ବେ ଉପୁଜିବ ତାର କେଉଁ ଅବଳା ।
ଯେଉଁ ନାରୀ ରଜସ୍ୱଳା ହୁଏ ଦଶମୀରେ
ସୌଭାଗ୍ୟଯୁକ୍ତ ସନ୍ତାନ ଉପଜାତ କରେ ।
ଏକାଦଶୀ ଦିନ ହେଲେ ରଜୋବତୀ ନାରୀ
ପାପିଷ୍ଠ ବୋଲି ନ ଛୁଇଁ ଶରୀର ତାହାର ।
ରଜୋବତୀ ହୁଅନ୍ତି ଯେବେ ଦ୍ୱାଦଶୀର ଦିନେ
ପରପୁରୁଷାଭିଳାଷୀ ହୁଅନ୍ତି ସେମାନେ ।
ଯେବେ ନାରୀ ରଜୋବତୀ ହୁଏ ତ୍ରୟୋଦଶୀ
ହୀନମାନ ହୁଏ ସେହୁ ପରଦୋଷେ ଦୋଷୀ ।
ନାରୀ ରଜୋବତୀ ହେଲେ ଚତୁର୍ଦ୍ଦଶୀ ଦିନ
ତା ଅଙ୍ଗ ଛୁଇଁଲେ ସ୍ୱାମୀ ହୁଅଇ ନିଧନ ।
ଯେଉଁ ନାରୀ ଅମାବାସ୍ୟା ଦିନ ରଜପାଇ
ଛୋଟା କଣା କାଲ କୁଜା ପୁତ୍ର ଜନମଇ ।
ଯେଉଁ ନାରୀ ରଜୋବତୀ ହୁଅଇ ପୂର୍ଣ୍ଣିମୀ
ଏକ ପୁତ୍ର ଜାତହୋଇ ହୁଏ ମହାଧର୍ମୀ ।
ନକ୍ଷତ୍ରକୁ ରଜଚିହ୍ନ ପାଇଲେ ପଣ୍ଡିତେ
ଉଦୟ ଅସ୍ତ ଦେଖିଲେ ଶାସ୍ତ୍ରର ସଙ୍ଗତେ ।
ଅଶ୍ୱିନୀରେ ହେଲେ ତାକୁ ମଧ୍ୟମାନ ଗଣି
ଭିଜା ନକ୍ଷତ୍ରରେ ହେଲେ ହୁଏ ପିଶାଚୁଣୀ ।
କୃତ୍ତିକା ନକ୍ଷତ୍ରେ ହେଲେ ଘାଟେ ଗୃହବାସ
ରୋହିଣୀରେ ହେଲେ ମିଳେ ସବୁଦିନେ ଗ୍ରାସ
ମୃଗଶିର ନକ୍ଷତ୍ରରେ ରଜୋବତୀ ହେଲେ
ସ୍ୱାମୀ ଥାଉଁ ଥାଉଁ ସେହୁ ଦୁଃଖ ପାଏ ଭଲେ
ଆର୍ଦ୍ରା ନକ୍ଷତ୍ରେ ନାରୀ ହେଲେ ରଜୋବତୀ
ଅବଶ୍ୟରେ ବ୍ୟାଧିବନ୍ତ ହୁଏ ତାର ପତି ।
ପୁନର୍ବସୁ ନକ୍ଷତ୍ରରେ ହେଲେ ରଜସ୍ୱଳା
ଧନପୁତ୍ର ମିଳେ ସଦା ସୁଖୀ ସେ ଅବଳା ।
ପୁଷ୍ୟା ନକ୍ଷତ୍ରରେ ରଜ ପାଇଲେ ଯୁବତୀ
ଧନପୁତ୍ର ମିଳେ ହୁଏ ସ୍ୱାମୀ ପ୍ରିୟବତୀ ।
ଅଶ୍ଳେଷା ନକ୍ଷତ୍ରେ ସ୍ୱାମୀ ଅଳପ ଆୟୁଷ
ମଘାନକ୍ଷତ୍ରରେ ନାରୀ ହୁଅଇ ବିନାଶ ।
ପୂର୍ବାଫାଲ୍ଗୁନୀରେ ସ୍ତ୍ରୀ ହେଲେ ରଜୋବତୀ
ମଧ୍ୟମ ଭୋଗ ଭୁଞ୍ଜଇ ଜାଣ ସେ ଯୁବତୀ ।
ଉତ୍ତରାଫାଲ୍ଗୁନୀରେ ସୌଭାଗୀ ଯୁବତୀ
ଅନେକ ସମ୍ପଦ ଭୋଗେ ଧର୍ମେ ଥାଏ ମତି ।
ହସ୍ତାରେ ଧନ ସନ୍ତାନ ହୁଏ ବର୍ଦ୍ଧମାନ
ବହୁ ସମ୍ପଦ ଭୋଗନ୍ତି ଯେବେ କେହିଜଣ ।
ଚିତ୍ରା ନକ୍ଷତ୍ରରେ ନାରୀ ହେଲେ ରଜୋବତୀ
ସକଳ କାଳରେ ପୀଡ଼ାଗ୍ରସ୍ତ ହୁଏ ଅତି ।
ସ୍ୱାତୀ ନକ୍ଷତ୍ରରେ ରଜୋବତୀ ଯେ ଯୁବତୀ
ତାହାକୁ ଦେଖି ନ ପାରେ ତାର ନିଜ ପତି ।
ବିଶାଖାରେ ରଜୋବତୀ ହୁଏ ଯେଉଁ ନାରୀ
ଅନ୍ନ ଶାନ୍ତି କୁ ପାଆନ୍ତି କୁଟୁମ୍ବ ତାହାର ।
ଅନୁରାଧାରେ ହୁଅଇ ଜାଣ ଯେଉଁ ନାରୀ
ପୁତ୍ରପୁତ୍ରୀ ଜନମିଣ ମରନ୍ତି ତାହାର ।
ଜ୍ୟେଷ୍ଠା ନକ୍ଷତ୍ରରେ ହେଲେ ସ୍ୱାମୀ ହୁଏ ରୋଗୀ
ମୂଳା ନକ୍ଷତ୍ରରେ ଗୁରୁଜନରେ ଅଭାଗୀ ।
ପୂର୍ବାଷାଢ଼ାରେ କଳହବତୀ ହୁଏ ନାରୀ
ଉତ୍ତରାଷାଢ଼ା ନକ୍ଷତ୍ରେ ସ୍ୱାମୀ ଭକ୍ତିକରି ।
ଶ୍ରବଣା ନକ୍ଷତ୍ରେ ନାରୀ ରଜୋବତୀ ହେଲେ
ସର୍ବକାର୍ଯ୍ୟ ସିଦ୍ଧ ହୁଏ ତା ମୁଖ ଚାହିଁଲେ ।
ଧନିଷ୍ଠାରେ ରଜୋବତୀ ଯେବେ ହେବ ନାରୀ
ଅଳ୍ପଦିନେ ସ୍ୱାମୀନାଶ ହେବ ସେ ଦୋଷୀ ।
ଶତଭିଷା ନକ୍ଷତ୍ରରେ ହୋଇଲେ ଯୁବତୀ
ଅବଶ୍ୟ ଅବଶ୍ୟ ରୋଗୀ ହୁଅଇ ସେ ପତି ।
ପୂର୍ବଭାଦ୍ର ନକ୍ଷତ୍ରରେ ହେଲେ ରଜୋବତୀ
ସନ୍ତାନ ଜାତ ହୋଇଲେ ଦରିଦ୍ର ହୁଅନ୍ତି ।
ଉତ୍ତରଭାଦ୍ର ନକ୍ଷତ୍ରେ ରଜୋବତୀ ହେଲେ
ଶାଶୁ ଶ୍ୱଶୁର ଗୁରୁଙ୍କୁ ନ ମାନଇ ଭଲେ ।
ଯେଉଁ ନାରୀ ରଜୋବତୀ ହୁଅଇ ରେବତୀ
ଧନ ଧାନ୍ୟ ବଢ଼ଇ ଯେ ହୁଏ ପୁତ୍ରବତୀ ।
ତିଥି ବାର ନକ୍ଷତ୍ରାଦି ଜାଣି ସୁଗ୍ରହରେ
ହୋଇଲେ ପୂଜାକାଳେ ହେବ ବିଧବା ଯୁକତେ
ଏହିନକ ଯୋଗେ ଶୁଭ ଅନୁକୂଳ ଦିଠି
କୁମାର କୁମାରୀ ଦୁହେଁ ହେଲେ ଭେଟାଭେଟି ।
ବିଧିବିଧାନେ କରିଲେ ମଙ୍ଗଳ ଅର୍ଚ୍ଚନା
ଦେବଦେବୀ ପୂଜାକଲେ କଳଶ ସ୍ଥାପନା ।
ବିଚିତ୍ର ମନ୍ଦିରେ ଶଯ୍ୟା କଲେ ନିମନ୍ତେ
କୁମାର କୁମାରୀ ତହିଁ ହେଲେ ଉପଗତ ।

ପତିତପାବନ ଦେବ ଆହେ ଜଗନ୍ନାଥ
ଶାରଳା ଦାସଙ୍କୁ ରଖ କରି ପଦେ ଭୃତ୍ୟ ।

---

## ସୁଦେଷ୍ଣା ପାଟମହାଦେଈଙ୍କର ଯୁଦ୍ଧ ସମ୍ବନ୍ଧେ ଭବିଷ୍ୟତ୍‌ବାଣୀ ବର୍ଣ୍ଣନା ବିଶ୍ୱଦେବାଙ୍କୁ ବିଶ୍ୱାମିତ୍ରଙ୍କର ଶାପ

ଏଥୁଅନନ୍ତରେ ଶୁଣ ଆହେ ମନୁଷ୍ୟେ
ଶ୍ରୀ ମହାଭାରତ ଶୁଣି ପାପ କର କ୍ଷୟ ।
ପୁରାଣେ ଯାହା ପ୍ରକାଶ କରିଲେ ଅଗସ୍ତି
ସଂସାର ଜନଙ୍କ ହିତେ କହୁଛି ସମ୍ପ୍ରତି ।
ସୁଦେଷ୍ଣା ଦ୍ରୌପଦୀ ଛନ୍ତି ଏକ ସମଯୋଗେ
ବାସୁଦେବ ଧନଞ୍ଜୟ ବସିଛନ୍ତି ଆଗେ ।
ସୁଦେଷ୍ଣା ବୋଲଇ ତହୁଁ ବହୁତ ବିନୟେ
ସେ କାର୍ଯ୍ୟସିଦ୍ଧି ନ କର କିପାଁ । ଦେବରାୟେ
କୌରବ ପାଣ୍ଡବ ହେଉଅଛନ୍ତି ବିବାଦୀ
ପାଣ୍ଡବେ ପ୍ରସନ୍ନ ହୋଇ କର କାର୍ଯ୍ୟ ସିଦ୍ଧି ।
ତହୁଁ ଶ୍ରୀକୃଷ୍ଣ ବୋଇଲେ ଶୁଣ ଆଗୋ ମାତ
କୌରବ ପାଣ୍ଡବଙ୍କର ହେବ ଶରଘାତ ।
ସୁଦେଷ୍ଣା ବୋଇଲେ ତୁମ୍ଭେ ଅଟ ମଧୁପାଣି
ଘୋର ନିବାରଣ ହେବ ତୁମ୍ଭରେ ସମସ୍ତ ।
ଲକ୍ଷେକ ନୃପତି ଦୈତ୍ୟ ଦାନବାଦି କରି
ଏହାଙ୍କ ଘୋର ନ ସହେ ଦେବୀ ବସୁନ୍ଧରୀ ।
ସେଥିପାଇଁ ପାର୍ଥ ଶ୍ରମ କଲ ପୃଥିବୀରେ
ଘୋର ନିବାରିବେ ସେହୁ ଭାରତ ଯୁଦ୍ଧରେ ।
ପ୍ରଥମ ଦିନରେ ହୋଇ ଭୀଷ୍ମ ସେନାପତି
ଦିନକେ ମାରିବେ ସେହୁ ଦଶସହସ୍ର ରଥୀ ।
ଏହି ପରକାର ରଣ ହେବ ଦଶଦିନ
ଏଥକୁ ସହାୟ ତୁମ୍ଭେ ଥିବ ଜନାର୍ଦ୍ଦନ ।
ଇନ୍ଦ୍ର ଗୋବିନ୍ଦ ଅର୍ଜୁନ ଏକତ୍ର ହୋଇଲେ
ଭୀଷ୍ମ ସମାନ ନୋହିବେ ସମର କରିଲେ ।
ଦେବ ଦୈତ୍ୟ ଅସମ୍ଭବ ଭୀଷ୍ମଙ୍କର କଥ
ପାଣ୍ଡବ ଜିଣିବାପାଇଁ ସଦା ତାଙ୍କ ଇଚ୍ଛା ।
ସୁଦେଷ୍ଣା ବୋଇଲେ ପୁଣି ମୋର ପୁତ୍ର ଶ୍ୱେତ
ଭୀଷ୍ମ ଯୁଦ୍ଧକୁ ମୁକୁଟ ବାନ୍ଧିବ ସେ ମାଥ ।
ଶ୍ୱେତ ଶରେ ଭୀଷ୍ମଦେବ ହେବେ ଇତସ୍ତତଃ
ତେବେ ପାଣ୍ଡବଙ୍କ ରକ୍ଷା ହେବ ଯଦୁନାଥ ।

କେଶବ ବୋଲନ୍ତି ମାଗୋ ଅର୍ଜୁନ ସମାନ
କପି ବିଦ୍ୟା ଜାଣଇ ସେ ତୋହର ନନ୍ଦନ ।
ଆଦି କ୍ଷତ୍ରୀବିଦ୍ୟା ଅଟେ ପରଶୁରାମର
ତାହା ପ୍ରତିଗ୍ରହ କଲେ ଦ୍ରୋଣ ମହାବୀର ।
ତାଙ୍କଠାରୁ ବିଦ୍ୟାପ୍ରାପ୍ତ ହୋଇଲେ ଅର୍ଜୁନ
ତାଙ୍କୁ ବଳିବ କେମନ୍ତେ ଶ୍ୱେତ ତୋ ନନ୍ଦନ
କାହାଠାରୁ ବିଦ୍ୟାପ୍ରାପ୍ତ ହେଲା ତୋର ସୁତ
ସେଥିର ବାରତା ମୋତେ କହ ଆଗୋ ମାତ
ସୁଦେଷ୍ଣା ବୋଇଲେ ଯେବେ ବସୁ ସତ୍ୟଯୁଗେ
ବିଶ୍ୱାମିତ୍ର ମହାରାଜା ହେଲେ ମଧ୍ୟସ୍ୱର୍ଗେ ।
ତାଙ୍କର ଶର ସନ୍ଧାନ ବିଷମ ଅଟଇ
ଶ[illegible] ମନଭେଦୀ ଶର ପାତାଳ ଭେଦଇ ।
ଜଳ ଅନଳ ପବନ ସକଳ ଭେଦନ୍ତି
ବିଶ୍ୱାମିତ୍ର ମହାମନ୍ତ୍ରେ ଉବୁର ନ ଯାନ୍ତି ।
ତିନିଲୋକକୁ ଜିଣିଲେ ସେ ମନ୍ତ୍ର ପ୍ରସାଦେ
କ୍ଷତ୍ରିୟ ବିଦ୍ୟା ଛାଡ଼ିଲେ ବଶିଷ୍ଠ ବିବାଦେ ।
ରାଜପଦ ଛାଡ଼ି ସେହୁ ହୋଇଲେ ତପସ୍ୱୀ
ତିନି ମନୁ ପରିଯନ୍ତେ ଲୟକଲେ ବସି ।
ଶିବ ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ଗ୍ରହ ଆଦିକରି
ସମସ୍ତେ ଆକୁଳ ହେଲେ ପୃଥ୍ୱୀ ଖଣ୍ଡ ଗୁରି ।
ମଘବା କୂଟ କରଣ ପେଷିଲେ ମେନକା
ବିଶ୍ୱାମିତ୍ରଙ୍କୁ ଭେଟିଲା ଯାଇ ସେ ନାୟିକା ।
ମଦନ ବସନ୍ତ ଯାଇ ପୀଡ଼ିଲେ ତା ଅଙ୍ଗ
ଭାଙ୍ଗିଗଲା ଯୋଗନିଦ୍ରା ହେଲା ତପଭଙ୍ଗ ।
ମେନକା ବିଶ୍ୱାମିତ୍ରଙ୍କ ବଢ଼ିଲା ପୀରତି
ଅମୋଘ ବୀର୍ଯ୍ୟ ମେନକା ହେଲା ଗର୍ଭବତୀ ।
ପୁଣି ସୁଦେଷ୍ଣା ବୋଇଲା ଶୁଣ ବାସୁଦେବ
ରହିଲା ସେ ରେତ ହାଦେ ମେନକାର ଗର୍ଭ ।
ଅକ୍ଷୟ ହୋଇ ରହିଲା ଯେଉଁ ମହାରେତ
ସେହି ରେତ ମୂର୍ତ୍ତି ଅଟେ ଶୁଣ ହେ ଅଚ୍ୟୁତ ।
ମାତାଗର୍ଭେ ଯେତେବେଳେ ପାଞ୍ଚମାସ ହେଲି
ଗର୍ଭରେ ଥାଇ ସକଳ ବିଦ୍ୟା ମୁଁ ଶିଖିଲି ।
ମାତାମେଳେ ଶୋଇଛନ୍ତି ବିଶ୍ୱାମିତ୍ର ଯତି
ଆଶ୍ୱିନ ଶୁକ୍ଳ ଚତୁର୍ଥୀ ଅଟଇ ସେ ତିଥି ।
ଚନ୍ଦ୍ରବାର ପାଞ୍ଚଦଣ୍ଡେ ପଞ୍ଚମୀ ଯେ ଭେଟି
ଏମନ୍ତ ଶୁଭଯୋଗ ଯେ ତହିଁ ଅଛି ଘଟି ।

ଉତ୍ତର ଫାଲଗୁନୀ ଯେ ହସ୍ତା କନ୍ୟାରାଶି
ତହା ଅନ୍ତେ ସ୍ୱାତି ତୁଳ ଆସିଣ ପ୍ରକାଶି ।
ମେନକା ମନ ଆନନ୍ଦେ ତାଙ୍କୁ କଲେ ପୂଜା
ରାଜପଦ ଗୁଡ଼ କପାଁ ତପେ କଲ ବାଞ୍ଛା ।
ପୁଣି ଯେ ବୋଇଲେ ଆମ୍ଭେ ଶବ୍ଦଭେଦ ପଟୁ
ଅନେକ ଯେ ହତ୍ୟାକାରୀ ତେଣୁ ଆମ୍ଭେ ଅଟୁ
ନାରାଚକୁ ପେଷିଦେଇ ଯାହା ନାମ ଧରି
ଷଡ଼ଯୂଣେ ଥିଲେ ମଧ୍ୟ ଶର ଆସେ ମାରି ।
ତହିଁ ଶର ତୂଣେ ପଶେ ଇଚ୍ଛାରେ ବାହୁଡ଼ି
ନ ମାରି ପାରିଲେ ନିଜେ ହୋଇଯାଏ ମୋଡ଼ି
ତାହା ଶୁଣିଣ ମେନକା ବୋଇଲେ ହେ ଦେବ
ଏ ଆଶ୍ଚର୍ଯ୍ୟ କଥାସବୁ ମୋ ଆଗେ କହିବ ।
ତା ଶୁଣି ପ୍ରସନ୍ନ ହୋଇ ଆହେ ଜଗନ୍ନାଥ
ସକଳ ମନ୍ତ୍ର କହିଲେ ଆହେ ବିଶ୍ୱାମିତ୍ର ।
ମୁହିଁ ତାହା ଶୁଣିଣ ଯେ ମାତାଗର୍ଭେ ବସି
ମାତା ଶୋଇଲେ ତେଇଶ ଦଣ୍ଡବେଳ ନିଶି ।
ଅସ୍ତ୍ରମାନଙ୍କର ଭେଦ ପାଇଲି ସମସ୍ତ
ବ୍ରହ୍ମଅସ୍ତ୍ରମାନଙ୍କର ନ ପାଇଣ ଅନ୍ତ ।
ମାତାଙ୍କ ଗର୍ଭେଣ ଥାଇ ଶୁଣି ଧନୁର୍ବିଦ୍ୟା
ମୁହିଁ ସ୍ଥିର ହୋଇ ଶିଖି ହେଲି ସର୍ବସିଦ୍ଧା ।
ସଂଯମୀ ବିଶ୍ୱାମିତ୍ର ଯେ ହରିହର କଳା
ତେଣୁ ହାଦେ ନାମ ମୋର ହେଲା ଶକୁନ୍ତଳା
ଚନ୍ଦ୍ରପୁର ରାଜ୍ୟେ ଯାଇ ଚଣ୍ଡୀ ମୁଁ ହୋଇଲି
ଅନେକ ଅସୁର ମାରି ପ୍ରଜାଙ୍କୁ ସ୍ଥାପିଲି ।
ଶ୍ୱେତରାଜା ତପକଲା ମୋତେ ଅନୁସରି
ମଣାଇ ମାଗନ୍ତେ ଭାର୍ଯ୍ୟା ହୋଇଲି ତାହାରି ।
ଶ୍ୱେତ ମହାରାଜା ପୁଣି ଯେଉଁ ଯାଗକଲା
ବ୍ରହ୍ମାର ପୁତ୍ର ବଶିଷ୍ଠ ଯାଗନିକ ହେଲା ।
ଆବର୍ତ୍ତିକ ସମ୍ବର୍ତ୍ତିକ ହେଲେ ଘୃତଧାରି
ତେବଶ ବରଷ ଯାଏ ବରଷିଲେ ପୂରି ।
ଲୋଭେ ବୈଶ୍ୱାନର ବହୁଘୃତ ପାନକଲେ
ମନ୍ଦାଗ୍ନିରେ ଲୁହୁବୁହୁ ବ୍ୟାଧିଗ୍ରସ୍ତ ହେଲେ ।
ସତ୍ୟଯୁଗେ ଏହୁ ଥିଲେ ଶ୍ୱେତ ମହାରାଜା
ଶକୁନ୍ତଳା ନାମେ ହେଲି ତାଙ୍କର ଭାରିଯା ।
ତ୍ରେତାଯୁଗେ ହେଲେ ଏହୁ କମଳ ନୃପତି
ମୁହିଁ ତାଙ୍କ ଭାର୍ଯ୍ୟାହେଲି ନାମ ଶୋଭବତୀ ।

ଏବେ ଆସି ଏହୁ ହେଲେ ବିରାଟର ରାଜା
ପୁଣି ମୁଁ ସୁଦେଷ୍ଣା ନାମେ ତାଙ୍କର ଭାରିଯା ।
କଳିରେ ଏ ଉପୁଜିବେ ଇନ୍ଦ୍ରଦ୍ୟୁମ୍ନ ହୋଇ
ଗୁଣ୍ଡିଚ ନାମେ ଯାଙ୍କର ହେବ ମହାଦେଈ ।
ବିରାଟ ଭାର୍ଯ୍ୟା ସୁଦେଷ୍ଣା ମୋର ନାମ ଏବେ
ତେଣୁ ଦୁର୍ଗତି ଖଣ୍ଡିଲେ ରହିଲେ ପାଣ୍ଡବେ
ବିରାଟ ଔରସେ ମୁହିଁ ହୋଇ ଗର୍ଭବତୀ
ତିନି ସୁତ ଏକ ସୁତା କଲି ଉତପତ୍ତି ।
ବିଚକ୍ଷଣ ଦେଖିଲି ମୁଁ ଶ୍ୱେତ ସୁତଗୋଟି
ତେଣୁ ଶିଖାଇଲି ମନ୍ତ୍ରକରି ଗୋଟି ଗୋଟି ।
ଦଶକୋଟି ମନ୍ତ୍ରବିଦ୍ୟା ତାଙ୍କୁ ଶିଖାଇଲି
ବ୍ରହ୍ମଅସ୍ତ୍ର ଧାତୁବିଦ୍ୟା ଏକା ନ ପାଇଲି ।
ଭୀଷ୍ମଙ୍କୁ ଜିଣିବ କଲେ ବ୍ରହ୍ମଅସ୍ତ୍ର ଶିକ୍ଷା
ମୋ ପୁତ୍ରହସ୍ତେ ପାଣ୍ଡବେ ହୋଇବେଟି ରକ୍ଷା
ଗତ ଆଗତ କହିଲେ ସେ ସୁଦେଷ୍ଣା ସତୀ
ଶୁଣି ଆଶ୍ଚର୍ଯ୍ୟ ହୋଇଲେ ଜଗତର ପତି ।
କୃଷ୍ଣ ବୋଇଲେ ସର୍ବଜ୍ଞ ଅଟ ଗୋସାମଣୀ
ଭାରତ ସମର କଥା କହ ପରମାଣି ।
ସୁଦେଷ୍ଣା ବୋଇଲେ ତୁମ୍ଭେ ଶୁଣ ଦେବହରି
ମୋ ଶ୍ୱେତ ପୁତ୍ରକୁ ରକ୍ଷା ନ ପାରିବ କରି ।
ପାଣ୍ଡବ ଛଳେ କରିବ ସେହୁ ରଣଯାଗ
ନିଶ୍ଚୟ ମୃତ୍ୟୁ ପ୍ରାପତ ହେବ ତାର ଆଗ ।
ସମାପୁଣ ରଣେ କ୍ଷତ୍ରୀ ଲଭିଛନ୍ତି ଗତି
ମହାଭାରତରେ ଶତଗୁଣ ହେବ ମୁକ୍ତି ।
ଭୀଷ୍ମ ଯୁଦ୍ଧ ଦଶଦିନେ ଶିଖଣ୍ଡୀ ରହିବ
ତାଙ୍କୁ ଦେଖି ଭୀଷ୍ମଙ୍କର ଦର୍ପ ଚୂର୍ଣ୍ଣ ହେବ ।
ତାହାଙ୍କର ଅନ୍ତେ ଦ୍ରୋଣ ହେବେ ସେନାପତି
ଚକ୍ରବ୍ୟୂହ ରଚିବେ ସେ କରି ଭଗ୍ନମୂର୍ତ୍ତି ।
ଦଶସସ୍ର ରଥୀ ପୁଣି ଅଶୀସସ୍ର ସେନା
ତ୍ରିପ୍ରହରେ ଅଭିମନ୍ୟୁ ହତ ହେବ କନା ।
ସୁଦେଷ୍ଣା ସତୀଙ୍କ ମୁଖୁ ଏ ବଚନ ଶୁଣି
ମୂର୍ଚ୍ଛା ଯାଇ ଧନଞ୍ଜୟ ପଡ଼ିଲେ ଧରଣୀ ।
କୋଳ କରିଣ ଧଇଲେ ଶ୍ରୀପୁରୁଷୋତ୍ତମ
ସୁଦେଷ୍ଣା ବୋଇଲେ ବୀର ନୁହ ଅସାଷ୍ଟମ ।
ଏହି ଅଭିମନ୍ୟୁ ପୂର୍ବ ତୁମ୍ଭର ନୁହଇ
ପୂର୍ବ ଚରିତ କହୁଛି ଶୁଣ ମନଦେଇ ।

ବ୍ରହ୍ମା ବୋଲେ ପୃଥ୍ୱୀ ଭାର ହରଣ ନିମନ୍ତେ
ତୁମ୍ଭେ ନାରାୟଣ ଜନ୍ମ ଆସି ଏହି ମର୍ତ୍ତ୍ୟେ ।
କଂସ ଅଷ୍ଟମଲ୍ଲ କାଳଯବନ ନାରକା
ବାଣ ବଜ୍ରନାଭ ଅମ୍ବା କଦମ୍ବା ସୌନକା ।
ଚାଣୁର ମୁଷ୍ଟିକ ଜରା ଯାମଳାଦ୍ଧ ବକା
ଷଣ୍ଢା ଧେନୁକା ଦୈତ୍ୟଙ୍କୁ ନିବାରିଲେ ଏକା ।
ସ୍ୱାଙ୍କୁ ନିବାରି ଭାରତଯୁଦ୍ଧ ପୁଣି କରି
ଛେବେ ଯାଇ ନିସୂଦନ ହେବ ମହାଭାର ।
ତୁମ୍ଭେ ବୋଇଲ ପାର୍ଥର ହେବ ମୁଁ ସାରଥି
ନିସୂଦନ କରାଇବ ବଂଶ କୁରୁପତି ।
ଧାତା ବୋଇଲେ ଏମନ୍ତ କଥା କପଁ । କହୁ
ସୋମବଂଶ ନ ଥିଲେ ସାରଥି ହେବୁ କାହୁଁ
ପିତାମହ ବୋଲେ ଚନ୍ଦ୍ରଧ୍ୱଜର ଯେ ନାତି
ସୁଯଜ୍ଞ କୁମର ଆଦ୍ଧ ନାମେ ମହାରଥୀ ।
ସେ ଆଦ୍ଧ କରାଇ ଆଜ୍ଞା ଦେଲେ ବେଦବର
ପୃଥିବୀରେ ଜାତ ହୁଅ ସୁଭଦ୍ରା ଗର୍ଭର ।
ଶ୍ରୀକୃଷ୍ଣ ଭଗିନୀ ହେବେ ଅର୍ଜ୍ଜୁନର ନାରୀ
ଅଭିମନ୍ୟୁ ନାମେ ସୁତ ହୋଇବୁ ତାଙ୍କର ।
ତାହା ଶୁଣି ଆଦ୍ଧ ବୋଲେ ଏହି କଥା ଭବ
ବହୁତ କାଳ ମର୍ତ୍ତ୍ୟରେ ରହି ନ ପାରିବ ।
ଚଉଦ ବରଷ ମୁହିଁ ଥିବି ତୋର ବୋଲେ
ହରି ଅର୍ଜ୍ଜୁନ ମାରିବ ବିଳମ୍ବ ହୋଇଲେ ।
ତୁମ୍ଭେ ଦେବ କଲ ସତ୍ୟ ବ୍ରହ୍ମା ମଧପାର
ଅଭିମନ୍ୟୁ ସ୍ୱର୍ଗେ ଯିବା ହୋଇବ କେମନ୍ତ ।
ଚଉଦ ବର୍ଷକୁ ଯେବେ ଦିନେ ଯିବ ବଳି
ତୁମ୍ଭଙ୍କୁ ପାର୍ଥକୁ ମାରି ସ୍ୱର୍ଗେ ଯିବ ଚଳି ।
ଶୋକଭରେ ସୁଦେଷ୍ଣା କହିଲେ ଏହି କଥା
ଗର୍ଭେ ଧରିଣ ବିଧବା ହେବ ମୋ ଦୁହିତା ।
ଅଭିମନ୍ୟୁର ପିଅର ନୁହେ ହେ କହନ୍ତି
ମାତ୍ସ୍ୟମୋହେ ପଡ଼ି ବୋଲି ମୋର ସୁନାଟୋଟି
ଅଭିମନ୍ୟୁର ନିଧନ ଅର୍ଜ୍ଜୁନର ରାଗେ
ଶକଟବ୍ୟୁହ ସମର ହୋଇବ ଯେ ବେଗେ ।
ଭୂରିଶ୍ରବା ଶିରଚ୍ଛେଦ ସାତ୍ୟକି କରିବ
ଅର୍ଜ୍ଜୁନ ଜୟଦ୍ରଥକୁ ନିଷ୍ଟୟ ମାରିବ ।
ସେହି ରାତ୍ରିକାଳେ ପୁଣି ସମର ହୋଇବ
ଘଟୋତ୍କଚ ଅଳମ୍ବୁଷ ରଣେ ନାଶିଯିବ ।
ମୋର ସ୍ୱାମୀ ନା ଯିବେ କର୍ଣ୍ଣ ଶରଘାତେ
ଦ୍ରୁପଦର ଶିରଚ୍ଛେଦ ଦ୍ରୋଣଙ୍କର ହସ୍ତେ ।
କଳିଙ୍ଗ ବାହ୍ଲୀକ ସୋମଦତ୍ତ କୃପବ୍ରହ୍ମା
ନାଶଯିବ ଭୀମ ହାତେ ହସ୍ତୀ ଅଶ୍ୱତ୍ଥାମା ।
ଅଶ୍ୱତ୍ଥାମା ହତ ବୋଲି ଶୁଣି ଗୁରୁ ଦ୍ରୋଣ
ଅସ୍ତ୍ର ତ୍ୟାଗକରି ଫିଙ୍ଗି ଦେବେ ସେ କୃପାଣ ।
ସେହିକାଳେ ଧୃଷ୍ଟଦ୍ୟୁମ୍ନ ପଛକତି ଥିବ
ପିତା ଶତ୍ରୁ ବୋଲି ତାଙ୍କ ମସ୍ତକ ଛେଦିବ ।
ଦ୍ରୋଣଅନ୍ତେ କର୍ଣ୍ଣବୀର ହେବ ସେନାପତି
ଅଠାଣେ ଇ ଭାଇ ଭୀମ ଦେବେ ସମକତି ।
ଆରଦିନ ଦୁଃଶା ଭୁଜ ବଳେ ଉପାଡ଼ିବ
ତାର ରକ୍ତରେ ଦ୍ରୌପଦୀ କେଶ ପଖାଳିବ ।
ତହୁଁ ଉତ୍ତାରୁ କର୍ଣ୍ଣକୁ ମାରିବେ ଅର୍ଜ୍ଜୁନ
ଶଲ୍ୟ ଶକୁନି ଲକ୍ଷ୍ମଣ ପଡ଼ିବେ ସେ ଦିନ ।
ଅସଂଖ୍ୟ ସେନା ପଡ଼ିବେ ଗଦା ସମରରେ
ଅଠର କ୍ଷୌଣୀ ପଡ଼ିବେ ଅଠର ଦିନରେ ।
ଦୁର୍ଯ୍ୟୋଧନ ପଳାଇବ ନିଜ ପ୍ରାଣ ଘେନି
ବ୍ୟାସସରରେ ଲୁଚିବ ଭୟ ପାଇ ପୁଣି ।
ଭୀମ ତିନିରଡ଼ି ଶୁଣି ନ ସହି କୋପରେ
ସରୋବରରୁ ବାହାର ହୋଇବ ସମରେ ।
ଯେଉଁ ରଡ଼ିଘାତେ ତିନି ଭୁବନ କମ୍ପଇ
ସେ ରଡ଼ିକୁ ଦୁର୍ଯ୍ୟୋଧନ ସମ୍ଭାଳିବ କାହିଁ ।
ଭୀମ ଗଦାଘାତେ ତାର ଜାନୁ ଭାଙ୍ଗିଯିବ
ଅଶ୍ୱତ୍ଥାମା ସେନାପତି ସେ ଦିନ ହୋଇବ ।
ସୁଦେଷ୍ଣା ବୋଇଲେ ତହୁଁ ଶୁଣ ଭବଗ୍ରାହୀ
ପାଣ୍ଡବଙ୍କୁ ଲୁଚାଇବ ଦ୍ୱାରକାରେ ନେଇ ।
ଦ୍ରୌପଦୀର ପାଞ୍ଚପୁତ୍ର ଥିବେ ବିଦ୍ୟମାନ
ଅଶ୍ୱତ୍ଥାମା ତାଙ୍କ ଶିର ଛେଦିବ ସେଦିନ ।
ଦୁର୍ଯ୍ୟୋଧନର ଛାମୁରେ ମୁଣ୍ଡ ଦେବ ନେଇ
ତାହାର ପ୍ରାଣ ଛାଡ଼ିବ ପୁତ୍ର ମୁଖ ଚାହିଁ ।
ଦୁର୍ଯ୍ୟୋଧନ କଟୁକଥା କହିବ ତାହାକୁ
ମହାଦୁଃଖେ ପ୍ରାଣ ତେଜି ଚଳିବ ସ୍ୱର୍ଗକୁ ।
ତହୁଁ ଅଶ୍ୱତ୍ଥାମା ହୋଇ ଅତି କୋପମୂର୍ତ୍ତି
କାଂଶିକ ଶର ମାରିବ ପାଣ୍ଡବଙ୍କ ପ୍ରତି ।
କାଂଶିକା ଗୋଟିଏ ଘେନି ବେନିଫାଳ କରି
ଧନୁ ଏଦ କରିବ ସେ ମନ୍ତ୍ର ଦ ଉଚ୍ଚାରି ।

ନାଗଚ କରବ ତାର ଧେନ ଅଗ୍ରଖଣ୍ଡି
ଯାହାକୁ ପେଷିବ ତାର ମୁଣ୍ଡ ଯିବ ଛିଣ୍ଡି ।
ସୁଦେଷ୍ଣା ବୋଇଲେ ହରି ପୁଚ୍ଛଇ ତୁମ୍ଭଙ୍କୁ
ସେ କାଉଁଶିକାକୁ ବଳ ଦେବଟି କାହାକୁ ।
ପାଣ୍ଡବ ପାଞ୍ଚଭାଇ ଯେ ତୁମ୍ଭ ଆଦ୍ଧକର
ଆମ୍ଭି ପଡ଼ିଲେ ସେ ଶର ନଷ୍ଟେଁ ଯିବ ମାରି ।
ପାଣ୍ଡବ ପାଞ୍ଚଭାଇ ଯେ ତୁମ୍ଭର ଅଭିନ୍ନ
ବଳ ଭକ୍ଷଣ ନୋହିବ ଆପେ ଜନାର୍ଦ୍ଦନ ।
କାହାରେ ବଳଦେବ ତେବେ କହ ମୋରଆଗେ
କନକ ଯାନ ଲଗିବ ଏବେ ଯିବ ସ୍ୱର୍ଗେ ।
ସୁଦେଷ୍ଣା ସଖିଙ୍କ ମୁଖୁ ଏହି ବାକ୍ୟ ଶୁଣି
ଶ୍ରୀ ନାରାୟଣ ବସିଲେ ସ୍ତମ୍ଭୀଭୂତ ଜାଣି ।
ସୁଦେଷ୍ଣା ବୋଇଲେ ଶାନ୍ତ କଲ ମୋର କ୍ରୋଧ
ଜାଣି ନ କହ ପାଣ୍ଡବ କାରଣ ଉପ୍ରୋଧ ।
ଯାହାକୁ ଦେବାକୁ ତୁମ୍ଭେ ବିଚାରୁଛ ହୃଦେ
ମୁଁ ତାର ସ୍ୱରୂପ ଫେଡ଼ି କହୁଅଛି ହାଦେ ।
ଉତ୍ତରାର ଗର୍ଭେ ଅଭିମନ୍ୟୁ ଔରସରେ
ନବମାସ ନବଦିନ ଏକଇ କୁମରେ ।
ତୁମ୍ଭେ କଦାଚ ନ ଦେବ ପାଣ୍ଡବ ମାନଙ୍କୁ
ନଷ୍ଟପ୍ରୟ ଶରକୁ ଦେବ ସେ ଗର୍ଭ ଶିଶୁକୁ ।
ସେ ଶରେ ମରିବ ବାଳ ଆଜ ମୋର ବଳା
ପାର୍ଥ ବୋଲେ ସୋମବଂଶେ ବୁଡ଼ିଗଲା ଭେଳା
ସୁଦେଷ୍ଣା ବୋଇଲେ ଦୁଃଖ ନ କର ହେ ପାର୍ଥ
ତହିଁ ଉପାୟ କରିବେ ସିନା ଜଗନ୍ନାଥ ।
ଗୋବିନ୍ଦ ବୋଇଲେ ମାତା ମୋର ନାହିଁ ବୁଦ୍ଧି
ତୁହି ମାହେଶ୍ୱରୀ କହ ତା ବିଧାନ ବିଧି ।
ସୁଦେଷ୍ଣା ବୋଇଲେ ହରି ବିଶ୍ୱାମିତ୍ର ମୁନି
ମେନକାକୁ ଦେଇଥିଲେ ମୃତ୍ୟୁ ସଞ୍ଜୀବନୀ ।
ଅତି ସ୍ନେହରେ ମେନକା କହିଛନ୍ତି ମୋତେ
ମରିଥିବା ଲୋକ ପ୍ରାଣ ପାଇବା ନିମନ୍ତେ ।
ମୃତ୍ୟୁ ସଞ୍ଜୀବନୀ ବିଦ୍ୟା ଦେବି ଆହେ ହରି
ଗର୍ଭଶିଶୁ ନଷ୍ଟେ ଯାଇ ଆସିବ ସେ ଫେରି ।
ସେ ପରମ ମାହେଶ୍ୱରୀ କହି ଦିବ୍ୟ ବାଣୀ
ପାଣ୍ଡବଙ୍କୁ ସମର୍ପିଲା ନିଅ ଚକ୍ରପାଣି ।
ହେ ପ୍ରଭୁ ଲଗିଲ ତୋତେ ମୋହର କୁମର
କି ହଁ କପଟରେ ପୂର୍ଣ୍ଣ ଅଟେ ତୋ ଶରୀର ।

ଦ୍ରୌପଦୀ କରିଲେ ଶୋକ ପୁତ୍ରଙ୍କ ନିମନ୍ତେ
ବୋଇଲେ ବିଷମକଥା ବୋଇଲ ଗୋ ମୋତେ
କି ଦୋଷ କଲେ ମୋହର ସେହି ପାଞ୍ଚସୁତ
କହନ୍ତୁ ସୁଦେଷ୍ଣା ଦେବୀ ଶୁଣ ଆଗୋ ମାତ ।
ସତ୍ୟଯୁଗେ ବିଶ୍ୱାମିତ୍ର ବ୍ରହ୍ମାଙ୍କର ବାଦୀ
ବଶିଷ୍ଠଙ୍କ ଛଳେ ନୂଆ ସୃଷ୍ଟି ସେ ସମ୍ପାଦି ।
ବିଦ୍ୟାଧର ପୁରୁଷ ସେ ପଳାଇଲେ ଡରେ
ଶରଣ ପଶିଲେ ହରିଶ୍ଚନ୍ଦ୍ର ରାଜାଠାରେ ।
ବିଶ୍ୱାମିତ୍ର ମୁନି କରି ବେଦ ଅଧ୍ୟୟନ
ରାଜାଙ୍କ ସମ୍ପଦ କୁଟି ନେଲେ ମହାଦାନ ।
ହରିଶ୍ଚନ୍ଦ୍ର ମହାରାଣୀ ପୁତ୍ର ରୋହିତାକ୍ଷ
ରାଜ୍ୟରୁ ତିନିଙ୍କି ତଡ଼ିଦେଲେ ମୁନିଦକ୍ଷ ।
ପାଦେ ଚଳାଇଣ ଦେବିଯାନ୍ତେ ତିନି ପ୍ରାଣୀ
ଚାଲି ନ ପାରି କାନ୍ଦିଲା ସେ କୁମରମଣି ।
ପାଦେ ରୁଧିର ଫୁଟନ୍ତେ ନ ପାରିଲା ଚାଲି
ମାତାଗୋ ମାତାଗୋ ବୋଲି ଛାଡ଼ିଲା ବୋବାଳି
ଚାଲୁନୁ କି ନାହିଁ ବୋଲି ମୁନି ଅତି ରାଗେ
ରୋହିତାକ୍ଷକୁ ପ୍ରହାର କରିଲେ ସେ ତାଙ୍ଗେ ।
କୁମର କାନ୍ଧ ଉପରେ ପଡ଼ିଲା ସେ ଯଷ୍ଟି
ଭୂମିରେ କୁମରମଣି ପଡ଼ିଗଲା ଲୋଟି ।
ପାଞ୍ଚ ବିଶ୍ୱଦେବା ସ୍ୱର୍ଗେ ତା ଥାଇ ଦେଖିଲେ
ବାଳକ ବିକଳେ ବିଶ୍ୱାମିତ୍ରେ ଗାଳିଦେଲେ ।
ଆରେ ବିଶ୍ୱାମିତ୍ର ତୁହି ଅଟୁ ଏଡ଼େ ମନ୍ଦ
ବାଳକକୁ ଚନ୍ତଲୁ ତୁ କିଆଁ ପରମାଦ ।
ରାଜ୍ୟ ରାଜସିଂହାସନ ନେଲୁ ତୁ ବଳେ
ଏଡ଼େବଡ଼ ସମ୍ପଦକୁ ନାଶକଲୁ ହେଳେ ।
କ୍ଷତ୍ରିୟ ହୋଇଣ ତୁହି ହେଲୁ ମହାତପୀ
ଲୋଭ ଆଚରଣେ ଧର୍ମ ନାଶୁଛୁ ତଥାପି ।
ବିଶ୍ୱଦେବାଙ୍କର ସେହି କଟୁ ବାଣୀ ଶୁଣି
ଊର୍ଦ୍ଧ୍ୱମୁଖେ ବିଶ୍ୱାମିତ୍ର ରୁହେଁ ଶିର ଝୁଣି ।
ରକତ କୁମୁଦ ପ୍ରାୟ କରି ଦେନି ଆଖି
ରାଗଭରେ ଶାପଦେଲା ଉପ୍ରୋଧ ଉପେକ୍ଷି ।
ରେ ପାପିଷ୍ଟେ ନରଗର୍ଭେ ହୁଅ ଯାଇ ଜନ୍ମ
ମୋର କଥାକୁ ତୁମ୍ଭେରେ ବାହୁଅଛ ପୁଣ ।
ଅଶ୍ୱତ୍ଥାମା ହସ୍ତେ ହେବ ତୁମ୍ଭ ପରମାଦ
ସାତ ସାତ ବର୍ଷେ ହେଉ ତୁମ୍ଭ ଶିରଚ୍ଛେଦ ।

ସୁଦେଷ୍ଣା ବୋଇଲେ ମାଗୋ ଶୁଣିଲୁ ପାଞ୍ଚାଳି
ପାଣ୍ଡୁପୁତ୍ରଙ୍କର ପାଇଁ କପାଁ ହେଉ ଘାଳି ।
ଯାହାକୁ ଜନେ ଅର୍ଜିବ ତାକୁ କର୍ମ ବୋଲି
ତୁ କପାଁ ଅଜ୍ଞାନ ହେଉ ସ୍ୱରୂପ ବୋଇଲି ।
ସୁଦେଷ୍ଣା ବାକ୍ୟେ ଘୁଡ଼ିଲେ ଦେବୀ ଶୋକବାଣୀ
ତହୁଁ କୋଳେ ବସାଇଲେ ତାଙ୍କୁ ଗୋସାମଣୀ
ବୋଇଲେ ଆଦ୍ୟରେ ତୁହି କେତୁକା ହିଙ୍ଗୁଳା
ଦ୍ୱିତୀୟେ ବୋଲୁ ପାର୍ବତୀ ନାମେ ଏକବଳା
ତୃତୀୟେ ଅବତାରେ ତୁ ହେଲୁ ଦେବୀ ଶଚୀ
ଇନ୍ଦ୍ର ବହନେ ରଖିଲେ ତୋତେ ବଧିନୁତି ।
ଚତୁର୍ଥ ଅବତାରରେ ଅଗ୍ନିରୁ ତୁ ଜାତ
ଜନ୍ମେ ଜନ୍ମେ ତୋର ମୋର ପ୍ରିୟଭାବ ମାତ
ବଚନରେ ସମାର୍ଜିଣ ସବୁଙ୍କୁ ପ୍ରବୋଧି
ସେ ପରମ ମାହେଶ୍ୱରୀ କହି ସବୁ ବୃଦ୍ଧି ।
ତହୁଁ ଶୁଣ ସୁଜ୍ଞଜନେ ହୋଇ ସାବଧାନ
ଶାରଳା କହଇ ପଦ ଅମୃତ ସମାନ ।

---

## କବଚ କୁଣ୍ଡଳ ନିମନ୍ତେ ବ୍ରାହ୍ମଣ ବେଶରେ ଇନ୍ଦ୍ରଙ୍କର କର୍ଣ୍ଣିକୁ ଛଳନ ଓ ବରଦାନ ଏବଂ ସୁଦେଷ୍ଣାଙ୍କ ସ୍ୱର୍ଗ ଗମନ

କୃଷ୍ଣଙ୍କୁ ପୁଚ୍ଛିଲେ ପୁଣ ସେ ବସିଷ୍ଠ ନାତି ।
ଭାରତ ଯୁଦ୍ଧକୁ କେବେ କରିବ ହେ ହରି ।
କର୍ଣ୍ଣ ମଇତ୍ର ହୋଇଛି ଦୁର୍ଯ୍ୟୋଧନ ସଙ୍ଗେ
ଅଭେଦ କବଚ ବଜ୍ର ଛନ୍ଦିଛି ତା ଅଙ୍ଗେ ।
ପୁଣି ଅମୃତ କୁଣ୍ଡଳ ଅଛଇ ତାହାର
କିଏ ତାକୁ ଜିଣିବ ହେ କରିଣ ସମର ।
କର୍ଣ୍ଣିକୁ ଆପଣା ପାଶେ ଅଣାଇ ଭୂରିତ
ସବୁ ତାହା ନିକଟରୁ ନିଅ ଜଗନ୍ନାଥ ।
ଏଥିକୁ ଉପାୟ କର ଆହେ ଚକ୍ରପାଣି
ଏ ସବୁ କର୍ଣ୍ଣଠ ଥିଲେ ନ ପାରିବ ଜିଣି ।
ଏମନ୍ତ ଶୁଣି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଚାହିଁ
ବୋଇଲେ କର୍ଣ୍ଣ ନିକଟେ କେ ଆଣିବ ଯାଇଁ
ଅର୍ଜୁନ ବୋଇଲେ ଦେବ ମୋର ଅଛି ବୁଦ୍ଧି
ନିବାତକବଚ ଯେବେ ସ୍ୱର୍ଗେ ଥିଲି ବଧି ।
ଇନ୍ଦ୍ର ବୋଇଲେ ରେ ପୁତ୍ର ମାଗି ନେନ ବର
ମୁଁ ବୋଇଲି ଆହେ ପିତା ଆଗେ ସତ୍ୟକର

ମୋହର ବଚନେ ସତ୍ୟକଲେ ପୁରନ୍ଦର
ବୋଇଲେ ଯାହା ମାଗିବୁ ଦେବି ମୁଁ ନିକର ।
ପିତାର ବଚନ ଶୁଣି ପାଦେ କଲି ସେବା
ଅଭେଦ କବଚ ନେଲି କର୍ଣ୍ଣ ତହୁଁ ଦେବା ।
ତୋଷେ ପ୍ରସନ୍ନେ ବୋଇଲେ ମୋତେ ଆଖଣ୍ଡଳ
ମୁଁ ମରିବୁ ତୋହରରେ କାର୍ଯ୍ୟ ଯେତେବେଳ
ତହୁଁ ଶୌଚ ହୋଇ ଶାନ୍ତନୁର ପଣନାତି
ପଦେ ଜଳ ତିଳ ଦେଇ ସ୍ମରେ ସୁରପତି ।
ଅମରପୁରକୁ ତ୍ୟାଗ କରିଣ ମଘବା
ପୁଣ୍ୟ ଆସନେ ବିଜୟ କଲେ ସୁରଦେବା ।
ବାସବର ଚରଣରେ ଅର୍ଜୁନ ପ୍ରଣମି
ଅଙ୍ଗଦେଶ କର୍ଣ୍ଣ ପାଶେ ଯିବ ଦେବ ସ୍ୱାମି ।
ଅଭେଦ କବଚ ଆଉ ଅମୃତ କୁଣ୍ଡଳ
ଗୋପନେ ବଜ୍ର ଛଡ଼ାଇ ଆଣ ଆଖଣ୍ଡଳ ।
ପୁଣି ପୁଣି ବାସବଙ୍କୁ ହୋଇ ପରଣାମି
ବୋଇଲେ ଅର୍ଜୁନ ବେଗେ ଆଣିଦିଅ ସ୍ୱାମି ।
ଅର୍ଜୁନ ବଚନ ଶୁଣି ଦେବ ପୁରୁହୂତ
କର୍ଣ୍ଣ ସମୀପରେ ଯାଇଁ ମିଳିଲେ ଭୂରିତ ।
ଶତେକ ଭାର ସୁବର୍ଣ୍ଣ ଯେତ୍ସୁ ଦାନ ଦେଇ
ଏକବସ୍ତ୍ର ନାରାୟଣ ଲକ୍ଷ୍ୟ ସେ କରଇ ।
ବ୍ରାହ୍ମଣର ବେଶ ଧରି ପ୍ରଜାପତି ନାତି
ଲମ୍ବିତ ଜୁଡ଼ା ଝିକଛ କାଖେ ବେଦପୋଥି ।
ଶ୍ରୀବତ୍ସଲାଞ୍ଛନ ଶବ୍ଦ ତମ୍ବା କର୍ଣ୍ଣ କାୟେ
ବେନି ଲୋଚନ ବୁଲଇ ଚନ୍ଦ୍ରୀ ଚନ୍ଦ୍ର ପ୍ରାୟେ ।
ଋକ ଯଜୁ ସାମବେଦ ଅଥର୍ବାଦି ଗୃହ
ପୁଣି ଜ୍ୟୋତି ସୁଷୁମ୍ନା ଧରୁ ଆଦିକରି ।
ଅବନା ଅଜପା ଯୋଗ ଧ୍ୟାନବେବ ଭଳି
ଏକମୁଖେ ଏକାଦଶ ବେଦ କରେ ଧ୍ୱନି ।
ବାସବ ଦେବତାଙ୍କର ବେଦପାଠ ନାଦେ
ସସାଗରା ପୃଥ୍ୱୀ କମ୍ପି ଉଠେ ସେ ଶବଦେ ।
ଆଶ୍ଚର୍ଯ୍ୟ ହୋଇଲା କର୍ଣ୍ଣ ବେଦଧ୍ୱନି ଶୁଣି
ତହୁଁ ପାଶେ ବିଜେ କଲା କ୍ଷତ୍ରୀ ଚୂଡ଼ାମଣି ।
ନିର୍ଧୂମ ଅଗ୍ନି ପରାୟେ ବ୍ରାହ୍ମଣର କାନ୍ତି
ଦେଖି କର୍ଣ୍ଣର ଲାଗିଲା ମନେ ବଡ଼ ଭ୍ରାନ୍ତି ।
ଦୂରେ ଥାଇ କର୍ଣ୍ଣ ତାଙ୍କୁ ହେଲା ପରଣାମି
ବୋଲେ ବ୍ରହ୍ମା ବିଷ୍ଣୁ କିବା ମହେଶ୍ୱର ସ୍ୱାମୀ

ଶତେଭାର ସୁବର୍ଣ୍ଣ ମୁଁ ଦାନ ଦେଏ ନିତ୍ୟେ
ଏଡ଼େ ସୁବେଶ ବ୍ରାହ୍ମଣ ଦେଖି ନାହିଁ ନେତ୍ରେ
ମୋହର ଅଭାଗ୍ୟ ତୋର ପ୍ରାପତ ଅଟେଳ
ଦ୍ୱାଦଶ ଭଣ୍ଡାରେ ମୁଦ ହେଲ ସକଳ ।
ଧର୍ମରେ କଷଣ ମୋର ଦେଲୁ ମହାତ୍ମା
ଦାନେ ଶୂରବନ୍ତ ନନ୍ଦା ଅଥର ଶୁଣିମା ।
ମୋ ପରାୟେ ଦାନୀ ଯେବେ ତୋତେ ଦାନଦେବ
ଏଡ଼େ ଦରିଦ୍ରତା ତୋର ଆଜି କି ରହିବ ।
ତଳହସ୍ତ କରି ବିପ୍ର ମାଗୁ ମୋତେ ଦାନ
ଆନବେଳେ ଅନ୍ୟଙ୍କୁ କି କରିବୁ ପ୍ରଦାନ ।
ଆଜକ ରହି ପଣ୍ଡା ହେ ଭୋଜନାଦି କର
କାଲ ପ୍ରଭାତରେ ତଉ ରଞ୍ଜିବ ତୋହର ।
ଶତେକ ଭାର ସୁବର୍ଣ୍ଣ ପୃଥ୍ୱୀ ଦେଏ ନିତ
ସେହି ଧନ ଦେଇ ତୋତେ କରିବି ତୃପତ ।
ଇନ୍ଦ୍ର ବୋଇଲେ ସେ ଧନ ବହୁଜନ ତ୍ରାସ
ହେ କର୍ଣ୍ଣ ସେ ଧନେ ମୋର ପ୍ରୟୋଜନ କିସ
କିବା ଭୂମିଦାନ ମାଗୁ ବୋଲେ ବୀରକର୍ଣ୍ଣ
କି ଦାନେ ଇଚ୍ଛା ତୋହର ବୋଲ ହେ ବହ୍ମନ
ଇନ୍ଦ୍ର ବୋଇଲେ ତହିଁରେ ମୋର କାର୍ଯ୍ୟନାହିଁ
କର୍ଣ୍ଣ ବୋଲେ କିସ ଇଚ୍ଛୁ କହନା ଗୋସାଇଁ
ମୋର ଭଣ୍ଡାରେ ଏକ୍ଷଣି ଧନ ନାହିଁ ବୋଲି
ବାରମ୍ବାର କଠାକ୍ଷୁ ତୁ ମନରେ ବୁଝିଲି ।
ପୁଣିହିଁ ବାସବ ତହୁଁ କଲେ ବେଦଧ୍ୱନି
ଆକାଶ କମ୍ପିଲ ଟଳମଳ ଯେ ମେଦିନୀ ।
ତହିଁ ମହାଭୟ ପାଇ ଉଠେ ବୀରକର୍ଣ୍ଣ
ସୁବର୍ଣ୍ଣର ପିଢ଼ା ନେଇ ଦେଲେକ ଆସନ ।
ତହୁଁ କରେ ଝରି ଧରି ଘାଧାଉ ପୁଲକ
ବେଗେ ପଖାଳେ ଦ୍ୱିଜର ଚରଣ କମଳ ।
ବସନ କୁଣ୍ଡଳ ଧୂପ ନୈବେଦ୍ୟ ଦେଇ
ଚନ୍ଦନ ଲେପନ କଲ ଶ୍ରୀଅଙ୍ଗରେ ନେଇ ।
ଲକ୍ଷେମାତ୍ର ସୁନା ନେଇ କଲ ପାଦ ପୂଜା
ପ୍ରଣିପାତ ହୋଇ ବୋଲେ କର୍ଣ୍ଣ ମହାରାଜା ।
ହେ ଦେବ ତୋ ବେଦ ଶୁଣି ନ ରହେ ମୋ ଜ୍ଞାନ
କେଉଁ ପଦାର୍ଥରେ ଇଚ୍ଛା କହ ତା ବହ୍ମନ ।
ଡାହାଣାବର୍ତ୍ତିକ ଶଙ୍ଖେ ପଦ ଜଳ ପାଣି
ସତ୍ୟବାକ୍ୟ କହି କର୍ଣ୍ଣ ହସ୍ତେ ଦେଲେ ଆଣି ।

ଉପର ହସ୍ତରେ କର୍ଣ୍ଣ ହେଉଅଛୁ ଦାନ
ତଳହସ୍ତରେ ଘେନନ୍ତି ଦେବ ମଘବାନ ।
ସତ୍ୟ ସତ୍ୟ ସତ୍ୟ ବାକ୍ୟ ବୋଲଇ ରାଧେୟ
ମନଇଚ୍ଛା ଦାନ ମୋତେ ମାଗ ବିପ୍ରରାୟୁ ।
ଇନ୍ଦ୍ର ବୋଇଲେ ହୋ ସର୍ବ ଦିଗପାଳେ ଶୁଣ
ତୁମ୍ଭେମାନେ ସାକ୍ଷୀ ହୁଅ କର୍ଣ୍ଣ ଦେଏ ଦାନ ।
ସୁରଦାଂଗ ଗୁରମେଘ ତୁମ୍ଭେ ଥାଅ ସାକ୍ଷୀ
ଉପର ହସ୍ତରେ କର୍ଣ୍ଣ ଦାନ ଦେଉଅଛୁ ।
କର୍ଣ୍ଣ ବୋଲେ କେତେ ସାକ୍ଷୀ କରୁ ଦ୍ୱିଜବର
କହୁଁ କହୁଁ ଉତ୍ତର ଯେ ହେଉଛୁ ତୁମ୍ଭର ।
ନଅ ନଅ ବ୍ରାହ୍ମଣ ହେ ନଅ ନଅ ଜଳ
ତଳହସ୍ତ କରି ନେଲେ ତାହା ଆଖଣ୍ଡଳ ।
ଜଳ ପଡ଼ନ୍ତେ ବାସବ ବୋଇଲେକ ବାବୁ
କୁଣ୍ଡଳ କବଚ ବଜ୍ର ଛଉଣୀ ତୋ ଦେବୁ ।
ବାସବ ମୁଖୁଁ ଏସନ ବଚନକୁ ଶୁଣି
ହସି ହସୁ ଜଳ ଛାଡ଼େ ଦାନୀ ଚୂଡ଼ାମଣି ।
କର୍ଣ୍ଣ ବୋଇଲେ ହେ ତାତ ଧର୍ମ କଲୁ ନାଶ
ପୁଣ୍ୟବନ୍ତ ପ୍ରାଣୀଙ୍କୁଁ ଯେ ପଡ଼ଇ ହିଂସାସ ।
ଏକ ପୁତ୍ରକୁ ମାଇଲୁ ଆନ ପୁତ୍ରେ ରଖି
ଏଥିପାଇଁ ଦିଗପାଳ କରୁଥିଲୁ ସାକ୍ଷୀ ।
ଏକ ଅର୍ଜ୍ଜୁନ କି ତବ ପୁତ୍ର ସୁରନାଥ
ଧର୍ମ ଆଗୁରେ ତୋ ତହୁଁ ଅଧିକ ମୁଁ ସୁତ ।
କର୍ଣ୍ଣର ବଚନେ ଇନ୍ଦ୍ର ଦେବତା ସନ୍ତୋଷ
ଦାନେଶ୍ୱର ଅଟୁ ମୋର ତୁହି ଏକା ଶିଷ୍ୟ ।
ଇନ୍ଦ୍ର ବୋଇଲେ ତୁ ସତ୍ୟ କରିଅଛୁ ବାବୁ
ତୋହର ଇଚ୍ଛାରେ ଏବେ ଦେବୁ କି ନ ଦେବୁ
ଇନ୍ଦ୍ରର ବଚନ ଶୁଣି ହସି ବୀରକର୍ଣ୍ଣ
ବୋଲେ ବାବୁ ବିଫଳତେ ବିଅର୍ଥ ଜୀବନ ।
ମୁଁ ତୁମ୍ଭଙ୍କୁ ଦାନ ଦେବି ନଷ୍ଟେ ତୁମ୍ଭେ ନେବ
ତେବେ ସିନା ଧର୍ମ ମୋର ଉଦିତ ହୋଇବ ।
ଶତେ ଭାର ସୁବର୍ଣ୍ଣ ମୁଁ ନିତ ଦେଏ ଦାନ
ଭୂମି ଦାନ ଗଜଦାନ ଅଶ୍ୱ ଗୋରୁ ଦାନ ।
ପଚାଶେଇ ବର୍ଷ ହେଲ ହେଲି ମହାଦାନୀ
ଯେ ଯାହା ମାଗଇ ତାହା ଦେଏ ସତ୍ୟ ମାନି
ତୁମ୍ଭଙ୍କୁ ତୋଷିଣ ଯେବେ ଦାନ ପାରେ ଦେଇ
ସତ୍ୟବାଦୀପଣ ମୋର ଥିବ ଚିର ହୋଇ ।

ଇଷ୍ଟ ଶତେଜଣ ଏକ ମଇନର ସର
ଶତମୈନ ବୁଭୁକ୍ଷିତେ ଏକ ଦ୍ୱିଜ କର ।
ଶତ ଦ୍ୱିଜସମ ଏକ ସନ୍ନ୍ୟାସୀ ଭୋଜନେ
ଶତ ସନ୍ନ୍ୟାସୀର ସମ ଶିବ ଆରାଧନେ ।
ପାଞ୍ଚଲକ୍ଷ ଦାନ ଏକଧେନୁ ଦାନ ସର
ଅନ୍ନଦାନ ବସ୍ତ୍ରଦାନ ତାମ୍ର ଆଦିକର ।
ଭୁମ୍ଭଙ୍କୁ ଯଦ୍ୟପି ମୁହିଁ ପାରେ ତୋଷକର
ତେବେ ସକଳପ ସତ୍ୟ ରହିବ ମୋହର ।
ଆବର ଦାନେ ମୋହର କସ ପ୍ରୟୋଜନ
ଅନେକ ପୁଣ୍ୟ ଅର୍ଜିଲି ଦେବ ତୋତେ ଦାନ
ଏହା କହି ହକାରିଲେ ସୁରେଶ୍ୱର ମନ୍ତ୍ରୀ
ପୁଣି ବୃଷକେତନକୁ ଡକାଇଲା କତ ।
ସ୍ନାନ ସାରି କର୍ଣ୍ଣ ବସେ କୃଷ୍ଣାଜିନ ପରେ
ପୂର୍ବ ମୁଖରେ ବସଇ ମନ ହରଷରେ ।
ବେନ କର୍ଣ୍ଣରୁ କାଢ଼ିଲା ଅମୃତ କୁଣ୍ଡଳ
ତଳ ହସ୍ତରେ ଘେନିଲେ ଦେବ ଆଖଣ୍ଡଳ ।
ବୃଷକେତନକୁ ପୁଣି ବୋଇଲା ଉଆର
ଅଭେଦ୍ୟ କବଚ କାଢ଼ ତ୍ୱଚାକୁ ବିଦାରି ।
ଦକ୍ଷ କରେ ଧରି କର୍ଣ୍ଣପୁତ୍ର ସେ କଟାରି
କର୍ଣ୍ଣର ତ୍ୱଚାକୁ ଦୁଇଫାଳ କରି ତାରି ।
ତ୍ୱଚା ବିଦାରି କାଢ଼ିଲା ସେ ଅଭେଦ୍ୟ ମଣି
ପ୍ରକାଶେ ତେଜ ସହସ୍ର କିରଣକୁ ଜିଣି ।
ଯେଣୁ ମଣିର ପ୍ରସାଦେ ନ ଭେଦଇ ଶର
ତେଣୁ ଅଭେଦ୍ୟ କବଚ ନାମ ଅଟେ ତାର ।
ତାକୁ ବିଦାରନ୍ତେ ବହେ ବହୁତ ଶୋଣିତ
ସାଧୁ ସାଧୁ କର୍ଣ୍ଣ ବୋଲି ବୋଲେ ବଜ୍ରହସ୍ତ ।
ଉପରି ହସ୍ତରେ ତୋଳି ଦଅଇ ରାଧେୟ
ତଳହସ୍ତରେ ଘେନନ୍ତି ଦେବ ସୁରରାୟ ।
ପୁଣି କର୍ଣ୍ଣ ବୋଲେ ବାବୁ ମୋ ଅଙ୍ଗ ବିଦାରି
ଦେହରୁ କାଢ଼ ମୋହର ବଜ୍ର ସେ ଛତିଶ ।
ବେଗେ କାଢ଼ିଦିଅ ପିତା ହେଉନ୍ତୁ ତୃପତ
ପୁତ୍ରକୁ ଉଆର କରି କହେ ମହାରଥୀ ।
ତହୁଁ କୁମର କରରେ ଘେନି କରବାଳ
ଦେହ ତାର ବଜ୍ରଛୌଶି କାଢ଼େ ତତକାଳ
ବୃଷକେତନ ଯେ ସୁରସେନ ପୁତ୍ର ବେନି
ଉନ୍ତୁଡ଼ି କାଢ଼ନ୍ତି ସେହୁ କରେ କାଟି ଘେନି ।

ମସ୍ତକ କପାଳ ଗଣ୍ଡସ୍ଥଳ ଆଉ ନାସା
ଛଉଣି କାଢ଼ନ୍ତେ କର୍ଣ୍ଣ ନ ଦିଏ ସମସ୍ୟା ।
ଓଠାରି କାଢ଼ନ୍ତେ ଅଙ୍ଗୁ ବହିଲା ଶୋଣିତ
ଓଷ୍ଠ କଣ୍ଠ ତ୍ୱଚାକୁ ତରନ୍ତି ଭରତ ।
କଟାରି ଗଳାଇ ସେହି ହୃଦ ବିଦାରିଲେ
ସାଧୁ ସାଧୁ କର୍ଣ୍ଣ ବୋଲି ବୃନ୍ଦାରକେ ବୋଇଲେ
ଉନ୍ତୁଡ଼ନ୍ତି ବେନପୁତ୍ରେ ବାଁ ଡାହାଣ ବେଗି
ବୃଷକେତନ ଛଡ଼ାଏ ଅତି ବେଗି ବେଗି ।
ବେନି ବାହାର ମଧ୍ୟରେ ଗଳାନ୍ତେ କଟାରି
ଧୀରକରି ଛଡ଼ା ବୋଲି ବୋଲେ କର୍ଣ୍ଣବଳୀ
ଭୁଜ ଅଙ୍ଗୁଷ୍ଠିର ସନ୍ଧି ସମସ୍ତ ଉନ୍ତୁଡ଼ି
କାଢ଼ନ୍ତେ ସେ କର୍ଣ୍ଣଶରୀର ଅସାଷ୍ଟମେ ପଡ଼ି ।
ପୁଣି ଛଡ଼ାବନ୍ତେ ବେନି ଜାନୁ ଆଉ କୁକ୍ଷି
ବାସବ ବାକ୍ୟ ନଷ୍ଟରେ ଏ ସକଳ ଦେଖି
ପଦ୍ମପତ୍ରର ଉପରେ କର୍ଣ୍ଣଦେହ ଲୋଟି
ବଳେ କର୍ଣ୍ଣ କଟାରିରେ ବିଦାରନ୍ତେ ପିଠି ।
ଛାଗଳ ଚର୍ମ ଛଡ଼ାନ୍ତି ଯେହ୍ନେ ମାଂସଜାତ
ତେସନ କର୍ଣ୍ଣ ଶରୀର ହୋଇଲା ବିକୃତ ।
ରୁଧିର ଝପଣ୍ଡ ହୋଇ ବିଦାରିଲା ଭୂମି
ସାଧୁ ସାଧୁ ଡାକିଲେ ପୁରନ୍ଦର ସ୍ୱାମୀ ।
କର୍ଣ୍ଣର ଭାରିଯା ନାମ ଅଟେ ସତ୍ୟବତୀ
ରୋଦନ କରେ ସୁନ୍ଦରୀ ବସିଣ ତା କତି ।
ପିଠି ଛଡ଼ାଇଣ କାଟି ମେଖଳାକୁ ମେଳି
ଉନ୍ତୁଡ଼ି କାଢ଼ନ୍ତେ କର୍ଣ୍ଣ ରାମ ରାମ ବୋଲି ।
ସ୍ମରଣା କରେ ମନେ ମନେ ଚଉବାହା
ବୋଲେ ଏ ସଙ୍କଟେ ନାଥ ମୋତେ ହୁଅ ସାହା ।
ଶୁଣ ଶୁଣ ଜଗନ୍ନାଥ କଷା ଜଗଜ୍ଜେଠୀ
ମୋର ହୃଦପଦ୍ମେ ଘୋଷ ରାମନାମ ଗୋଟି ।
ପ୍ରସନ୍ନ ପରମ ବନ୍ଧୁ ସେ ତ୍ରୈଲୋକ୍ୟ ନାଥ
ଜାନକୀବଲ୍ଲଭ ଦେବ ଅନାଦି ଅଚ୍ୟୁତ ।
ବୃଷକେତନ ବୋଲଇ ରାମନାମ ବୋଲ
ଜୀବନ୍ତେ ମରନ୍ତେ ସେହି ନାମ ଏକା ଭଲ ।
ସର୍ବ ସମ୍ପଦ ଦିଅନ୍ତି ସର୍ବ ବିଘ୍ନ ଧ୍ୱଂସି
ଜୀବ ସାର୍ଥକ ହୁଅନ୍ତି ଘୋଷି ଅହର୍ନିଶି ।
ଦନୁଜ ବିନାଶି ରକ୍ଷି ଯାଗକୁ ସେ ମନ୍ତ୍ରି
ପିତା ସତ୍ୟପାଳି ପୃଥ୍ୱୀ [illegible] ।

ଜାତ ଅନ୍ତଃକାଳେ ଏକା ରାମନାମ ଯାହା
ଯୋଗୀଜନେ ହୃଦେ ସଦା ଚିନ୍ତୁଥାନ୍ତି ଯାହା ।
ଯମରାଜା ଅଳପକେ ହୁଏ ପରାଜିତ
ଶ୍ରୀ ରାମନାମକୁ ପିତା ଧର ହୃଦଗତ ।
ନିୟମ ନିତ୍ୟକର୍ମାଦି ଯାଗ ତପ ମନ୍ତ୍ର
ବେଦ ପୁରାଣ କେବଳ ରାମ ବ୍ରହ୍ମ ତନ୍ତ୍ର ।
ଯାହା ସୁମରନ୍ତେ ବସି କାଳ କାମ ନିଦ୍ରା
ଆସନ ମାର୍ଜ୍ଜନ କର ରାମନାମ ମୁଦ୍ରା ।
ଯାବତ ଅଛନ୍ତି ଚନ୍ଦ୍ର ଦିବାକର ଆଦି
ଯେ ନାମ ଜପନ୍ତି ଶିବ ବ୍ରହ୍ମା ବିବୁଧାଦି ।
ଅବସାନ କାଳକୁ ଯେ ଯମପାଶ ଛେଦି
ଅରିଷ୍ଟ ଆପଦମାନ ଖଣ୍ଡେ ନିରବଧି ।
ସବୁବେଳେ ସୁମରିବ ଯେବେ ତାଙ୍କୁ ହୃଦେ
ଯମଦଣ୍ଡୁ ଉଦ୍ଧରିବେ ରାମଚନ୍ଦ୍ର ହାଦେ ।
କୁମାର କହନ୍ତେ କର୍ଣ୍ଣ ଚିନ୍ତେ ହୃଦଗତେ
ଶ୍ରୀରାମ ଶ୍ରୀରାମ ବୋଲି ରଟେ ଗର୍ଭଗତେ ।
ରାଜୀବ ଲୋଚନ ପୀତବସ୍ତ୍ର ଅଙ୍ଗେ ଶୋଭି
ଦୁର୍ବାଦଳ ଶ୍ୟାମଳ ତୋ ମନୋହର ଆଭି ।
କଉଶଲ୍ୟାର ନନ୍ଦନ ସୀତା ପ୍ରାଣନାଥ
ଦୁଷ୍ଟ ରାବଣ ନାଶିଲୁ ଯେନଣ ଭକତ ।
ଦୟାସାଗରର ନାଥ ସଙ୍କଟୁ ଉଦ୍ଧରୁ
ଶାରଳା ଦାସକୁ ରଖ ବିପଦ ସାଗରୁ ।
ଶୁଣ ଚଇତନ ଏବେ କର୍ଣ୍ଣର ମହିମା
ଏଡ଼େ ଅସମ୍ଭବ କଥା କରିଲି ମହାତ୍ମା ।
ଶିରରୁ ଚରଣଯାଏ ଘୁଡ଼ଇ ଛଉରୀ
ପାଦତଳ ସନ୍ଧିତରେ କାଢ଼ିଲେ ବିଦାରି ।
ଘୁଲ ଉଝୁଡ଼ନ୍ତେ ଯେହ୍ନେ ଦିଶଇ ବିକୃତ
ତେସନେ ଦିଶେ ରକ୍ତରେ ଶରୀର ଆପ୍ଲୁତ ।
କୋମଳ ପଦ୍ମ ପତ୍ରରେ କର୍ଣ୍ଣ ଅଛି ଶୋଇ
ଜଳବୃଷ୍ଟି ପ୍ରାୟେ ରକ୍ତ ଶରୀରୁ ବହଇ ।
ଗତ ଆତ୍ମା ପ୍ରାୟେ କର୍ଣ୍ଣ କରଅଛି ଦୃଷ୍ଟି
ବୋଇଲି ସେ ନିଅ ପିତା ପୁରୁ ତୋ ଅଭୀଷ୍ଟି
ତୁମ୍ଭଙ୍କୁ ଦାନ ଦେବାର ଯେଉଁଫଳ ପ୍ରାପ୍ତି
ସେ ସମସ୍ତ ଧର୍ମ ମୋତେ ହେଉ ପରାପତି ।
ମନୋବାଞ୍ଛା ପୂର୍ଣ୍ଣ ହେଉ ବୋଇଲା ମଘବା
ଅକ୍ଷୟ ଧର୍ମ ପ୍ରାପତ ତୋର ହେଉ ବାବା ।

ବାବୁ ମାୟା ସଂସାର ଏ କାହାର ନୁହଇ
କବଚଦାମ୍ଭ କର୍ଣ୍ଣ ତୁ ଘୋଷିଲୁ ଏ ମହୀ ।
ଦାନେଶ୍ୱର କର୍ଣ୍ଣ ବୋଲି କଷା ଜଗନ୍ତେଠି
ତ୍ରୈଲୋକ୍ୟରେ ପ୍ରକାଶିଲୁ ତୋର ନାମଗୋଟି
ତଳ ହସ୍ତରେ ଘେନିଲେ ଦେବ ଆଖଣ୍ଡଳ
ଉପର ହସ୍ତରେ ଦେଲା କର୍ଣ୍ଣ ମହାବଳ ।
କବଚ କୁଣ୍ଡଳ ବଜ୍ର ଛଉରୀ ଏ ତିନି
ଏ ସମସ୍ତ ଦେଲା କର୍ଣ୍ଣ ସତ୍ୟବାକ୍ୟ ଭଣି ।
ପିତାଙ୍କ ଚରଣେ କର୍ଣ୍ଣ ହୋଇ ପରଣାମି
ବୋଇଲା ତୃପ୍ତ ଏବେ କି ହେଲ ଦେବସ୍ୱାମୀ
ବାସବ କରନ୍ତେ ଚିନ୍ତା ସାରଥି ମାତଳି
ପୁଷ୍ପକ ଯାନ ଯେ ଘେନି ଇନ୍ଦ୍ର ପାଶେ ମିଳି ।
ଇନ୍ଦ୍ର ସେ ସମସ୍ତ ଯହୁଁ ଘେନିଲେ ପୁଲକେ
ସାଧୁ ସାଧୁ କର୍ଣ୍ଣ ବୋଲି ଶୁଭିଲା ତ୍ରୈଲୋକ୍ୟ
କବଚ ବଜ୍ର ଛଉରୀ ଅମୃତ କୁଣ୍ଡଳ
ଘେନି ପୁଷ୍ପକେ ବିଜୟ କଲେ ଆଖଣ୍ଡଳ ।
ସ୍ମରନ୍ତେ ପବନ ବେଗେ ଚଳିଲା ଯେଉଁ ରଥ
ମହାଦାନ ଘରରେ ସେ ହେଲା ଭୂମିଗତ ।
ମାତଳିକି ଗୃହୁଁ ଆଜ୍ଞା ହେଲେ ସୁରନାହା
ଅମର ପୁରକୁ ଯିବା ବେଗେ ରଥବାହା ।
ମାତଳି ବୋଇଲା ତହୁଁ ଶୁଣ ଜମ୍ଭଭେଦି
ମହାଦାନ ଘରେ ରଥ ଆକାଶେ ନ ଭେଦି
ଏ ମହା ଦାନ ଘେନିଲ ଆହେ ଦେବ ସ୍ୱାମୀ
ତାହାର ଘରରେ ରଥ ଆକାଶେ ନ ଗମି ।
ତାହା ଶୁଣିଣ ଆଶ୍ଚର୍ଯ୍ୟ ହେଲେ ଦେବରାଜ
ବୋଇଲେ ଦ୍ୱିଧି କେମନ୍ତେ ହୋଇବ ମୋ କାର୍ଯ୍ୟ
ମାତଳି ବୋଇଲା ଅତି ଦାନ ମହାଭରା
ପ୍ରତିଗ୍ରହରେ ଖଣ୍ଡନ ହୋଇଯିବ ପରା ।
ତାହା ଶୁଣି ପୁରନ୍ଦର ରଥରେ ନ ବସି
ରଥୁ ଓହ୍ଲାଇ କର୍ଣ୍ଣର ଶରୀର ଆଶ୍ୱାସି ।
ଇନ୍ଦ୍ର ଦେବଙ୍କର ଯହୁଁ ଲଗେ କରତଳ
କର୍ଣ୍ଣର ଶରୀରେ ଜାତ ହେଲା ରୋମାବଳ ।
ଇନ୍ଦ୍ର ଆଉଁଶିଲେ ଯହୁଁ କର୍ଣ୍ଣଶରୀର କାୟେ
ଶରୀର ତା ବିକାଶିଲ ରଙ୍ଗବର୍ଣ୍ଣ ପ୍ରାୟେ ।
ପୁଣି ଆପଣ ଦେହରୁ ଦେଲେ ଜ୍ୟୋତିମଣି
କର୍ଣ୍ଣକୁ ସେ ଆଶ୍ୱାସନା କଲେ ବଜ୍ରପାଣି ।

ବାବୁ ଷୋଡ଼ଶ ସୁନ୍ଦର ପୁତ୍ର ମୋର ତୁ ଯେ
ଅମର ପୁରକୁ ଏବେ କରିବ ମୁଁ ବଜେ ।
କର୍ଣ୍ଣ ବୋଇଲା ହେ ପିତା ବେଗେ ଚଳଯାଅ
ନୋହିଲେ ଆଉ କି ପାଅ ମୋର ଆଗେ କହ
ଇନ୍ଦ୍ର ବୋଇଲେ ବାବୁରେ ଦାନବୀର ଯାଇ
ବୃନ୍ଦାର୍କ ମେଳକୁ ମୁହିଁ ନ ପାରଇ ଯାଇ ।
ତୁହିରେ ନନ୍ଦନ ମୋର ଶୁଦ୍ଧ ଯେବେ ଇଚ୍ଛି
ପ୍ରତିଗ୍ରହ ମାଗ ମୋତେ ଯାହା ମନେ ଇଚ୍ଛି ।
କର୍ଣ୍ଣ ବୋଇଲା ହେ ପିତା ନୁହଇ ଯୁକତ
ପିତାଠାରୁ ପୁତ୍ରଦାନ ନେବଇ କେମନ୍ତ ।
ତା ଶୁଣି ଇନ୍ଦ୍ର ବୋଇଲେ ମୋର ସତ୍ୟ ସତ୍ୟ
ଯା ମାଗିବୁ ନିଶ୍ଚେ ଦେବି ଏ କଥା ନିୟତ ।
ତଳହସ୍ତ କରି ମାଗେ କର୍ଣ୍ଣ ମହାବୀର
ଊର୍ଦ୍ଧ୍ୱ ହସ୍ତେ ଦାନ ଦ୍ୟନ୍ତି ଦେବ ସୁନାସୀର ।
ଶଙ୍ଖେ ଜଳ ତଳ ଯେବେ ଦେଉଁ କର୍ଣ୍ଣ ହାତେ
କର୍ଣ୍ଣ ବୋଲେ ସ୍ୱର୍ଗପୁର ଛାଡ଼ିଦିଅ ମୋତେ ।
ତାହା ଶୁଣି ମଘବାନ ହେଲେ ସ୍ତମ୍ଭୀଭୂତ
ବୋଇଲେ ମୁଁ ସ୍ୱର୍ଗ ଦେଇ ନ ପାରଇ ସତ୍ୟ
ତାହା ଛାଡ଼ି ଆଉ କିଛି ମାଗ ଆରେ ବାଳ
କର୍ଣ୍ଣ ବୋଲେ ତୁମ୍ଭ ସତ୍ୟ ହୋଇଲା ନିଷ୍ଫଳ ।
ପୁଣିହିଁ ଇନ୍ଦ୍ର ବୋଇଲେ ଅନ୍ୟ ମୋତେ ମାଗ
କର୍ଣ୍ଣ ବୋଲେ ଦିଅ ପିତା ଐରାବତ ନାଗ ।
ଶୁଣି ଇନ୍ଦ୍ର ବୋଲନ୍ତି ତା ଉଚିତ ନୁହଇ
ଐରାବତ ବଶୀଭୂତ ମୋହର କି ହୋଇ ।
ତୁ ଯେବେ ବିଚାର ଆନ ମାଗରେ ସନ୍ତତ
ତୁ ଯେଣୁ ପୁତ୍ର ମୋହର କରିବୁ ତୁ ଗତ ।
କର୍ଣ୍ଣ ବୋଲେ ହାତେ ପିତା ହୋଇଲ ନିଯତ
ସାକ୍ଷି କି ନୋହିଲେ ଧର୍ମ ହୁଏ କି ପ୍ରାପତ ।
ଦାନ ଦେବା ପାଇଁ ପିତା ନୁହ କି ତତ୍ପର
ରମ୍ଭା ଅପସରୀ ଯେବେ ମୋତେ ଦାନ କର ।
ଇନ୍ଦ୍ର ବୋଲେ ରମ୍ଭା ଛାଡ଼ି ଆନ ମାଗ ସୁତ
ରମ୍ଭା ନ ଥିଲେ କି ଶୋଭା ହଟିବ ଅମର ।
ଇନ୍ଦ୍ର ବୋଲେ ରମ୍ଭା ଛାଡ଼ି ଆନ ମାଗ ସୁତ
କର୍ଣ୍ଣ ବୋଲେ ରହିଲେ ରହିବୁ ତୁ ତାତ ।
ବହୁତ ପ୍ରସଙ୍ଗେ ତତ ହୋଇବ ଅସତ୍ୟ
ପୁଣି ପୁଣି ପ୍ରଚାର ହେଉଛି ବହୁତ ।

ତୁମ୍ଭେ ଯଦ୍ୟପି ପ୍ରାର୍ଥନା କର ଦେବରାୟେ
ଶିର କମଳ କାଟିଣ ଦେବି ଏହିଠାଏଁ ।
ଇନ୍ଦ୍ର ବୋଇଲେ ତୁ ବାବୁ ଦାନେ ଶୂରବନ୍ତ
ସତ୍ୟ ଦ୍ୱାପର ଯେତଯୁ ରହିଲ ତୋ କଥା ।
କର୍ଣ୍ଣ ବୋଇଲା ଅସତ୍ୟ ହୋଇଲ ବହୁତ
ବଜ୍ର ଶକତି ମୋତେ କି ଦେବ ଆହେ ତାତ
ଏହା ଛଡ଼ା ନ ମାଗିବି ଜାଣ ଆଉ ଆନ
ଦେବୁ କି ନ ଦେବୁ ତାତ ବିଚାର ତୋ ମନ
ଏହି ପରକାରେ କର୍ଣ୍ଣ ଦୃଢ଼ ବାକ୍ୟ ଶୁଣି
ଆଶ୍ଚର୍ଯ୍ୟ ହୋଇଣ ଇନ୍ଦ୍ର କରିଲେ ଭାଳେଣି ।
ମାତଳି ବୋଇଲା ଦେବ ବୀର ଅନୁରୂପ
ଦାନ ନ ଦେଲେ କି ନାଶ ଯାଇପାରେ ପାପ
ମାତଳି ବଚନ ଶୁଣି ଅମରାଧିନାଥ
ବିଚାର କରନ୍ତି ଶକ୍ତି ଦେବି ମୁଁ କେମନ୍ତ ।
କର୍ଣ୍ଣକୁ ବୋଇଲେ ସ୍ୱର୍ଗେ ମୁହିଁ ଅଧିକାରୀ
ଅସୁର ଦାନବେ ମୋର ସମରେ ବଇରି ।
ଐରାବତ ପୃଷ୍ଠେ ମୋର କରେ ବଜ୍ର ଦେଖି
ଭୟେ ଦୁରନ୍ତ କେ ଯାନ୍ତି ସମର ଉପେକ୍ଷି ।
କର୍ଣ୍ଣ ବୋଲେ ତାତ କିଛି ନ ଦେବାକୁ ଇଚ୍ଛା
ବୃଥାରେ ସତ୍ୟ କପାଇଁ କରିଲ ହେ ବାଞ୍ଛା ।
ମାତଳି ବୋଇଲା ଦେବ ମନର ସରାଗେ
ଅକ୍ଷୟ ସ୍ୱର୍ଗକୁ ଯିବା ଅସ୍ତ୍ର ଦିଅ ବେଗେ ।
ତହୁଁ ଇନ୍ଦ୍ର ସୁମରିଲେ ସେ ବଜ୍ର ଶକତି
ଉଡୁ ଲକ୍ଷ ପୂର୍ଣ୍ଣେ ଯେହ୍ନେ ପ୍ରକାଶିଲେ ଜ୍ୟୋତି
ବଜ୍ର ଆସନ୍ତେ ସକଳେ କରିଲେ ଆଶଙ୍କା
ଚତୁର୍ଦ୍ଦଶ ଭୁବନରେ ପଡ଼ିଗଲା ଧକା ।
ବିଶ୍ୱରୂପ ପ୍ରକାଶିଲେ ଯହୁଁ ଇନ୍ଦ୍ର ରାଜେ
ସେ ମହା ବଜ୍ର ଶକତି ଧଇଲେ ଶ୍ରୀଭୁଜେ ।
ଶତଧାର କେତେର ସହସ୍ରେକ ଜ୍ୟୋତି
ଦିନ ପୂର୍ଣ୍ଣତେ ଦେଖିଣ ମନେ କଲେ ଭ୍ରାନ୍ତି ।
ଉପର ହସ୍ତ କରିଣ ଦେଲେ ମଘବାନ
ତଳହସ୍ତେ କର୍ଣ୍ଣବୀର ନେଇଲେ ବହନ ।
କର୍ଣ୍ଣବୀରର ଶରୀର ହୋଇଥିଲା କଞ୍ଚା
ଶକତିର ତେଜଲାଗି ହେଲା ସବସଞ୍ଚା ।
କବଚ କୁଣ୍ଡଳ ପୁଣି ଅଭେଦ୍ୟ ଛଡ଼ାଇ
ସ୍ୱର୍ଗକୁ ନେଲ ଇନ୍ଦ୍ର ବିଜେ ରଥେ ଯାଇକରି ।

ଶକ୍ତି ଗ୍ରହନ୍ତେ ମ୍ଳାନ ଇନ୍ଦ୍ରଙ୍କର ତେଜ
ଦେଖି କର୍ଣ୍ଣ ବୋଲେ ରହ ରହ ସୁରରାଜ ।
ଯେ ହେତୁ ଶକ୍ତି ମୋତେ ଦେଲୁ ଦୃଢ଼ବାକ୍ୟେ
ଥାଉ ଏ ତୋହର ହସ୍ତେ ମୋହର ଉଦକେ
ସ୍ୱାମି ତୁ ଶକ୍ତି ଦେଲୁ କରି ସତ୍ୟବାଧି
ଇନ୍ଦ୍ର ପ୍ରାପ୍ତ ନ ହଶିଲୁ ଏବେ ଜମ୍ଭଭେଦ ।
ଯେତେବେଳରେ ହୋଇବ ମୋର ଏବେ କାର୍ଯ୍ୟ
ମାଗନ୍ତେ ଶକ୍ତି ଦେବୁ ମୋତେ ଦେବରାଜ ।
ଇନ୍ଦ୍ର ବୋଇଲେ ବାବୁ ଏ ଅପାଲଟ ଶର
ସମାନ ଶସ୍ତ୍ର ଜାଣି ତୁ କରିବୁ ପ୍ରହାର ।
ଏକାଥରେ ଦେବ ଅସ୍ତ୍ର ଯାକୁ ଦେବୁ ପେଷି
ରୁଦ୍ର ହରପ କେ ହେଲେ ଆସିବ ବିନାଶି ।
କର୍ଣ୍ଣ ବୋଲଇ ତାତ ମୁଁ ମାଗିବଇଁ ଯାହା
ସାବଧାନ ହୋଇ ଶୁଣ କହୁଅଛି ତାହା ।
ଭାରତ ସମର ହେବ ଶୁଣିଅଛି କର୍ଣ୍ଣେ
ସମରେ ମାରିବ ମୁହିଁ କୃଷ୍ଣ ଅରଜୁନେ ।
ମାତଳି ବୋଇଲେ ଦେବ କଲ ବଡ଼ ମନ୍ଦ
ନିଜ ଶରେ ନିଜ ପୁତ୍ର ଚିନ୍ତିଲ ପ୍ରମାଦ ।
ଇନ୍ଦ୍ର ବୋଇଲେ ମାତଳି ନ କର ତୁ ଭ୍ରାନ୍ତି
ଏଣୁ ବୋଲେ ପାର୍ଥ ହରି ମାରି କି ହୁଅନ୍ତି ।
କୃଷ୍ଣଙ୍କୁ ଶକ୍ତି ଯେବେ କରିବ ଏ ଭେଦ
ତେବେ ଅର୍ଜ୍ଜୁନଙ୍କୁ କାହୁଁ ପଡ଼ିବ ପ୍ରମାଦ ।
କର୍ଣ୍ଣଙ୍କୁ ବୃହିଁ ବାସବ ଦେବତା ଯେ ପୁଛି
ଚିରଞ୍ଜୀବୀ ହୋଇଥାଅ ସ୍ୱର୍ଗକୁ ଯାଉଛି ।
ଶୁଣ ଆରେ କର୍ଣ୍ଣ ବୋଲି ଡାକନ୍ତି ବିଡ଼ୌଜା
ପାଣ୍ଡବ ଅଭାବେ ସ୍ୱର୍ଗ କରିଥିଲ ତେଜ୍ୟା ।
ନିବାତକବଚ ନିଧୂମର ପନୋତ
ଜମ୍ଭ ଦଇତ୍ୟର ସେହୁ ଅଟଇ ସନ୍ତତି ।
ସେ ଜମ୍ଭଦୈତ୍ୟ ସ୍ୱର୍ଗର ହୋଇଲା ବିବାଧି
ତାହାକୁ ମାରି ମୋ ନାମ ହେଲା ଜମ୍ଭଭେଦୀ ।
ଜମ୍ଭଦୈତ୍ୟ ସୁତ ବଜ୍ର କବଚ ପ୍ରତ୍ୟକ୍ଷ
ସେହୁ ହୋଇଲା ମୋହର ପୁଣି ବୈରିପକ୍ଷ ।
ତାହାକୁ ମୁଁ ନାଶକଲି ବିଷମ ସମରେ
ତା ପୁତ୍ର ନିବାତ ପୁଣି ବାହିଲା ଅମରେ ।
ସତ୍ୟ ତ୍ରେତୟା ଦ୍ୱାପର ତିନିଯୁଗ ମଧ୍ୟେ
ଚୌରାଅଶୀ ଥର ମୁହିଁ ହାରିଲି ତା ଯୁଦ୍ଧେ ।

ଅର୍ଜ୍ଜୁନ ବଧ କରିଲା ସମରରେ ଯହୁଁ
ଭୃପତି ହୋଇଣ ବର ଯାଚିଲଇଁ ତହୁଁ ।
ବୃନ୍ଦାର୍କ ସଷ ଜଣର ବର୍ଷିଥିଲେ ସର୍ବେ
ସନ୍ତୋଷେ ବୋଇଲା ପୁତ୍ର ବର ମାଗ ଏବେ
ପାର୍ଥ ବୋଇଲା ପ୍ରସନ୍ନ ଯେବେ ହେଲ ତାତ
ବଜ୍ର ଛଉଣି କୁଣ୍ଡଳ ମୋତେ ହେଉ ପ୍ରାପ୍ତ ।
ବାବୁ ଦେବତା ବସାଇ ସତ୍ୟକଲ ଯାହା
ବିଗୁର କେମନ୍ତେ ମୁହିଁ ନ ଦେବଇଁ ତାହା ।
ଏବେ ଆରେ କର୍ଣ୍ଣବୀର କହୁଅଛି ତୋତେ
କୁରୁପାଣ୍ଡବ ସମର ନ ହୁଏ ଯେମନ୍ତେ ।
ପାଣ୍ଡବେ ତୋର ସୋଦର ଦୁର୍ଯ୍ୟୋଧନ ସଖା
ବୁଦ୍ଧି ଉପାୟରେ କର କୁରୁବଂଶ ରକ୍ଷା ।
ହରି ଅର୍ଜ୍ଜୁନ ଅଟନ୍ତି ଏକଆତ୍ମା ବେନି
ମହୀଭାର ଉଶ୍ୱାସିବେ ପାଣ୍ଡବଙ୍କୁ ଘେନି ।
କର୍ଣ୍ଣ ବୋଇଲା ହେ ତାତ ଚଳି ଯା ଅମରେ
କଥା ବଢ଼ାଇଲେ କୋପ ବଢ଼ିବ ଅନ୍ତରେ ।
ଚଳିଗଲେ ଇନ୍ଦ୍ରଦେବ ମହାଦାନ ଘେନି
ମର୍ତ୍ତ୍ୟଦେଶେ ପାଣ୍ଡବଙ୍କୁ ଭେଟିଲେ ସେକ୍ଷଣି ।
କବଚ ବଜ୍ରଛଉଣି ଅମୃତ କୁଣ୍ଡଳ
ପାଣ୍ଡବଙ୍କୁ ଦେଲେ ନେଇ ବଜ୍ର ଆଖଣ୍ଡଳ ।
ହୋଇଲେ କିସ କହିବି କର୍ଣ୍ଣର ମହିମା
ପୁରୁଷଙ୍କ ଉତ୍ତମ ସେ ସାଧୁ ମହାତମା ।
ପୁଣ ସାଧୁ ଆତ୍ମା ତାର ଯେ ପୁତ୍ର ଦୁଇଟି
କଷ୍ଟତେ ନ ଗୁଡ଼ି ଅଙ୍ଗ ପକାଇଲେ କାଟି ।
କର୍ଣ୍ଣ ନାରୀ ଦୁଇ ସୁତ ଦେଖି ଯାଙ୍କ ସତ୍ୟ
ବିଗୁରଲେ ବସାଇଣ ନେଇ ପୁଷ୍ପରଥ ।
ମାନବ ହୋଇଲେ ମଧ୍ୟ ସ୍ୱର୍ଗକୁ ଯୋଗାଇ
କର୍ଣ୍ଣପାଇଁ ଏ ଭାରତବର୍ଷ ଶୋଭାପାଇ ।
ଏହା କଥା କହନ୍ତି ଯେ ଅମରାଧିନାଥ
ପୁନଃସରଣି କର୍ଣ୍ଣଙ୍କୁ ପ୍ରଶଂସି ବହୁତ ।
ବାବୁ ଏଡ଼େ ଦାନ ମୋତେ ଦେଲା ସୂର୍ଯ୍ୟବାଳ
ଦାନ ଭରରେ ମୋ ରଥ ହୋଇଲା ଅଚଳ
ଯହୁଁ ନ ଯାଇ ପାରିଲି ପୁର ବାରସ୍ୱର୍ଗ
ପ୍ରତିଗ୍ରହ କରି ତାକୁ ଦେଲଇଁ ଶକତି ।
ତହୁଁ ମୋତେ ବୋଲେ ସାର୍ଥୀ ଥାଅ ସୁରେଶ୍ୱର
ଏହାବଳେ ହରି ପାର୍ଥ କରିବ ସଂହାର ।

ଯେ କୃଷ୍ଣ ଅନବାର ଏ ସସ୍ତ୍ର ଧାର ଶକ୍ତି
ମାଗିଲେ କର୍ଣ୍ଣଙ୍କୁ ମୁହିଁ ଦେବି ଏକ ଘାନ୍ତ ।
ତା ଯେବେ ବଞ୍ଚାଇ ପାରୁ ଭାରତର ଯୁଦ୍ଧେ
ତେବେ ପାଣ୍ଡବେ ଉଦ୍ଧତ ହେବେ ମହୀମଧ୍ୟେ ।
ସୁଦେଷ୍ଣା ବୋଇଲେ ଏହା ବୁଝି ଶିଖିବଇ
ଏ ଶକ୍ତି ଘଟୋତ୍କଚକୁ କରିବ ଯେ ଭକ୍ଷ ।
ଇନ୍ଦ୍ର ବୋଇଲେ ତୁହି ଗୋ କାର କୁଳବଧୂ
ଉଭୟକୁଳ ମଣ୍ଡନ ତୋ ମହିମା ସାଧୁ ।
ସୁଦେଷ୍ଣା ଶ୍ରୀକୃଷ୍ଣ ପାଦେ କରି ପ୍ରଣିପାତ
ବୋଲେ ସ୍ୱର୍ଗେ ଯିବି ଆଜ୍ଞାଦିଅ ହେ ଅଚ୍ୟୁତ
ନାରାୟଣଙ୍କ ଚରଣେ ପ୍ରଣମି ସେ ସତୀ
ନିଜ ପ୍ରାଣ ବିସର୍ଜନ କଲ ତତ୍‌କ୍ଷଣାନ୍ତ ।
ଇନ୍ଦ୍ର ଦେବ ସୁଦେଷ୍ଣାଙ୍କୁ ରଥରେ ବସାଇ
ଅମର ବାରହଟରେ ପ୍ରବେଶିଲେ ଯାଇ ।
ସାନନ୍ଦ ହେଲ ମେନକା ଶକୁନ୍ତଳା ଦେଖି
ପାଇଲ ସେ ନିଜକନ୍ୟା ଥିଲ ସେ ଉପେକ୍ଷି ।
ବିରାଟ ସୁଦେଷ୍ଣା ଶବ ଧରି କରି ଶୋକ
କୃଷ୍ଣ ଯୁଧିଷ୍ଠି ବୁଝାଇ କହିଲେ ଅନେକ ।
ଦାହକରି ପ୍ରେତକାର୍ଯ୍ୟ ଆଦି କଲେ ଶେଷ
ଉତ୍ତରାର ଗର୍ଭ ହେଲ ଆସି ଦୁଇମାସ ।
ଶଙ୍ଖ ଶ୍ୱେତ ଉତ୍ତର ବିରାଟ ପୁତ୍ର ତିନି
ତୁଲେ ଛନ୍ତି ପୁଣି ସାତ ଷଉଣୀ ସଇନ ।
ଗଙ୍ଗା ଯମୁନା ଯେ ସରସ୍ୱତୀ ମଧ୍ୟସ୍ଥାନେ
ବାରୁଣାବନ୍ତେ ରହିଲେ ଯାଇ ପାଞ୍ଚଜଣେ ।
କନ୍ୟାମାସ କୃଷ୍ଣପକ୍ଷ ତିଥି ଯେ ଚଉଠି
ଶନୈଶ୍ଚର ବାର ଯେ ରୋହିଣୀ ବୃଷ ରାଶି ।
ବାଣିଜ୍ୟ କରଣ ସିଦ୍ଧିଯୋଗ ପରଦେଶ
ପାପଯୋଗ ନାହିଁ ଶୁଭଲଗ୍ନେ ଚନ୍ଦ୍ର ବୃଷ ।
ଯୋଗିନୀ ନୈର୍ଋତେ ବିଜେ ଛନ୍ତି ଯାତ୍ରା କାଳେ
ଚଳିଲେ ପାଣ୍ଡବଗଣ ଶୁଭ ଅନୁକୂଳେ ।
ଯୁଧିଷ୍ଠିରଙ୍କ ସ୍ଥାନରେ ଶ୍ରୀ ପୁରୁଷୋତ୍ତମ
ବୋଇଲେ ଦ୍ୱାରକା ଯିବି ଆଜ୍ଞା ଦିଅ ଧର୍ମ ।
ଯୁଧିଷ୍ଠି ବୋଇଲେ ଯେଉଁ କାର୍ଯ୍ୟେ ଅଣାଇଲୁ
ଉତ୍ତର ଉତ୍ସବ ଶୁଣି ମତ୍ସ୍ୟଦେଶେ ଗଲୁ ।
ତେଣୁ କହି ନ ପାରିଲି ସେହି ବିବରଣ
ଅତଏବ କହୁଅଛୁ ଶୁଣ ନାରାୟଣ ।
ଦୁଃଖି ଧନର ଅନ୍ନର ହେଉଛୁ ଅପ୍ରୀତ
ମଧ୍ୟମାନ୍ତ ପଣେ ଏବେ ଯାଅ ରମାପତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଏତଳ ଭୂତଳ
ଅତଳ ଶୂନ୍ୟତଳ ମହାରସାତଳ ।
ବ୍ରହ୍ମାଣ୍ଡ ବୈକୁଣ୍ଠପୁର ଆଦିକରି ଯେତେ
ଏକାଦଶ ଲୋକ ଆଶ୍ରା କରିଛନ୍ତି ତୋତେ ।
ହେ ହରି ଅନାଥଜନ ନାଥ ତୁହି ଜାଣି
ପରଦୁଃଖେ ଦୁଃଖୀ ତୋର ନାମ ଚିନ୍ତାମଣି ।
ସମସ୍ତ ଭୁବନେ ହରି ତୋର ଅଛି ବାସ
ତୁହି ଅଟୁ ଅନ୍ତର୍ଯ୍ୟାମୀ କମଳା ବିଳାସ ।
ମୂର୍ଖର ତୁ ବୁଦ୍ଧିଦାତା ଅଗତିର ଗତି
ଭୃତ୍ୟଙ୍କୁ ସଦୟ ତୁହି ଥାଉ ନିତ୍ୟପ୍ରତି ।
ମୁହିଁ ଯେ ଅନାଥ ତୁହି ଅଟୁ ଜଗନ୍ନାଥ
ସକଳଜନ ଭକତ ହେଲୁ ତୁ ନିରତ ।
ସଂସାରେ ବୋଲନ୍ତି ନରହରି ଆଶ୍ରେ ନେବ
ପୃଥିବୀରେ ଆଶ୍ରା ମେରୁ ମହତ୍ତ୍ୱେ ମାନବ ।
ଅଗୁଣ ଗୁଣ ଆଶ୍ରୟ ଜଳାଶୟ କୃଷି
ଆତ୍ମା ଅନାଶ୍ରୟ ଇନ୍ଦ ଆଶ୍ରୟ ପ୍ରବାସୀ ।
ପ୍ରାଣର ପିଣ୍ଡ ଆଶ୍ରୟ କଳି ଆଶା ଦ୍ୱନ୍ଦ୍ୱ
ପଣ୍ଡିତ ମହଦାଶ୍ରୟ ଅଧର୍ମରେ ମନ୍ଦ ।
ସ୍ତିରିର ଆଶ୍ରୟ ସ୍ୱାମୀ ବିଦ୍ୟା ଶ୍ରୀ ପାଠକ
ଜଳ ଆଶ୍ରା ମହୀ ଅଟେ ବାୟୁର ପାବକ ।
ତପୀ ଆସନ ଆଶ୍ରୟ ଯୋଗାଶ୍ରୟ ଶୂନ୍ୟ
ପାଣ୍ଡବେ **ଶ୍ରୀକୃଷ୍ଣ** ଆଶ୍ରା ଶୁଭେ ତ୍ରିଭୁବନ ।
ଏ କଥା ଅଟଇ ସାର ପ୍ରକୃତ ସମ୍ବାଦେ
ମୁଁ ଅସାଧ ଅଟେ ହରି ତୋହର ପ୍ରସାଦେ ।
ବିପଦରେ ଆଶ୍ରା ମୋତେ ହେବୁ ଭଗବାନ
ଉଦଯୋଗରେ ସମ୍ପଦ ଦେବୁ ଜନାର୍ଦ୍ଦନ ।
ସମ୍ପଦହିଁ ହେଉ କିବା ବିପଦହିଁ ହେଉ
ତୋ ଆଶ୍ରାରେ ଥାଇ ହରି ମୋର ଦିନଯାଉ ।
ଯୁଧିଷ୍ଠି ବିନୟ ବାକ୍ୟ କହିଲେ ଅନେକ
ପ୍ରେମ ଗଦଗଦେ ନେତ୍ରୁ ବୁହାଇ ଲୋତକ ।
ଯୁଧିଷ୍ଠିରଙ୍କ କାକୁସ୍ଥ ବାକ୍ୟମାନ ଶୁଣି
କର ଯୋଡ଼ିଣ ବୋଲନ୍ତି ଦେବ ଚକ୍ରପାଣି ।
ମୁହିଁ ତବ ଭୃତ୍ୟଙ୍କର ଅଟେ ସିନା ଭୃତ୍ୟ
ତୁମ୍ଭ ବିନା ଆନଠାରେ ନାହିଁ ମୋର ଚିତ୍ତ ।

ଯହିଁକି ଆଜ୍ଞାହିଁ ମୋତେ ଦେବ ଦେବ ଧର୍ମ
ସେହି ଆଦେଶ ପାଳିବା ମୋ କର୍ତ୍ତବ୍ୟ କର୍ମ ।
ସ୍ୱାମୀ ସଦା ସତ୍ୟବ୍ରତେ ବ୍ରତୀ ଯେଉଁ ଜନ
ପରପାଇଁ ସେହୁ ଅବା ଦିଅଇ ଜୀବନ ।
ଜନ ପ୍ରବୋଧନେ ଯେହୁ ମିଷ୍ଟବାକ୍ୟ ଭାଷି
ସତ୍ୟକୁ ଲଙ୍ଘନ ଯେହୁ ପରକୁ ଆଶ୍ୱାସି ।
କାଳବଳେ ହିତେ ବ୍ରତେ ବ୍ରତୀ ଯେଉଁ ଜନ
ପ୍ରସ୍ତାବ ବଚନ ସେହୁ ନ କରେ ଗୋପନ ।
ବିପତ୍ତି କାଳରେ ସେହୁ ସାହା ହୁଏ ଜାଣି
କେବଳ କୃଷି ଆଶ୍ରୟେ ବଞ୍ଚେ ଯେଉଁ ପ୍ରାଣୀ ।
ଏକସ୍ତିରୀ ସଙ୍ଗକର ଏକବାକ୍ୟ ଭାଷି
ମୂର୍ଖ ହେଉ ମୁଖେ ସେହୁ କଠୋର ନ ଭାଷି ।
ପରଦୁଃଖ ଦେଖି ସେହୁ ସଦା କରେ ଚିନ୍ତା
ନିଜଶକ୍ତି କ୍ରମେ ଅନ୍ନ ଦିଏ ଯେଉଁ ଦାତା ।
ମାତାପିତା ଯତ୍ନେ ରଖେ ଯେଉଁ ପୁତ୍ର ଲୟେ
ବିପ୍ର ଗୁରୁ ଦେବତାଙ୍କୁ ସେହୁ ହୃଦେ ଧ୍ୟାୟେ ।
ପ୍ରମାଦ ଭୂମିରୁ ସେହୁ ଘୁଞ୍ଚେ ଅନୁବ୍ରତେ
ଦୁଷ୍ଟଜନ ଦେଖିଲେ ସେ ଭୟ କରେ ଚିତ୍ତେ ।
ପର ପ୍ରମାଦରେ ସେହୁ ହେଉଥାନ୍ତି ଦୁଃଖୀ
ଏତେ ଲୋକଙ୍କର ଜାଣ ମୁହିଁ ଥାଏ ସାକ୍ଷୀ ।
ଦେବ ଦେବୀଙ୍କ ଉପରେ ଯାର ଥାଏ ଚିତ୍ତ
ଏତେ ବାଟେ ଥିଲେ ମୁହିଁ ହୁଏ ତାର ଭୃତ୍ୟ ।
ଏମନ୍ତ ବହୁତ କହି ଦେବ ନାରାୟଣ
ବୋଇଲେ ଯହିଁ ପେଷିବ ଯିବ ମୋ ପ୍ରମାଣ ।
ଯୁଧିଷ୍ଠିର ବୋଇଲେ ନହୁଁ ହସ୍ତିନାକୁ ଯିବ
ମୋହର ଦୁଃଖରେ ଦୁଃଖୀ ହେବ ବାସୁଦେବ
ପଣ୍ଡୁ ଧୃତରାଷ୍ଟ୍ର ଏହୁ ଥିଲେ ଭାଇ ବେନି
ତାଙ୍କ ପୁତ୍ର ଆମ୍ଭେମାନେ ହେଉ ଅନ୍ୟୋଅନ୍ୟ
ଦୁଇକୁଳ ଯୁଦ୍ଧ ନୋହୁ ହେବ ଯେହ୍ନେ ସନ୍ଧି
ପ୍ରତ୍ୟକ୍ଷେ ନାରାୟଣ ତୁ ଦିଅ ତାଙ୍କୁ ବୁଦ୍ଧି ।
ଦୁଇକୁଳକୁ ବିବାଦ ନୋହୁ ନାରାୟଣ
ମୋହର ନିମନ୍ତେ ହେନ ମଧ୍ୟପାଣ୍ଡବଣ ।
ପ୍ରମାଦକୁ ବଇକୁଣ୍ଠ ମୋ ର ପଞ୍ଚଆତ୍ମା
ତୋହର ମନେ ବିଚାର ତୁ ଏବେ ମହାତ୍ମା ।
ଧୌମ୍ୟ ପୁରୋଧା ବିଦୁର ଆବର ସଞ୍ଜୟ
କାର ବୋଲ ନ ଶୁଣିଲ ଗାନ୍ଧାରୀ ତନୟ ।

ତୁ ହରି ସୃଷ୍ଟି ନାୟକ ସର୍ବ ଅଧିକାରୀ
ଲୋମ ଲୋମକେ ବ୍ରହ୍ମାଣ୍ଡ ଅଛୁ ତୁହି ଧରି ।
ତୋ ବ୍ୟତୀତେ ଆନକର୍ତ୍ତା ଜଗତେ କେ ନାହିଁ
ସବୁ ତୋ ଭିଆଣ ସବୁ କରିପାରୁ ତୁହି ।
ଧୃଷ୍ଟ ଭୂରିଶ୍ରବା ଆଦି ବିଦୁର ସଞ୍ଜୟେ
ଗାନ୍ଧାରୀ ଧୃତରାଷ୍ଟ୍ର ସେ ଥିବେ ଏକଠାଏ ।
ଯିବ ଉପୁଜାଇ ହରି ମାଗ ଗ୍ରାମଟିଏ
କହିବ ତ ଙ୍କୁ ଯୁଧିଷ୍ଠି ମାଗିଛି ବିନୟେ ।
ଲକ୍ଷେ ଯୋଜନରେ ସେହୁ ଅଟେ ଅଧିକାରୀ
ପଡ଼ାଖଣ୍ଡେ ଦେଉ ଭାଇ ବୋଲଣ ବିଚାରି ।
ମୁହିଁ ତାହାର ସୋଦର ଅଟେ ଯଥାର୍ଥରେ
ନିତ୍ୟ ସେବୁଥିବି ଧୃତରାଷ୍ଟ୍ରର ପୟରେ ।
ପଦ୍ମଗ ନାରାୟଣ ସେ ମାନଚକ୍ରବର୍ତ୍ତୀ
କୋଟିପାଦେ ଲକ୍ଷ୍ମୀ ବିଜେ ମଣ୍ଡଳାଧିପତି ।
ହରି ତୋହର ସଞ୍ଚିତ ଅଟେ ମହୀଭରୀ
ଆମ୍ଭ ଅନ୍ୟୋଅନ୍ୟ ଦେଖି ହସେ ବସୁନ୍ଧରୀ ।
ଉଠି ହରି ଭୁଜ ଧରି ଯୁଧିଷ୍ଠିର ରାଜା
ବୋଇଲେ ଦଧିବାମନ ସୁମରି ତୁ ଯା ଯା ।
ଧର୍ମ ଆଶ୍ରା ହେବ ତୋତେ ପୁରୁ ମନୋବାଞ୍ଛା
ବିପଦେ ସର୍ବମଙ୍ଗଳା କରୁ ତୋତେ ରକ୍ଷା ।
ଯାତ୍ରା କର ତୁହି ଏବେ ଶୁଭ ଅନୁକୂଳେ
ଆପଦ ଖଣ୍ଡନ୍ତୁ ଦେବୀ ମା ସର୍ବମଙ୍ଗଳେ ।
ଜୟ ବ କ୍ୟଦେବୀ ବୀଣାପାଣି ସରସ୍ୱତୀ
ତୋର ପାଦପଦ୍ମେ ମୁହିଁ କରୁଛି ବିନତି ।
ବାକ୍ୟ ଚତୁରତା ଦିଅ ଆବର ସୁବୁଦ୍ଧି
ଶରଣ ଉଦ୍ଧାରଣୀ ଗୋ କର କାର୍ଯ୍ୟସିଦ୍ଧି ।
ରଣରଙ୍ଗରେ ରଖନ୍ତୁ ଦେବୀ ନାରାୟଣୀ
ବଚନ କାଳେ ରଖନ୍ତୁ ଦୁର୍ଗା ମହାସ୍ୱାମୀଣୀ ।
ଜଳେ ରଖିଥାନ୍ତୁ ସଦା ଦେବୀ ମାହେଶ୍ୱରୀ
ସ୍ଥଳରେ ରଖନ୍ତୁ ବିଘ୍ନନାଶିନୀ ଶଙ୍କରୀ ।
ସଭାରେ ବଚନ ହରି କହିବାର ବେଳେ
ମାନଟଗୋବିନ୍ଦ କଣ୍ଠରେ ବସିବୁ ମଙ୍ଗଳେ ।
ଉକତ ବତ୍ସଳା ଦେବୀ ଝଙ୍କଡ଼ବାସିନୀ
ଶୂଦ୍ରମୁନି ଶାରଳାର ହେନ ତୁ ଦଇନୀ ।

---

## ପଞ୍ଚପାଣ୍ଡବଙ୍କର ସମର ପ୍ରତିଜ୍ଞା, ଦୂତପଣେ ଶ୍ରୀକୃଷ୍ଣଙ୍କର ହସ୍ତିନା ଗମନ ଓ ବ୍ୟାସାଦି ମୁନିସହ ବିଦୁର ଗୃହେ ବିଶ୍ରାମ

ପୁଣି ପୁଚ୍ଛାକଲେ ବୈବସ୍ୱତ ନୃପବର
ହେ ଅଗସ୍ତି ତୁମ୍ଭପାଦେ କୋଟି ନମସ୍କାର ।
ତୁମ୍ଭ ଶ୍ରୀମୁଖଁ ଭାରତ ଶୁଣି ନିତ ନିତ
ସଦା ମୋର ପ୍ରସନ୍ନ ହେଉଛି ଚିତ୍ତ ।
ବିରାଟେ ସକଳେ ଶୁଣି ଉଦ୍ଧବଙ୍କ ବାଣୀ
ତଦପରେ କେଉଁ କଥା କଲେ ଚକ୍ରପାଣି ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଯୁଧିଷ୍ଠିରଙ୍କ ବଚନେ ବୋଲନ୍ତି ଶ୍ରୀହରି
ତୁମ୍ଭ ବଚନ ଅନ୍ୟଥା କରିବି କିପରି ।
ତୁମ୍ଭ ଆଜ୍ଞା ପରମାଣେ ଯିବି ହସ୍ତିନାକୁ
ପଡ଼ା ଖଣ୍ଡିଏ ମାଗିବି ସେ ଦୁର୍ଯ୍ୟୋଧନକୁ ।
ମାଗିଲେ ନ ଦେବ ଯେବେ ମୋତେ କୁରୁପତି
କିସ କହିଣ ତା ସଙ୍ଗେ କରିବ ଯୁକତି ।
ଯୁଧିଷ୍ଠିର ବୋଇଲେ ମୁହିଁ ସୋଦର ଯୁକତେ
ବିଶେଷରେ ଯାଉଅଛ ତୁମ୍ଭେ ମଧ୍ୟସ୍ଥେ ।
ଦୁର୍ଯ୍ୟୋଧନଠାରୁ ଭାଗ ପାଇବା ଉଚିତ
ପାପ ବିଗ୍ରହରେ ସେ ଯିବା କରୁଛି ବଞ୍ଚିତ ।
ମାଗିଲେ ଯଦି ନ ଦିଏ ଏକଗୋଟି ଗ୍ରାମ
ନିଶ୍ଚୟ ତା ସଙ୍ଗେ ମୋର ହୋଇବ ସଂଗ୍ରାମ ।
ସଂଗ୍ରାମେ ପଶିଲେ ଜାଣ ଛେଦିବି ବିରୋଧ
ସୋଦର ଜ୍ଞାନରେ କାର୍ଯ୍ୟ ହୋଇବ ସୁସିଦ୍ଧ ।
ଅପମାନ ହୁଏ ଯେବେ ସେଠାରେ ତୁମ୍ଭର
ଜାଣିବ କିସ ସୋଦର ଅଟେ ସେ ମୋହର ।
ଛୁଟିବ ବିରୋଧ ମୋର ସତ୍ୟ ସତ୍ୟ ସତ୍ୟ
ତଳେହେଁ ସନ୍ଦେହ ନାହିଁ ଜାଣ ହେ ଅଚ୍ୟୁତ
ତୁମ୍ଭର ଦର୍ଶନେ ଯେବେ ନ କରେ ସଂଗ୍ରାମ
ସତ୍ୟ ଲଙ୍ଘନରେ ହେବ ଅପ୍ରାପତ ଧର୍ମ ।
ମାତା ପିତା ଦେବତାଙ୍କୁ ନିନ୍ଦା ଯେ କରେ
ସେ ଦୋଷ ପାଇବି କହେ ତୁମ୍ଭର ଆଗରେ
କୌରବଙ୍କ ସଙ୍ଗେ ଯେବେ ଯୁଦ୍ଧ ନ କରଇ
ନିରଞ୍ଜନ ଦେବ ଥାଳେ ବିଷ ମୁଁ ଭରଇ ।
ମୋର କୁଳବଧୂ ପାକ ଅସ୍ପୃଶ୍ୟ ଶୋଣିତ
ପିତୃଲୋକଙ୍କୁ ଦେଇ ମୁଁ ହେବି ନର୍କପ୍ରାପ୍ତ ।
ବିଷମ କଠୋର ବାକ୍ୟ ଶୁଣି ଦେବରାଜ
ହୃଦ ମଧ୍ୟରେ ସ୍ଥାପିତ ହେଲେ ବଡ଼ଲାଜ ।
ଶଙ୍ଖ ଶବଦ କରିଲେ ଚତୁର୍ଥଁ ଦାମୋଦର
ପ୍ରବେଶ ହୋଇଲେ ଭୀମ ଶୟନ ମନ୍ଦିର ।
ପାଣ୍ଡବ ସୁନ୍ଦର ଦେଖି ଚରଣେ ପ୍ରଣମି
ବୋଇଲେ କାହିଁକି ବିଜେ ନିଶାକାଳେ ସ୍ୱାମି
ଶ୍ରୀକୃଷ୍ଣ ବୋଇଲେ ଧର୍ମ ଆଜ୍ଞା ପରମାଣେ
ହସ୍ତିନାକୁ ଯାଉଅଛୁ ମଧ୍ୟସ୍ଥ ପଣେ ।
ଦୁର୍ଯ୍ୟୋଧନକୁ ମାଗିବି ପଡ଼ା ଯେ ଖଣ୍ଡିଏ
ତୁମ୍ଭଙ୍କୁ ଦେଇ ରହିବେ ଧର୍ମର ତନୟେ ।
ତୁହି ପାଣ୍ଡବ କୁଳରେ ଅଟୁ ବଳବନ୍ତ
ତୋତେ ନ କହି କେମନ୍ତେ ମୁହିଁ ହେବି ଦୂତ
ବୃକୋଦର ବୋଲେ ତୁମ୍ଭେ ଶୁଣ ଚକ୍ରଧର
ସର୍ବ ପ୍ରାଣୀ ମନ ତୋତେ ହୁଅଇ ଗୋଚର ।
ସ୍ୱାମି ଭାଇଙ୍କ ଚରିତ ଜାଣିଛ ଯୁକତେ
ଅଠାଶୀସହସ୍ର ଋଷିଙ୍କୁ ଅନ୍ନ ଦିଅନ୍ତି ନିତ୍ୟେ ।
ଷାଠିଏ ପଉଟି ମୋର ବେଳକେ ଭୋଜନ
ଏ ବିଧିରେ ଭିଜିବେଳେ ଯୁରେ ମୋର ଦିନ
ଏକ ପଡ଼ାକରେ କାହିଁ ପାରିବି କି ବର୍ତ୍ତି
ମୋ ପାଇଁ ମାଗିବ ଖଣ୍ଡେ ପଡ଼ା ଶ୍ରୀପତି ।
ଗୋବିନ୍ଦ ବୋଇଲେ ଚଳେ ତୋ ନାମଶୁଣିଲେ
ତୋତେ କାହିଁ ପଡ଼ାଦେବ କୁରୁରାୟ ଭଲେ
ଭୀମସେନ ବୋଲେ ମୁହିଁ ତାର ଉପକାରୀ
ଜଳମଣ୍ଡଳ ବିବାଦେ ଆଣିଛି ଉଦ୍ଧାରି ।
ସାରଙ୍ଗୀ ରାକ୍ଷସୀ ତାକୁ ଗିଳିଥିଲା ବେଳେ
ସେ ନିଶାଚରୀକୁ ମାରି ଉଦ୍ଧରିଲି ହେଳେ ।
କାର୍ଯ୍ୟକୁ ଗ୍ରହଣ କରି ଗୁଣକରେ ପୂଜା
ମୋ କଥା ରକ୍ଷା କରିବ ନିଶ୍ଚେ କୁରୁରଜା ।
ହରଷ ହୋଇଣ ଗ୍ରାମ ଦେବ କୁରୁପତି
ନ ଦେଲେ ରଣ କରିବା ନିଶ୍ଚେ ଶ୍ରୀପତି ।
ଗୋବିନ୍ଦ ବୋଇଲେ ତୁହି ସଂଗ୍ରାମ କରିଲେ
କାହା କାହାକୁ ଜିଣିବୁ କହ ତେତେବେଳେ
ଭୀମ ବୋଲେ କପଟରେ ପଶା ଖେଳବେଳେ
ରାଜ୍ୟ ବାଡ଼ି ନେଇ ବସାଇଲ ସଭାତଳେ ।

ଦ୍ରୌପଦୀର କେଶଧରି ଆଣେ ଦୁଃଶାସନ
ମୋଚନ କରିଲା ସଭା ପିନ୍ଧିଲା ବସନ ।
ମହାସଭାରେ ପ୍ରତିଜ୍ଞା କଲି ସଭାତଳେ
ଶତଭାଇଙ୍କୁ ମାରିବି ମୁହିଁ ଏକାବେଳେ ।
ଆଉ ପ୍ରତିଜ୍ଞା ରଚନ୍ତି କରି ରଣରଙ୍ଗ
ଦୁଃଶା ବାହୁ ଉପାଡ଼ିବି ବିଦାରିବି ଅଙ୍ଗ ।
ସେ ରକ୍ତେ ଦ୍ରୌପଦୀ କେଶ ଦେବି ମୁଁ ପଖାଳି
ପନ୍ଦର ବର୍ଷ ନ ବାନ୍ଧେ କେଶକୁ ପାଞ୍ଚାଳୀ ।
କହୁ କହୁ ପାବନର କମ୍ପେ ଦେହବାହା
ନୃସିଂହରୂପ ତା ଦେଖି ଜଗଜ୍ଜନନାହା ।
ମନ ମଧ୍ୟେ ବିଚାରିଲେ ଭୀମ ଦୁଷ୍ଟବୁଦ୍ଧି
କଦାଚ କୁରୁ ପାଣ୍ଡବେ ନ ହୋଇବ ସନ୍ଧି ।
ଭୀମ ବୋଲେ ଦେବ ତୁମ୍ଭେ ଜଗତର ଗୁରୁ
ଭାର ଉଶ୍ୱାସିବା ପାଇଁ ମର୍ତ୍ତ୍ୟେ ଅବତାରୁ ।
ପାଣ୍ଡବଙ୍କ ହିତେ ଯିବି ଆଉ ହେ ଗୋବିନ୍ଦ
ଗ୍ରାମ ମାଗିବ ହେ ହରି କରି ନାନାଛନ୍ଦ ।
ମୋର ଶପଥ ତୁମ୍ଭଙ୍କୁ ଠାକୁରଙ୍କ ରଣ
ଆମ୍ଭେ ତୋହର ଆଶ୍ରିତ ଜାଣ ନାରାୟଣ ।
ବୃକୋଦରର ମୁଖରୁ ଏସନକ ଶୁଣି
ମଧୁରିପୁ ଆନନ୍ଦରେ କଲେ କମ୍ବୁଧ୍ୱନି ।
ତହୁଁ ଉଠି ଚଳିଗଲେ ଦେବ ରମାପତି
ରଥ ଅର୍ଦ୍ଧରେ ଭେଟି ଲ ଇନ୍ଦ୍ର ର ସନ୍ତତି ।
ଅସମୟେ ଦେଖି ପାର୍ଥ ହୋଇ ପ୍ରଣିପାତ
ବୋଲେ କିସ ଉତ୍ପାତ ହେଲା ଯଦୁନାଥ ।
ଶ୍ରୀକୃଷ୍ଣ ବୋଲିଲେ ମୁହିଁ ଯାଉଅଛୁ ବେଗି
ଦୁର୍ଯ୍ୟୋଧନ ନିକଟକୁ ପଡ଼ା ଖଣ୍ଡେ ମାଗି ।
ଯୁଧିଷ୍ଠିର ସେବକରେ ହୋଇଲେ ନୃପତି
ବୋଇଲେ ଭାଇଙ୍କୁ ଧେନ ରହିବି ମୁଁ ବସି ।
ଶୁଣି ଆନନ୍ଦ ହୋଇଲା ବାସବର ବାଳ
ବୋଇଲା ଉଦିତ ହେଲା ଆସି ଶୁଭବେଳ ।
ଅଥବା ନାସ୍ତେ ଯଦ୍ୟପି କରେ କୁରୁପତି
ତୁମ୍ଭେ ଶାନ୍ତି କରାଇବ ଯିବ ମନୁଭ୍ରାନ୍ତି ।
ଶାନ୍ତି ଭଜାଇ କହିବ ତାକୁ ଦେବହରି
ଯେମନ୍ତେ ସୋଦର ପ୍ରୀତି ରହିବ ଆମ୍ଭରି ।
ତୁମ୍ଭେ ଭକତବତ୍ସଳ ଅଟ ପୀତବାସ
ଉଭୟକୁଳ ବିବାଦ ମଧ୍ୟକରି ଆସ ।

ଯେବେ କୁତୂହଳେ ବଶ ନୋହିବ ହେ ହରି
ସାନ୍ତ୍ୱନା ଦେଇ କହିବ ମୂର୍ଖକୁ ବିଆରି ।
ଧୃତରାଷ୍ଟ୍ର ଭୂରିଶ୍ରବା ସଞ୍ଜୟ ବସାଇ
ବିଦୁର ଭୀଷ୍ମ ଦ୍ରୋଣାଦି ଏହାଙ୍କୁ ଡକାଇ ।
ମଧ୍ୟପାଣ୍ଡବର ପଣକୁ ତୋ ଛନ୍ଦୁଁ କେ କ୍ଷମ
ସୋମବଂଶ ରକ୍ଷାକର ଶ୍ରୀ ପୁରୁଷୋତ୍ତମ ।
ସୋଦର ସୋଦର ଯଦି କରାଇବୁ ଦ୍ୱନ୍ଦ୍ୱ
ଅବଶ୍ୟ ଉଭୟକୁଳେ ପଡ଼ିବ ପ୍ରମାଦ ।
ସେମାନଙ୍କୁ ନାଶଗଲେ ଆମ୍ଭେ ଥିବୁ ବୃଥା
ଆମ୍ଭ ଦେଖନ୍ତେ ସେ ପୁଣି ପାଇବେ ଅବସ୍ଥା ।
ବହୁତ ବୁଝାଇ ପ୍ରଭୁ କହିବ ସଭାରେ
ଦୁର୍ଯ୍ୟୋଧନ ଦେହଭୁଜ ଧରି ବିନୟରେ ।
ପରୋପକାରୀ ବିନୟୀ ଅଟେ ଯେଉଁଜନ
ପ୍ରତ୍ୟକ୍ଷେ ଜାଣିବ ସେହି ଅଟେ ନିରଞ୍ଜନ ।
ନୃପମନେ ସେହୁ ଯେବେ ଦେବ ପଡ଼ାଟିଏ
ମୋପାଇଁ ମାଗିବ ପଡ଼ା ଆହୁରି ଗୋଟିଏ ।
ଶୁଣି କେଶବ ବୋଇଲେ ଦରହସା ବାଣୀ
ତୋ ନାମ ଶୁଣି ଚଳଇ କୁରୁ ନୃପମଣି ।
ମୋହର ମାଗନ୍ତେ ଯେବେ ନ ଦିଅଇ ତୋତେ
ଦୁଃସହ ଅପମାନରେ ଆସିବି କେମନ୍ତେ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଜଗଦାଧିକାରୀ
ମୁହିଁ ତାହାର ସୋଦର ପ୍ରାଣସଙ୍ଗେ ସରି ।
ସଦାସଦୟ ମୋପ୍ରତି ସେ ମାନଗୋବିନ୍ଦ
ମୋ ନାମ ଧରିଲେ ଦେବ ହୋଇଣ ଆନନ୍ଦ ।
ନିଶ୍ଚୟ ମାଗିବ ତୁମ୍ଭେ ହେ ପୁରୁଷୋତ୍ତମ
ମୋ ନାମ ଶୁଣିଲେ ଦେବ ଖଣ୍ଡେ ଭଲ ଗ୍ରାମ
ଗୋବିନ୍ଦ ବୋଇଲେ ତୋତେ ନଦିଅଇ ଯେବେ
କିସ ଉତ୍ତର ଦେବି ମୁଁ କହ ମୋତେ ତେବେ
ଅର୍ଜ୍ଜୁନ ବୋଇଲେ ଯେବେ ନ ଦିଅଇ ଗ୍ରାମ
ନିଶ୍ଚୟ ତାହାର ସଙ୍ଗେ ହୋଇବ ସଂଗ୍ରାମ ।
ପୁଣି ଶ୍ରୀକୃଷ୍ଣ ବୋଇଲେ ତୁ ସଂଗ୍ରାମ କଲେ
କାହା କାହାକୁ ଜିଣିବୁ ତୋର ବାହୁବଳେ ।
ଅର୍ଜ୍ଜୁନ ବୋଇଲେ ହରି ଆଗେ ଭୂରିଶ୍ରବା
ଦ୍ୱିତୀୟରେ ଗୁରୁ ଦ୍ରୋଣ ତୃତୀୟେ ଗାଙ୍ଗେୟ ।
ଚତୁର୍ଥରେ କର୍ଣ୍ଣବୀର ପଞ୍ଚମରେ ଶଲ୍ୟ
ଏହାଙ୍କ ସଙ୍ଗରେ ପୁଣି ଥିବେ ଯେତେ ମଲ୍ଲ ।

ଭୋ ହରି ଏହାଙ୍କୁ ଯେବେ ମୁହିଁ ନ ପାରଇ
ଯୁଧିଷ୍ଠିର ପଦ୍ମପାଦେ ଦ୍ରୋହ ମୁଁ କରଇ ।
ସ୍ତ୍ରୀଶିଶୁ ଦୈନ୍ୟ ଖାଇକରି ବଞ୍ଚନ୍ତି ଯେ ପ୍ରାଣୀ
ସେହି ଦୋଷ ଲଭିବଇଁ ଆହେ ଚକ୍ରପାଣି ।
ପରଅନ୍ନ ଭୁଞ୍ଜିକରି ବଞ୍ଚେ ଯେଉଁ ଜନ
ସେ ଜନ ଅନ୍ନକୁ ମୁହିଁ କରିବି ଭୋଜନ ।
ବ୍ରାହ୍ମଣ ହୋଇଣ ଯେବେ ନୀଚ ଅନ୍ନେ ବର୍ତ୍ତେ
ସେ ଦୋଷେ ଦୋଷୀ ମୁଁ ହେବି ଆହେ ଯଦୁପତେ
ଅର୍ଜ୍ଜୁନ ମୁଖୁଁ ଏସନ ବାକ୍ୟମାନ ଶୁଣି
ଆନନ୍ଦରେ ମଧୁରସ୍ୱ କଲେ କମ୍ବୁଧ୍ୱନି ।
ଅର୍ଜ୍ଜୁନକୁ ସମାର୍ଜ୍ଜନ କରି ଦାମୋଦର
ପ୍ରବେଶ ହୋଇଲେ ଯାଇ ଦ୍ରୌପଦୀ ପାଶର
ଦେଖି ଅତି ସାନନ୍ଦିତା ହୋଇଲେ ପାଞ୍ଚାଳୀ
ପାଦ୍ୟ ଅର୍ଘ୍ୟ ପୂଜାକରି କଲେ ନଉଛୁଳି ।
କେଶବ ଛାମୁରେ ଉଭା ଦ୍ରୁପଦ ଦୁଲାଳୀ
ବୋଇଲେ କିସ କାରଣେ ବିଜେ ବନମାଳୀ
ବଦନ୍ତି କେଶବ ତୁହି ଶୁଣ ଯାଜ୍ଞସେନି
ଯୁଧିଷ୍ଠିର ଦେବଙ୍କ ବାଣୀ ମୁହିଁ ଶିରେ ଘେନି ।
ମଧ୍ୟସ୍ଥ ପଣେ ଆଜ୍ଞା କରିଲେ ଆମ୍ଭକୁ
ଦୂତପଣେ ଯାଉଅଛୁ ହସ୍ତିନା ସଭାକୁ ।
ଭିନଖଣ୍ଡ ପଡ଼ାପାଇଁ ହେବ ମୁହିଁ ପ୍ରାର୍ଥୀ
କୌରବ ପାଣ୍ଡବଙ୍କର ବଢ଼ାଇବି ପ୍ରୀତି ।
ଉଭୟ କୁଳେ ବିରୋଧ ନୁହେ ଗୋ ଯେମନ୍ତେ
ଯୁଧିଷ୍ଠିର ଦେବ ଠାକୁର ଆଜ୍ଞା ଦେଲେ ମୋତେ ।
ମାଗୋ ଲକ୍ଷେ ଦ୍ୱିଜ ଘେନି ବ୍ୟାସ ମହାମୁନି
ଅନଳୁ ଜାତ କରିଲେ ନାମ ଯାଜ୍ଞସେନୀ ।
ଦ୍ରୁପଦ ଝିଅରି ତୋର ଧୃଷ୍ଟଦ୍ୟୁମ୍ନ ଭ୍ରାତ
ଅଯୋନିସମ୍ଭବା ତୁହି ଅଟୁ ଆଗୋ ମାତ ।
ସୋମବଂଶ ମଣ୍ଡଣୀ ଗୋ ଧର୍ମ ପାଟବଂଶୀ
ପଣ୍ଡୁରାଜା ବଧୂ ତୁ ଗୋ ଗୁଣେ ଗୁରୁହଂସୀ ।
ଯୁଧିଷ୍ଠିର ଆଜ୍ଞା କହିଲି ଭୀମ ଅର୍ଜ୍ଜୁନକୁ
ଦୁଇକୁଳ ପ୍ରୀତି ହେଉ ବୋଇଲେ ଆମ୍ଭଙ୍କୁ ।
ମାଗୋ ତୋତେ ନ କହୁ ମୁଁ ଯିବଇଁ ଯେମନ୍ତେ
ତୋହର ଯେ ଆଜ୍ଞାଗୋଟି ନ ଉଧାରି ସତେ ।
ନାରାୟଣଙ୍କ ମୁଖରୁ ଏହି ବାକ୍ୟ ଶୁଣି
ମୋହେ ପଡ଼ିଲେ ଦେବୀ ଗତପ୍ରାଣ ଜାଣି ।
କେଶବ କୋଳେ ଧଇଲେ ଭୂମିରୁ ଉଠାଇ
ଚେଇଲେ ପାଞ୍ଚାଳୀ ଦେବୀ ପଞ୍ଚାମ୍ବା ଫୁଟଇ ।
କେଶବ ବୋଧ ଦିଅନ୍ତେ ଲଭିଲା ସାସ୍ଥାମ
ବୋଇଲେ କିସ କହିଲ ହେ ପୁରୁଷୋତ୍ତମ ।
ସଭାରେ ହରି କପଟ ପଶାଖେଳ କାଳେ
ପାଣ୍ଡବଙ୍କର ସମ୍ପଦ ନେଲ କୁଟିଳେ ।
ରାଜ୍ୟ ରାଜସିଂହାସନ ଅଶ୍ୱ ଆଦିକରି
ଆମ୍ଭ ବନ୍ଦୀ କରିଲେ ପଶାରେ ସେ ହାରି ।
ସଭାତଳେ ବସାଇଲା ନେଇ ପଞ୍ଚଭ୍ରାତ
ବୋଲଇ ଆରେ ପାଣ୍ଡବେ ହେଲ ଆମ୍ଭ ଭୃତ୍ୟ
ସ୍ୱାମୀଙ୍କୁ ହିଂସାସନ୍ତେ ଯେ ଏମନ୍ତ ସମୟେ
ମୋର କେଶ ଧରିନେଇ ଗାନ୍ଧାରୀ ତନୟେ ।
ଅନ୍ତଃପୁର ମାର୍ଗେ ମୋତେ ନିଅନ୍ତେ ଚଣ୍ଡାଳ
ଚରଣ ବେନି ମୋହର ନ ଲାଗିଲା ତଳ ।
ଅନେକ ହିଂସାସେ ମୋତେ କହେ କଟୁବାଣୀ
ଆକ୍ରୋଶେ ବାସ ଆକର୍ଷେ ଦୁଃଶା ଶିର ଝୁଣି ।
ସେକାଳୁ କେଶ ମୁକୁଳା ରଖିଛି ମୁଁ ଜାଣ
ସତେ ବନ୍ଧନ ନ କରେ ଆହେ ନାରାୟଣ ।
ପଞ୍ଚଦଶ ବର୍ଷ ପାଞ୍ଚମାସ ନବଦିନ
ନ ବାନ୍ଧିଲି କେଶ ମୋର ଆହେ ଜନାର୍ଦ୍ଦନ
ଅବନ୍ଧନ କେଶ ମୋର ଦେଖ ସାକ୍ଷାତରେ
ଏଥିକୁ କି ନିବାରିବ କୁହ ମୋ ଆଗରେ ।
ଯେଉଁ କରେ କେଶ ମୋର ଧରି ଦୁଃଶାସନ
ଆବର ଯେ କରେ କଲା ମୋତେ ବିବସନ ।
ସେହି ଭୁଜ ଉପାଡ଼ିବେ ବୀର ଭୀମସେନ
ତେବେ ପ୍ରତିଜ୍ଞା ରହିବ ମୋହର ପ୍ରମାଣ ।
ପୁଣି ସେ ବୋଲେ ମହିମା ତୋର ଯେବେ ସତ
ତୁହି ଜଗନ୍ନାଥ ଯେବେ ବଡ଼କୁଳେ ଜାତ ।
ଯଦ୍ୟପି ଜଗନ୍ନାଥ ତୁ ବସୁଦେବ ସୁତ
ତୁହି ଜଗନ୍ନାଥ ଯେବେ ଲକ୍ଷ୍ମୀଙ୍କର କାନ୍ତ ।
ଯେବେ ତୁ ପୁରୁଷୋତ୍ତମ ଅଟୁ ପରଂଯୋଗୀ
ଯେବେ ଶରଣବତ୍ସଳ ଦୁଷ୍ଟ ପରିତ୍ୟାଗୀ ।
ଯଦ୍ୟପି ମୁନିଙ୍କ ହୃଦେ ଥାଉ ତୁ ଆନନ୍ଦେ
ଯଦ୍ୟପି ଏ ଚରାଚର ତୋର ଗର୍ଭେ ଉଦେ ।
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡେ ତୁ ଯେବେ ସତ୍ୟବାଦୀ
ସୁର ନର ମୁନିଙ୍କୁ ତୁ କରୁ ଯେବେ ସିଦ୍ଧି ।

ଯଦ୍ୟପି ପାଣ୍ଡବ ହେବେ ଥାଉ ସର୍ବକାଳେ
ମୋ ଚିତ୍ତ ସ୍ପୃହା ଯେବେ ରଖ ହୃଦସ୍ଥଳେ ।
ପାଣ୍ଡବ କୌରବଙ୍କର ଯେବେହେ ହୁଏ ଦ୍ୱନ୍ଦ୍ୱ
ତୁ ତାହା ସର୍ଜ୍ଜନା କରି ଆସିବୁ ଗୋବିନ୍ଦ ।
ଗୋବିନ୍ଦ ବୋଇଲେ ତୁ ଗୋ ଭଗ୍ନୀ ନିବାରଣୀ
ରକ୍ଷନ୍ତା ଭକ୍ଷନ୍ତା ତୁହି ବଇଷ୍ଣବୀ ପୁଣି ।
ତୋହର ଯେ ଆଜ୍ଞା ଗୋଟି ନିରଧାର ମାତ୍ର
ହୋଇବ କୁରୁ ପାଣ୍ଡବ ସମର ଯଥାର୍ଥ ।
ଏହି ବିଜେ କରିଗଲେ ପ୍ରଭୁ ଜନାର୍ଦ୍ଦନ
ବିଜୟ କଲେ ନକୁଳ ଶୟନର ସ୍ଥାନ ।
ମାଦ୍ରୀ ନନ୍ଦନ କେଶବ ପାଦେ ପରଣାମି
ବୋଲେ ସଂସାର ତାରଣ କପାଁ ବିଜେ ସ୍ୱାମି
ଗୋବିନ୍ଦ ବୋଇଲେ ଶୁଣ ହେ କୁମରମଣି
କ୍ଷତ୍ରି କୁଳ ଭୂଷଣ ବୀର ଚୂଡ଼ାମଣି ।
କୋନ୍ତ ମୁନରେ ଧଇଲୁ ସବ୍ୟ ସମରାସ୍ତ୍ର
ହେ କୁମର ତୋର ଅଛୁ ଦୁର୍ଗପୁରେ ପାଠ ।
ମଧ୍ୟସ୍ଥ ପଣେ ଯାଉଛୁ ହସ୍ତିନା ସଭାକୁ
ଯୁଧିଷ୍ଠି ଦେବଙ୍କ ଆଜ୍ଞା ଗୋଟି କହିବାକୁ ।
ପଡ଼ା ତିନଖଣ୍ଡ କୁରୁନାଥେ ମାଗିବଇଁ
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ଯାହା ଛନ୍ତି କହି ।
ନକୁଳ ପ୍ରଣାମକରି ବୋଲେ ନାରାୟଣ
ଯେବେ ତୁ ଗ୍ରହଣକଲୁ ମଧ୍ୟପାତ୍ର ପଣ ।
ସ୍ୱାମି କୁନ୍ତୀ ଗର୍ଭରୁ ସେ ଜାତ ଭାଇ ତିନି
ଇଚ୍ଛାରେ ଯେ ଯାହା ପୁଣ ମନାସିଲେ ଦେନି
ତୁ ଯେବେ ମଧ୍ୟ ପଣରେ ଯାଉ ଶିବିରଙ୍କ
କାଳେ ବୋଲିବ ସେ ଭୀମ ନାହିଁ ତୋର ଭାଗ
ଆମ୍ଭେ ବଇମାତ୍ର ଭାଇ ଅଟୁ ଦୁଇଜଣ
ଦ୍ୱି ଖଣ୍ଡ ପଡ଼ା ମାଗିବ ଆମ୍ଭ ନିମନ୍ତେଣ ।
ଗୋବିନ୍ଦ ବୋଇଲେ ଅଟେ ସେ ଦୁଷ୍ଟପ୍ରକୃତି
ଧର୍ମ ଆଶ୍ରୟ କଲେ କି ମିଳଇ ଯୁକତି ।
କର୍ଣ୍ଣ ଦୁଃଶାସନ କୁଟ କପଟୀ ଶକୁନି
ନ ପୁଣ ନ ଦ୍ୟନ୍ତି ଯେବେ ଗ୍ରାମ ଖଣ୍ଡ ଦେନି ।
ଯୁଧିଷ୍ଠି ବଡ଼ ବୋଲିଣ ଦେବ ପଡ଼ାଟିଏ
ଭୀମକୁ ଗୋଟିଏ ଦେବ ତାକୁ କରି ଭୟେ
ଅର୍ଜ୍ଜୁନକୁ ଦେବ ସେହି ପର ଉପକାରୀ
ତୁମ୍ଭଙ୍କୁ ସେ ପଡ଼ା ଦେବ କେଉଁଗୁଣେ କରି ।

ନକୁଳ ବୋଲେ ନ ଦେଲେ ସେହୁ ବେନି ଗ୍ରାମ
ନିଶ୍ଚୟ କେଶବ ମୋର ହେବଟି ସଂଗ୍ରାମ ।
ଗୋବିନ୍ଦ ବୋଇଲେ ବାବୁ ସଂଗ୍ରାମ ତୁ କଲେ
କାହା କାହାକୁ ଜିଣିବୁ ତୋର ବାହୁବଳେ ।
ନକୁଳ ବୋଇଲା ହରି ସେ ଭାରେଇମଲ୍ଲ
ପ୍ରଥମରେ ବିଦାରିବି ମୋ ମାତୁଳ ଶଲ୍ୟ ।
ଦ୍ୱିତୀୟରେ ସଂହାରିବି କୁମନ୍ତ୍ରୀ ଶକୁନି
ଲକ୍ଷ୍ମଣକୁମର ମେଳେ ଯେତେକ ସଇନ ।
କୃପାଚାର୍ଯ୍ୟ ଅଶ୍ୱତ୍ଥାମା ଅଟନ୍ତି ଅମର
ଏହାଙ୍କର ଯେତେ ସୈନ୍ୟ କରିବି ସଂହାର ।
ତୁ ମାତ୍ର ହରି ସଭାରେ ପାଇଆସ ଲଜ୍ଜା
କୌରବ ବଂଶ ବୁଡ଼ିବ ଜାଣ ଦେବରାଜା ।
ନକୁଳ ମୁଖୁଁ ଏମନ୍ତ ପ୍ରତିଜ୍ଞାକୁ ଶୁଣି
ବୋଇଲେ ଇନ୍ଦ୍ରାଦି ତୋତେ ନ ପାରିବେ ଜିଣି
ଏହି ନକୁଳେ ପ୍ରବୋଧି ଚଳିଲେ ମାଧବ
ଘୋର ନିପଦରେ ଭେଟ ପାଇ ସହଦେବ ।
ଯୋଗୀ ଯେହ୍ନେ ଜଗିଥାଏ ସାଧନର ପାଇଁ
ମନ୍ତ୍ରୀ ଜଗିଥିଲା କୃଷ୍ଣ ଆଗମ ଅନାଇଁ ।
କୃଷ୍ଣଙ୍କୁ ଦେଖି ହରଷ ହୋଇଲା ଅପାର
କଞ୍ଜଚରଣରେ ଯାଇ କଲା ନମସ୍କାର ।
ସହଦେବ ବାସୁଦେବ ଦେଲେ ଏକୋସନ
ଶୁଭାଶୁଭ ପଚାରନ୍ତି ଦେବ ଜନାର୍ଦ୍ଦନ ।
ମନ୍ତ୍ରିବର ବୋଲେ ଦେବ ସବୁ ଶୁଭକାର୍ଯ୍ୟ
ମଧ୍ୟପାତ୍ରପଣ କପାଁ ନେଲେ ଦେବରାଜ ।
କୃଷ୍ଣ ବୋଇଲେ ଆସିଲା ଏହିଁର ନିମନ୍ତେ
ଯୁଧିଷ୍ଠିର ଦେବ କଲେ ମଧ୍ୟପାତ୍ର ମୋତେ ।
ଆହେ। ମନ୍ତ୍ରୀ ତୁହି ଅଟୁ ପଣ୍ଡିତ ଧାର୍ମିକ
ଶୂରବନ୍ତ କ୍ଷମାବନ୍ତ ସର୍ବଙ୍କ ବିବେକ ।
ସ୍ୱାମୀ ଆଜ୍ଞା ଶିରୋଧାର୍ଯ୍ୟ ହୋଇଲା ମୋହର
କି କଥା କହିବ ଦୁର୍ଯ୍ୟୋଧନର ଆଗର ।
ତୁ ପଣ୍ଡିତ ମନ୍ତ୍ରୀଭୂତ ଭବିଷ୍ୟତ ଜ୍ଞାତା
ତୋର ବାକ୍ୟ ଅଭ୍ୟାସି ମୁଁ ହୋଇବ ବକତା ।
ସହଦେବ ବୋଲେ ସନ୍ଧି ତୋର ଯେବେ କାର୍ଯ୍ୟ
ତୋ ଆଜ୍ଞା ଭଙ୍ଗ କରିବ କିଏ ଦେବରାଜ ।
ଦେବ ଦାନବ କିଏ ବା ମେଣ୍ଟିବାକୁ କ୍ଷମ
ଦୁଷ୍ଟଜନଙ୍କର ଯମ ତୁ ପୁରୁଷୋତ୍ତମ ।

କୃଷ୍ଣ ବୋଇଲେ ବିଶ୍ୱାସ କର କହେ ତୋତେ
ମନ୍ତ୍ରୀର ବାଣୀ ବିଶ୍ୱାସ ହୋଇବ କେମନ୍ତେ ।
ସହଦେବ ବୋଲେ ସ୍ୱାମୀ ଯାଅ ଯୋଗଦେହ
ଉପାୟେ ନାଶ କରାଅ କୌରବ ସଇନ ।
ଯହିଁପାଇଁ ଆମ୍ଭେମାନେ ନରରୂପେ ଜାତ
ସେହି କାର୍ଯ୍ୟ କରିବାର ଆମ୍ଭର ଉଚିତ ।
ସୁବାକ୍ୟ ତେଜିଣ ଖଳ ବଚନ କହିଲେ
ବହୁ ଅମଙ୍ଗଳ ହୁଏ ଜାଣିଥାଅ ଭଲେ ।
ପୁନରପି ବୋଲେ ଦେବ ଶୁଣ ଶିରିରଙ୍ଗ
ନ ଦେବାର ଛଳ କରି ପଞ୍ଚଗ୍ରାମ ମାଗ ।
ଗୋବିନ୍ଦ ବୋଇଲେ ତୋତେ କହିଲି ସଂକ୍ଷେପ
କି ପଡ଼ା ମାଗିବ କହ ଜାଣୁ ତୁ ଯଦ୍ୟପି ।
ସହଦେବ ବୋଲେ ଶୁଣ ହେ ପୁରୁଷୋତ୍ତମ
କହୁଅଛି ପୁଣ ଗ୍ରାମମାନଙ୍କର ନାମ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଆବର ହସ୍ତିନା
ଜୟନ୍ତା ବରୁଣାବନ୍ତ ଏହି ପଞ୍ଚ ସିନା ।
ଗୋବିନ୍ଦ ବୋଇଲେ ଶୁଣ ମନ୍ତ୍ରୀ ଚୂଡ଼ାମଣି
ପଡ଼ାଙ୍କର ଅର୍ଥ ମୋତେ କହୁ ପରମାଣି ।
ମନ୍ତ୍ରୀ ବୋଲେ ଇନ୍ଦ୍ର ଯେତେ ଦୂର କରେ ବୃଷ୍ଟି
ପ୍ରଥମେ ମାଗିବ ହରି ସେହି ପଡ଼ାଗୋଟି ।
ଯେତେଦୂର ପର୍ଯ୍ୟନ୍ତେ ଥାଏ କାଳପାଶି
ବୋଲିବ ଯେ ଯମପ୍ରସ୍ଥ ପାଣ୍ଡବେ ଦଅନ୍ତି ।
ତୃତୀୟେ ମାଗିବୁ ହରି ଯେ ବାରୁଣାବନ୍ତ
ଯେତେଦୂର ଯାଏ ବାୟୁ ହୁଏ ଆତଯାତ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ଏ ତିନ
ପୁଣି ମାଗିବ ହସ୍ତିନା ଜୟନ୍ତା ଏ ବେନି ।
କେବଳ ପୁରରେ ଇନ୍ଦ୍ର ନ କରଇ ବୃଷ୍ଟି
ଯମଦେବ କାଳ ପାଶ ତାହିଁ ବା ନ ଘୋଟି ।
କେଉଁପୁରେ ଅତଯାତ ନ ହୁଏ ପବନ
ଏହା କଦାଚ ନ ଦେବ ରାଜା ଦୁର୍ଯ୍ୟୋଧନ ।
ଏହି ବାକ୍ୟ ଶୁଣି ତୋତେ ଦୁର୍ଯ୍ୟୋଧନ ଚଳ
ଏହି ଦେଖୁଛି ଅପ୍ରୀତ ହେବ ବନମାଳୀ ।
ଏହି ପଟ୍ଟଳୀ ନେ ଆନ ଭ୍ରମ ନାହିଁ
ଏହା ଦେଲେ କଉରବେ ରହିବେ ବା କାହିଁ
ଅତିବନ୍ତ ହୋଇ ଯେବେ ଅନ୍ତ କହିବ
ଶୁଣିକରି ଦୁର୍ଯ୍ୟୋଧନ ହାସ୍ୟ ସେ କରିବ ।

ମାରି ବୋଲି ଆଜ୍ଞା ଦେବ ମାନଚକ୍ରବର୍ତ୍ତୀ
ସାକ୍ଷ୍ୟକରି ଆଣିବୁ ତୁ ହୋଇବ ଅନୀତି ।
ନିଶୋଧନ ମନ୍ତ୍ରୀ କହୁଁ ଏସନକ ବୁଦ୍ଧି
ଶ୍ରୀ ଜଗନ୍ନାଥ ବୋଇଲେ କାର୍ଯ୍ୟ ହେବ ସିଦ୍ଧି
ସହଦେବ ବୋଲେ ମଢପାନ ମୁଖେ ସମ
ପୁଣିହିଁ ତାହାର ମୁଖେ ଅଛଇ ବିଷମ ।
ଶୁଣିଣ ଆନନ୍ଦ ହେଲେ ଦାନବ ଅଇର
କହିଲେ ସହଦେବ ଯା ତାହାଙ୍କୁ ତଆର
ଏକାନ୍ତରେ କଥାବାର୍ତ୍ତା ହୁଅନ୍ତେ ସେ ବେନି
ରଜନୀ ପ୍ରଭାତ ହେଲା ଶୁଭେ ଶଙ୍ଖଧ୍ୱନି ।
ଅରୁଣ ଦେବଙ୍କ ଆଖି ଦଟିଲା ଐଶାନ୍ୟେ
ସନ୍ଧ୍ୟା ସାରି ହରି ନିତ୍ୟକର୍ମର ବିଧାନେ ।
ଯମୁନା ନଦୀରେ ଧାଇ ବହଇ ତ୍ରିବେଣୀ
ଉତ୍ତରବାହିନୀ ହୋଇ ଉତ୍ତରେ ଭ୍ରମଣି ।
ନିତ୍ୟକର୍ମ ଶେଷକଲେ ହରି ପ୍ରାତଃକାଳେ
ଗନ୍ଧବତୀର ପିପ୍ପଳା ନାମେ ବଟତଳେ ।
ଲମ୍ବି ଅଛୁ ଶିର କେଶ ତ୍ରିକଚ୍ଛ ବସନ
ଶ୍ରୀକରରେ ଲୁଣବଟ୍ଟ ଶ୍ରୀବତ୍ସ ଲାଞ୍ଛନ ।
କଣ୍ଠରେ ଉତ୍ତରୀ ନବଗୁଣରେ ପଇତା
ଏକମୁଖୀ ରୁଦ୍ରାକ୍ଷର ମାଳ ସୁଶୋଭିତା ।
ଦେବତାଙ୍କୁ ଅଗୋଚର ଯାର କୂଟବୁଦ୍ଧି
ଚଳନ୍ତି ସେ ହୃଷୀକେଶ କଳକ ସମ୍ବୋଧି ।
ମିଥିଳା ନଗ୍ରେ ପ୍ରବେଶ ହୋଇଲେ ଶ୍ରୀହରି
ବ୍ୟାସ ଆସୁଛନ୍ତି ସୃଷ୍ଟିଙ୍କି ଖୋଜକରି ।
ବିଶ୍ୱାମିତ୍ର ମାର୍କଣ୍ଡ ବଶିଷ୍ଠ ଅଗସ୍ତି
ବାଲ୍ମୀକି ପରାଶର ଆଦି ମହାସନ୍ତ ।
ଷାଠିଏ ସହସ୍ର ଶିଷ୍ୟ ଘେନିଣ ସଙ୍ଗରେ
ନାରାୟଣଙ୍କୁ ଭେଟିଲେ ସମସ୍ତେ ସେଠାରେ ।
ଦଣ୍ଡ କମଣ୍ଡଳ ଆଦି ଥୋଇଣ ଭୂମିରେ
ବିନୟ ଭାବେ ପଡ଼ିଲେ କୃଷ୍ଣଙ୍କ ପାଦରେ ।
ଶ୍ରୀ କୃଷ୍ଣଙ୍କ ପାଦପଦ୍ମ ସବେ କରି ପୂଜା
ବୋଇଲେ ତପସ୍ୱୀ ବେ କୃପା ଦେବରାଜା ।
ଯୁଧିଷ୍ଠିରଦେବଙ୍କ ଉଦଯୋଗ ବାର୍ତ୍ତା ଶୁଣି
ସୁବର୍ଣ୍ଣ ପତାକା ଦେଖି ସବେ ଅଛୁ ଆସି ।
କୁହ ଧର୍ମଙ୍କର ଭେଟ ହେବ କେଉଁଠାରେ
ଏକାକୀ ଆସୁଛ କେହି ନାହାନ୍ତି ସଙ୍ଗରେ ।

ଗୋବିନ୍ଦ ବୋଇଲେ ଶୁଣ ଯୁଧିଷ୍ଠିର ଦେବ
ତାହାଙ୍କ ବୋଲରେ ମୁହିଁ ହସ୍ତିନାକୁ ଯିବ ।
ପ୍ରସ୍ତାବର ବିବରଣ ଶୁଣି ମୁନିବର
ପାଞ୍ଚପଡ଼ା ମାଗିଛନ୍ତି ଧର୍ମ ନୃପବର ।
ତେଣୁ ମୁହିଁ ହୋଇଅଛି ତାହାଙ୍କର ଦୂତ
ହସ୍ତିନାପୁରେ ଯାଉଛି ହୋଇଣ ମଧ୍ୟସ୍ଥ ।
ମାର୍କଣ୍ଡ ବୋଇଲେ କୁହ କୁହ ମୁନି ବ୍ୟାସ
କୃଷ୍ଣ ସେ ସଭାରେ କିସ କରିବେ ସମ୍ଭାଷ ।
କିସ ପ୍ରତ୍ୟୁତ୍ତର ଦେବେ ମାନଚକ୍ରବର୍ତ୍ତୀ
କୁରୁ ପାଣ୍ଡବଙ୍କ ହେବ ପ୍ରୀତି କି ଅପ୍ରୀତି ।
ଶ୍ରୀ ନାରାୟଣ ବୋଇଲେ ଆସ ଆମ୍ଭ ତୁଲେ
ସୁବାକ୍ୟ ଉଗ୍ରୁଜେ ସିନା ଭଲ ଗୋଷ୍ଠୀ ଥିଲେ
ଆସ ଆସ ବ୍ୟାସ ତୁମ୍ଭେ ପ୍ରତ୍ୟକ୍ଷେ ମହାତ୍ମା
ଏ ଅଗସ୍ତି ଋଷି ପୁଣି ସାକ୍ଷାତରେ ବ୍ରହ୍ମା ।
ଶ୍ରୀ ଜଗଦାନନ୍ଦଙ୍କର ସୁଧାବାକ୍ୟ ଶୁଣି
ନାରାୟଣ ସଙ୍ଗେ ଗଲେ ସର୍ବ ତପିମଣି ।
ହସ୍ତିନା ବାରୁଣା ଦୁଇ ନଗ୍ର ମଧ୍ୟସ୍ଥାନେ
ବହେ ସରସ୍ୱତୀ ନଦୀ ନଗର ଈଶାନେ ।
ସାମାନ୍ୟ ନଗ୍ର ଗୋଟିଏ ଅଟେ ଅଙ୍ଗଦେଶ
ସେ ନଗର ମଧ୍ୟସ୍ଥାନେ ବିଦୁରର ବାସ ।
ଆଶ୍ୱିନ କୃଷ୍ଣ ପଞ୍ଚମୀ ଅଟେ ରବିବାର
ମୃଗଶିରା ନକ୍ଷତ୍ର ଯେ ବେଳ ଦଣ୍ଡ ତେର ।
ବବ ନାମେ କରଣ ଯେ ଅତିଗଣ୍ଡ ଯୋଗ
ବୃଷ ରାଶିର ଅନ୍ତରେ ମିଥୁନର ଭୋଗ ।
କେଶବଙ୍କ ସଙ୍ଗତରେ ଛନ୍ତି ଋଷିମାନେ
ପ୍ରବେଶ ହୋଇଲେ ଯାଇ ବିଦୁର ଭବନେ ।
ଅମ୍ବୁବର୍ଣ୍ଣ ସୁତ ଭୂତ ଭବିଷ୍ୟତ ଜ୍ଞାନୀ
ପୂର୍ବରୁ ଭୁବନ ସେହୁ କରିଛି ମଣ୍ଡଣି ।
କୃଷ୍ଣ ଆଗମନ ଶୁଣି ସାଯୁଜ୍ୟନୁ ନାତ
ପୁଣ ତାର ଭାର୍ଯ୍ୟା ନାମ ଅଟେ ପ୍ରିୟମ୍ବଦା
ହନୁମନ୍ତ ବୋଲି ନାମ ବିଦୁର ପୁତ୍ରଟି
କେଶବ ଚରଣେ ସର୍ବେ ପଡ଼ିଲେକ ଲୋଟି ।
ରତ୍ନଝାରୀରେ ହଅଇ ଜଳ ତାର ପ୍ରିୟା
ପାଦ ପଖାଳେ ବିଦୁର ଭକ୍ତିପୂର୍ଣ୍ଣ ହିୟା ।
ଚରଣ ପୋଛଇ ପୁଣି ଦେବାଙ୍ଗ ବସନେ
ଷୋଡ଼ଶ ଅର୍ଦ୍ଧ୍ୟେ ପୂଜା କଲା ବିନୟ ବଚନେ ।

ସମସ୍ତ ଋଷିମାନଙ୍କ ଚରଣ ପଖାଳି
ଅର୍ଘ୍ୟ ବନ୍ଦାପନା କଲା ହେନ ରତ୍ନଥାଳି ।
ଋଷିଙ୍କେ ସୁବର୍ଣ୍ଣ ପୀଢ଼ା ଗୋଟିଏ ଗୋଟିଏ
ବସନ କୁଣ୍ଡଳ ମାଳା ଗନ୍ଧ ପୁଷ୍ପ ଦିଏ ।
ନାରାୟଣଙ୍କୁ ବେଢ଼ିଣ ବସିଲେ ଯେ ମୁନି
ବିଦୁର ବଇଭି କରେ ପ୍ରସନ୍ନାର୍ଯ୍ୟା ହେନି ।
ଜୟ ଜୟ ଭଗବାନ ଭକତ ବତ୍ସଳ
ଜଳଧର ରୂପ ଅଙ୍ଗ ଦିଶଇ ସୁଢ଼ଳ ।
ସାଧୁ ମୋହର ଭୁବନ ସାଧୁ ମୋର ପୁର
ସାଧୁ ସାଧୁ ଅଟେ ସିନା ବଂଶହିଁ ମୋହର ।
ଜନ୍ମ ଜନ୍ମାନ୍ତରୁ ମୋର ଥିଲା ଯେଉଁ ଦୋଷ
ଆଜ ପଦ୍ମପାଦ ଦେଖି କଲ ତାହା ନାଶ ।
ମୋର ଭୁବନେ ପଡ଼ିଲା ତୁମ୍ଭ ପାଦରଜ
ଜନମ ସୁଫଳ ମୋର ହେଲା ଦେବରାଜ ।
ବହୁ ଅପରାଧେ ଦୋଷୀ ବାରେ ମୋତେ କ୍ଷମ
ଦେଖିଲି ଗୁଣସାଗର ଶ୍ରୀପୁରୁଷୋତ୍ତମ ।
ରାଜୀବଲୋଚନ ପ୍ରଭୁ ଅମୃତ ତୋ ଦୃଷ୍ଟି
ସମର ଦର୍ପ ଭାଙ୍ଗଇ ତୋର ନାମଗୋଟି ।
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀକରେ ଶୋଭଇ
ପ୍ରସନ୍ନେ ମୋକ୍ଷ ଦର୍ଶନେ କାର୍ଯ୍ୟ ସେ ଲଭଇ
ପୁଣ୍ୟଭଦ୍ରା ତୀର୍ଥେ ସ୍ୱାମୀ ଗଦାଧର ମୂର୍ତ୍ତି
ପିଣ୍ଡଦାତା ବ୍ୟକ୍ତିଙ୍କର ଦିଏ ମୋକ୍ଷଗତି ।
ଭାବଗ୍ରାହୀ ନାଥ ଦାସବତ୍ସଳ ହେ ସ୍ୱାମି
ନବ ବିକଚ କଦମ୍ବ ମାଳା ହୃଦେ ଲମ୍ବି ।
ବାଳକାଳେ ପୂତନା ଯାମଳାର୍ଜ୍ଜୁନ ଭଞ୍ଜା
ତୃଣା ଶକଟା ଦୈତ୍ୟଙ୍କ ଅଟ ଦର୍ପଗଞ୍ଜା ।
ଘୋରମୁଖ ଗଜମୁଖ ବକା ଯେ ପ୍ରଲମ୍ବା
ଚାଣୁର ମୁଷ୍ଟିକ ଦୈତ୍ୟ ଅମ୍ବା ଯେ କଦମ୍ବା ।
ଅଙ୍ଗୁଳିରେ ଧରିଅଛ ଗୋବର୍ଦ୍ଧନ ମେରୁ
କାଳିଆ ନାଗର ଦେବ ଗଞ୍ଜିଲୁ ତୁ ଫେରୁ ।
ସ୍ୱାମି କାଳ କାଳାନ୍ତକ ମୂରତି ପ୍ରକାଶି
କଷ୍ଟରେ ନାଶିଲୁ ପ୍ରାଣ ଦୈତ୍ୟ କଂସକେଶୀ ।
କାଳଦମନ ନାରକା ଜରା ଆଦି ଧ୍ୱଂସି
ଦନ୍ତବକ୍ର ଶିଶୁପାଳ କାଳନେମି ନାଶି ।
ବଜ୍ରନାଭ ଯେ ସୁନାଭ ବାଣ ସହସ୍ରଭୁଜ
ହିରଣାକ୍ଷ ବିଦାରିଲୁ ତୁହି ଦେବରାଜ ।

କୁମ୍ଭ ନିକୁମ୍ଭ ଦୈତ୍ୟଙ୍କ ତୁମ୍ଭେ ପ୍ରାଣଧ୍ୱଂସୀ
ଭକତବତ୍ସଳ ନାଥ ପୂରଅ ମନସା ।
କଉତୁକେ ନନ୍ଦପୁରେ ନାମ ଯେ କହ୍ନାଇ
ବାଟେ ବାଜୁ ଶିରେ ଚୂଳ ମୁଖେ ବେଣୁ ବାଇ
ଖେଳ ବାଳକ ସବତ୍ସ ଦେଖିଣ ଅରଣ୍ୟ
ବ୍ରହ୍ମା ହରି କମଣ୍ଡଳୁ ମଧ୍ୟେ ତାହା ସଞ୍ଚି ।
ସୁଧା ଦେନି କୁତୂହଳେ ଥିଲେ ଦେବବର
ସମାନେ ବତ୍ସଙ୍କୁ ଧାତା ଥୁଏ ଯତ୍ନକରି ।
ସୁଧା ଭଜେ କରିଗଲେ ଆପଣାର ପୁରୀ
ସନ୍ଧ୍ୟା ଅବକାଶେ ହରି ଲେଉଟିଲେ ବାହୁରି ।
ଯମୁନାର ତୀର କୁଞ୍ଜ ମାଧବୀର ଲତା
କାହିଁଗଲେ ବତ୍ସ କେହି ନୋହିଲେ ଦେଖନ୍ତା
ଗାଈ ହମ୍ବାରବ ଦେଲେ ବତ୍ସଙ୍କୁ ନ ଦେଖି
ପ୍ରାନ ସ୍ୱରରେ କାନ୍ଦନ୍ତି ଗୋଗୋଷ୍ଠ ଉପେକ୍ଷି ।
ଲେଉଟନ୍ତେ ଗୋପାଳମାନେ ଧାଇଁଆସେ ନନ୍ଦ
ଉଚ୍ଚସ୍ୱରେ ଡାକ ଦିଏ କେଣେ ରେ ଗୋବିନ୍ଦ
ଯମୁନା ତଟରେ ବୁଲି ବତ୍ସଙ୍କୁ ନ ପାଇ
ନିଜ ମନ୍ଦିରକୁ ହରି ଆସୁଥିଲ ଧାଇଁ ।
ନନ୍ଦ ଡାକନ୍ତେ ଦେଖିଲ ବଟବୃକ୍ଷ ତଳେ
ବୋଲେ ବତ୍ସଙ୍କୁ ଛାଡ଼ିଲୁ କାହିଁ ଏତେବେଳେ
ଗାଈଙ୍କ ବିକଳ ଜାଣ ସମ୍ଭବରେ ସନ୍ଥ
ମହାକୋପ ହେଲ ନନ୍ଦ ଏହା କହୁଁ କହୁଁ ।
କଂସର ନିଯୋଗ ହେବ ସମ୍ବସରର ଦୁଧ
କାହୁଁ ଦେଆଇବ ଏବେ ହେଲ ପ୍ରମାଦ ।
ରାଗେ ମହାଖୁଣ୍ଟ ନେଇ ଲୁହ ପଡ଼େ ଫୁଟି
କୋପେ ବାମକରେ ଧରେ କେଶବ ତୋ ଚୁଟି
ରାଗେ ମହାଖୁଣ୍ଟ ନେଇ ଡେଙ୍ଗୁଳର ଡାଗେ
ପ୍ରହାର କଲେ କହ୍ନାଇ ତାଙ୍କୁ ତୋର ଅଙ୍ଗେ
ଫୁଟି ବଜାନ୍ତେ ଦେହରେ ରୁଧିର ପ୍ରକଟ
ବିକଳେ କାନ୍ଦନ୍ତେ ତୋର ଛୁଟିଦେଲ କେଶ
ତୋତେ ମାରି ମହାଖୁଣ୍ଟ ବତ୍ସ ଖୋଜେ ଯାଇ
ବତ୍ସଙ୍କୁ ଖୋଜିଲୁ ତୁମ୍ଭେ ଧେନରେ ଲଗାଇ ।
ଦେଖିଲୁ ଧାତା ସମାନେ ବତ୍ସଙ୍କର ଦଳ
ବୋଇଲୁ ତୁ ଧାତା କିଛି ନ କରିଲୁ ଭଲ ।
ଗୋପାଙ୍ଗଣୀ ସଙ୍ଗେ କରୁଥିଲି ରଙ୍ଗ ଖେଳ
ଛଡ଼ିବା ପାଇଁ ହରିଲୁ ମୋର ବତ୍ସଦଳ ।
ଏତେ କଠୋର ହୋଇଲୁ ପିତାମହ ମୋତେ
ନନ୍ଦ ପିଟୁଅଛି ପୁଣି ତାର ଜ୍ଞାନ କେତେ ।
ନନ୍ଦ ଦୋଷ ନାହିଁ ଦଣ୍ଡ ଦେଲୁ ତୁ ଝିଙ୍ଗାସି
ଏ ମଧ୍ୟପୁରେ ଅପୂଜ୍ୟ ହୋଇଥାଅ ବସି ।
ବିଦୁର ବୋଲେ ଏ କୃତ୍ୟ କଲୁ ଦେବରାଜ
ଏହି ବାକ୍ୟପାଇଁ ବ୍ରହ୍ମା ହୋଇଲା ଅପୂଜ୍ୟ ।
ନବ ସୃଷ୍ଟି ଭ କରତା ଯେବଣ ପୁରୁଷ
ତାହାକୁହିଁ ଶାପଦେବା ବିହିଲୁ ଅବଶ୍ୟ ।
ଏ ଦ୍ୱାପର ଲୋକଙ୍କର ସାଧୁ ଜୀବନଟି
ଚର୍ମନୟନେ ଦେଖନ୍ତି ତୋ ପାଶରେ ଭେଟି
ଜଗତଜନଙ୍କ ହିତେ ଜଗନ୍ନାଥ ନାମ
ତୋତେ ସ୍ତୁତିକରିବାକୁ ମୁଁ ନୁହଇ କ୍ଷମ ।
ଅଜ୍ଞାନଜନର ନାଥ ତୁମ୍ଭ ଜ୍ଞାନଦାତା
ଏ ଘୋର ଭବବନ୍ଧନୁ ଏକା ଉଦ୍ଧାରନ୍ତା ।
ତୁମ୍ଭ ତାତ ତୁମ୍ଭ ମାତ ତୁ ଗୁରୁ ଦେବତା
ତୁ ଅଟୁ ସର୍ବ ଯୋନିର ଜଗତ କରତା ।
ଯାବତ ଏ ଚନ୍ଦ୍ର ସୂର୍ଯ୍ୟ ତାରା ଗ୍ରହ ଥିବ
ଜଗନ୍ନାଥ ନାମ ଗୋଟି ସର୍ବଦା ରହିବ ।
ତୁଳସୀ ବଲ୍ଲଭ ପାଦେ ସର୍ବଦା ମୋ ଆଶ
ଏ ଶୂଦ୍ରମୁନି ଶାରଳା ଜନ୍ମେ ଜନ୍ମେ ଦାସ ।

---

## ଶ୍ରୀକୃଷ୍ଣଙ୍କର ବିଦୁର ମନ୍ଦିରରେ ଅବସ୍ଥିତି ଓ ବିଦୁରଙ୍କୁ ବରଦାନ

ବିଲଙ୍କା ରାଜା ପୁଚ୍ଛିଲେ ଅଗସ୍ତି ମୁନିଙ୍କୁ
କୃଷ୍ଣ ବିଜେ କରିଗଲେ ବିଦୁର ଗୃହକୁ ।
ସେହି ସ୍ଥାନେ ଆଇ ପୁଣି କଲେ କେଉଁ କୃତ
ସେ କଥା ଶୁଣିବାପାଇଁ ବଳଇ ମୋ ଚିତ୍ତ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ଯେଉଁପରି କଥା ହେଲ କରୁଛି ଗାୟନ ।
ଅନେକ ବାଟେ ବିଦୁର ସ୍ତୁତିବାକ୍ୟ ଭଣି
କହନ୍ତେ ସନ୍ତୋଷ ହେଲେ କୃଷ୍ଣ ତାହା ଶୁଣି
ବାଳଲୀଳାର ଚରିତ କରନ୍ତେ ପ୍ରକାଶ
ବିଶେଷ ଭାବେ ପ୍ରସନ୍ନ ହେଲେ ହୃଷୀକେଶ ।
ଲିଆ ମୁଆଁ ଲଡ୍ଡୁ ଦୁଧ ସରର ପାପୁଡ଼ି
ପଞ୍ଚାମୃତ ଆଦି ସେହି ସ୍ଥାନେ ସ୍ଥାନେ ବାଢ଼ି

ଦୁଗ୍ଧ ସହିତେ ନବାତ ଖଣ୍ଡ ମିଶ୍ର କରି
ଅମୃତ ପାଣି କଦଳୀ ଗୁଣ୍ଡିକାରେ ଭରି ।
କାଞ୍ଚନ ଝାରି ଭିତରେ ସୁବାସିତ ପାଣି
କର୍ପୂର ବାସରେ ମନ ମୋହଇଯାଏ ଜାଣି ।
କୁମୁଦ ବେଣ୍ଟ ପୁଡ଼ାଏ ନଡ଼ିଆ ଗୁଡ଼ାଏ
କୌତୁକେ ମନୋହର କଲେ ତହିଁ ଦେବରାୟେ
କର୍ପୂର ତାମ୍ବୁଳ ଦେଲେ ଭୋଜନ ଶେଷରେ
ଗନ୍ଧ କସ୍ତୁରୀ ଲେପିଲେ ତାହାଙ୍କ ଶରୀରେ ।
ଜାଇ ଯୁଈ ମଲ୍ଲୀ ଚମ୍ପା କେତକୀ ଦମଣା
ବକୁଳ ତଗରପାଦ ଆବର କରୁଣା ।
ସୁବାସିତ କୁସୁମରେ ବାନ୍ଧି ଦେଲେ ଗଭା
ଗଳେ ତୁଳସୀର ମାଳା ଦେଉଁ କରେ ଶୋଭା
ଏହି ଭାବରେ ବିଦୁର କୃଷ୍ଣଙ୍କୁ ପୂଜିଲା
ଉତ୍ତମ ଭୋଜନେ ଋଷିମାନଙ୍କୁ ତୋଷିଲା ।
ବୋଇଲେ ହରି ବିଦୁର ଆଶ୍ଚର୍ଯ୍ୟ ବିଷୟ
ଆଗହୁଁ କି ସଜ୍ଜିଥିଲୁ ଏହି ସମୁଦାୟ ।
କୃଷ୍ଣାଜିନ ସୁନା ପିଢ଼ା ପୁଣି ସୁନା ଝରି
ଏହା ତୁ ସଜ୍ଜିଲୁ ଆଣି କି ଉପାୟ କରି ।
ବିଦୁର ବୋଇଲା ସ୍ୱାମୀ ଥିଲି ମୁହିଁ ଜାଣି
ମଧ୍ୟାହ୍ନରେ ଆସିବ ତୁମ୍ଭେ ଚକ୍ରପାଣି ।
ସଙ୍ଗତେ ଆସିବେ ପୁଣି ମୁନିଙ୍କ ସମାଜ
ତହା ଜାଣି ସଜ୍ଜିଥିଲି ମୁହିଁ ଦେବରାଜ ।
ସଂସାରରେ ଭକ୍ତିଭାବେ ଯେବେ ଯେ ସୁସ୍ନେହେ
ସଜ୍ଜାଦ୍ରବ୍ୟ ଅକାରଣ ନ ହୁଏ କେବେହେଁ ।
ଗୁଣସାଗର ନାଥ ତୁ ପରମ ମଣି ବୁଝ
ଅଦାତବ୍ୟ ପୁରୁଷଙ୍କ ସମ୍ପତ୍ତିହିଁ ବୋଝ ।
ସୁଭୂମିରେ କୃଷି ଜାତ ଯାହାର ସୁଗୋଷ୍ଠି
ସୁସ୍ଥ ସ୍ତ୍ରୀ ପ୍ରସଙ୍ଗ ଯାର ସୁଦେବତା ଦୃଷ୍ଟି ।
ସୁପଦାର୍ଥ ସୁଭୋଜନ ଯା ସୁପୁତ୍ର ଥାଏ
ସୂର୍ଯ୍ୟଦେବତାଙ୍କୁ ଯାର ହୃଦଗତେ ଲୟେ ।
ସୁମନ୍ତ୍ରୀ ସୁବନ୍ଧୁମାନେ ଯେ ସୁପଥରେ ଚଳ
ଏତେ ଲୋକଙ୍କ ବାନ୍ଧବ ଅଟ ବନମାଳୀ ।
କୁସ୍ଥାନରେ ବାସ କୁଜନମାନେ ଯାର ସେବା
କୁ ସ୍ତ୍ରୀ ସହିତ ବାସ କୁ ଦ୍ୱିଜେ ଦାନଦେବା ।
କୁବୁଦ୍ଧି କୁମନ୍ତ୍ରୀ ସଙ୍ଗ ଚଳେ ଯେଉଁ ଜନ
ନରକକୁ ପୁନଃ ପୁନଃ କରଇ ଗମନ ।

ସ୍ୱାମୀ ସଂସାର ସାଗର ଅପାର ଗଭୀର
ଲୋଭ ମୋହ ଅହଂକାରେ ଦଣ୍ଡେ ନାଶକର
ଅବଭୂଡ଼ିରେ ବନ୍ଧନ ଏ ସଂସାର ମାୟା
ଜଳବିମ୍ବ ସଦୃଶ୍ୟକ ମନୁଷ୍ୟର କାୟା ।
କୃଷ୍ଣ ବୋଇଲେ ବିଦୁର ତୁହି ସର୍ବଜ୍ଞାତା
ଯେତେକ କହିଲୁ ମୋତେ ସବୁ ତତ୍ତ୍ୱକଥା ।
ବହୁତ ଯତନୀ ହୋଇ ସେବାକଲୁ ମୋର
ତୃପତ ଭଜିଲି ମୁହିଁ ଏବେ ମାଗ ବର ।
ବିଦୁର ବୋଇଲା ଦେବ ପକ୍ୱ ରମ୍ଭା ଅଛି
ପ୍ରସନ୍ନ ହୋଇଣ ନାଥ ତହୁଁ ଭୁଞ୍ଜ କିଛି ।
ଭୋଜନରେ ଜୀର୍ଣ୍ଣକାଳ ହୋଇଲାକ ସହୁଁ
ଅମୃତପଣା କଦଳୀ ଭକ୍ତ ଆଣେ ତହୁଁ ।
ଚୋପା ଛଡ଼ାଇ ଦିଅଇ କେଶବଙ୍କ ହସ୍ତ
ଅତି ଶ୍ରଦ୍ଧାରେ ଭୁଞ୍ଜନ୍ତି ଦେବ ଜଗନ୍ନାଥ ।
ପ୍ରେମ ପୁଲକେ ବିଦୁର ଦିଅଇ ବଢ଼ାଇ
ଭୁଞ୍ଜନ୍ତି ଶ୍ରୀ ନାରାୟଣ ଅତି ତୋଷ ହୋଇ ।
ଭୋଳ ହୋଇଲା ବିଦୁର ନ ରହିଲା ଜ୍ଞାନ
କଦଳୀ ପକାଇ ଚୋପା କରଇ ପ୍ରଦାନ ।
ତା ଦେଖି ଦରହସିତ ହୋଇଲେ କେଶବ
ଜାଣି ପାରିଲେ ବିଦୁର ଅନ୍ତର୍ଗତ ଭାବ ।
ଚେତା ହୁଅନ୍ତେ ବିଦୁର ମହାଭୟ ପାଇ
ପଞ୍ଚାଙ୍ଗୁଳି ଦେଇ ପାଦେ ପଡ଼ିଲାକ ଶୋଇ ।
ବୋଇଲା ଅପ୍ରାଧ କଲି ମୁଁ ପାପିଷ୍ଠ ମନ୍ଦ
ଚକ୍ରେ ପେଷିଣ ମୋହର ଶିର ଏବେ ଛେଦ ।
ତରସ୍ତ ହୋଇ ବିଦୁର କାନ୍ଦରେ କମ୍ପଇ
ଉଠ ଉଠ ବୋଲି ଡାକ ଦିଅନ୍ତି ଯଦୁସାଇଁ ।
ଆସ ଆସ ବିଦୁର ତୁ ମୋହର ଭକତ
ତୋର ମନୋବାଞ୍ଛା ଆଜ କରିବି ତୃପତ ।
ବରମାଗ ବିଦୁରରେ ତୋର ମନୋବାଞ୍ଛା
ବୈକୁଣ୍ଠପୁରକୁ ଦେବି ଯେବେ ତୋର ଇଚ୍ଛା
ବିଦୁର ବୋଇଲା ଦେବ କଞ୍ଚନ ଭକତେ
କଞ୍ଚନ ସେବାରେ କିସ ମାଗିବି ମୁଁ ତୋତେ
ଗେ ବଢ଼ ବୋଇଲେ ଜାଣ ମନ ସ୍ଥିରା ମୂଳ
ସେବା କରିଲେ କି କେବେ ହୁଏ ସେ ନିଷ୍ଫଳ
ବିଦୁର ବୋଇଲା ମୁହିଁ ନୁହେଁ ଏଡ଼େ ସର
ଯେବେ ତୁ ପ୍ରସନ୍ନ ମୋତେ ହେଲୁ ଦେବହର

ନିଶ୍ଚୟ ସଂକଳ୍ପ ଯେବେ ବର ମୋତେ ଦେବ
ପୁତ୍ର ପୌତ୍ରାଦିରେ ପୂର୍ଣ୍ଣ ମୋର ପୁର ହେବ ।
ହେ ପ୍ରଭୁ ଯଦ୍ୟପି ମୋତେ ହୋଇଲ ପ୍ରସନ୍ନ
ମୋର ପୁରେ ଆସୁଥିବେ ନିତ୍ୟେ ବନ୍ଧୁଜନ ।
ମନ୍ଦିର ଗହଳ ହେବ ଦ୍ୱିଜ ଆଗମନେ
ପୂର୍ଣ୍ଣ ହୋଇଥିବ ଗୃହ ରନ୍ଧନ ଭୋଜନେ ।
ଧେନୁବତ୍ସା ପୂର୍ଣ୍ଣହେବେ ଗୋଶାଳେ ମୋହର
ପୁଣି ସେମାନେ ହୋଇବେ ନିରୋଗ ଶରୀର ।
ଘୃତାନ୍ନ ଗୋରସ ନିତ୍ୟ କରିବି ଭୋଜନ
ଅଦାତବ୍ୟ ପଣ ମୋର ନୋହୁ ଜନାର୍ଦ୍ଦନ ।
ଜନ୍ମ ହୋଇଲେ ଅବଶ୍ୟ ନାଶ ଯାଇ କାୟେ
ପ୍ରୟାଗ ବେଣୀ ପ୍ରାପତ ହେବ ଦେବରାୟେ ।
ଶୁଣିକରି ହସିଲେ ସେ ଦେବ ପୀତବାସ
ବୋଇଲେ ସବୁ ମାଗିଲୁ ନ ମାଗିଲୁ କିସ ।
ବିଦୁର ବୋଇଲେ ଦେବ ପାପ ପରିତ୍ୟାଗୀ
ଅବଧାନ ହୁଅ ଯାହା ନ ମାଗିଲି ମାଗି
ଦରିଦ୍ରତା ନ ମାଗିଲି ପୁଣି କ୍ରୋଧ ହିଂସା
ପରେ ପ୍ରାଭବ ଦେବାକୁ ନ ବଳେ ମନୀଷା ।
ଅଦେଶରେ ଜନ୍ମ ମୋର ନୋହୁ ନାରାୟଣ
ଦେବତା କି ଅବା ହେଉ ଅଥବା ବ୍ରାହ୍ମଣ ।
କାଶୀନଗରୀଠାରୁ ରୁଦ୍ରନଦୀ ପର୍ଯ୍ୟନ୍ତେ
ଚଣ୍ଡାଳ ଯୋନିରେ ପଛେ ଜନ୍ମାଇବୁ ମୋତେ
ଭକତି କରୁଣ ଦେବ ମାଗୁଅଛି ଯାହା
ପ୍ରସନ୍ନରେ ନାରାୟଣ ଦିଅ ମୋତେ ତାହା ।
ଅଗତିରେ ଜନ୍ମ ମୋତେ ନ କର ଗୋସାଇଁ
ଅପୂର୍ବ ଲକ୍ଷଣ ଦେବ ନ ମାଗିଲି ମୁହିଁ ।
ଅଭକ୍ତଗୋଷ୍ଠୀ ନ ଦେବୁ ମୋତେ ଜଗନ୍ନାଥ
ଅସୁର ଭୋଗ୍ୟର ଗ୍ରାସ ନ କର ପ୍ରାପତ ।
କେତେ ସାଙ୍ଗ ନ କରିବ ତୋତେ ଦେବହରି
ନାରାୟଣ ନାମ ଥିବ ହୃଦରେ ମୋହରି ।।
ଜଗନ୍ନାଥଙ୍କ ଭକ୍ତଙ୍କୁ ସଦା ମିଳେ ଯାହା
ସଂସାରଜନଙ୍କୁ ଦେବ ପ୍ରାପ୍ତ କର ତାହା ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ନ ଜାଣଇ ଭକ୍ତି ସ୍ତୁତି ତୁମ୍ଭଙ୍କୁ କହୁଛି ।
ବିଦୁର ହୃଦଗତରେ ବାଞ୍ଛା କଲ ଯାହା
ତଥାସ୍ତୁ ବୋଲି କହିଲେ ତାଙ୍କୁ ଚକ୍ରବାହା ।

ମୁକ୍ତିର କାରଣ ସେହି କୃଷ୍ଣ ନାମ ଗୋଟି
ଯାହାର ଦର୍ଶନେ ସବୁ ଦୋଷଯାଏ ଫିଟି ।
ଭାରତର ଉଦ୍‌ଯୋଗ ପର୍ବ ଅଟେ ସାର
ଶ୍ରୀବ୍ୟାସଦେବ ମୁଖରେ ଯା କଲେ ପ୍ରଚାର ।
ସବୁ ତ୍ୟାଗ କରି ନରେ ଅଧ୍ୟୟନ କର
ଚତୁର୍ବର୍ଗଫଳ ପ୍ରାପ୍ତ ହେବ ନିରନ୍ତର ।
ସବୁ ଛାଡ଼ି ଜଗନ୍ନାଥ ନାମେ କର ଭେଳା
ମୁକ୍ତିପଦ ପ୍ରାପ୍ତ ହେବ କହଇ ଶାରଳା ।

## କୁନ୍ତୀ ଓ କୃଷ୍ଣଙ୍କର କଥୋପକଥନ ଶ୍ରୀକୃଷ୍ଣ ଧୃତରାଷ୍ଟ୍ର ନିକଟେ ପ୍ରବେଶ ଓ ଅନ୍ଧବ୍ରାହ୍ମଣକୁ ଚକ୍ଷୁଦାନ ବିବରଣ

ଏଥୁଅନ୍ତେ ଚଇତନ ମୁନିଙ୍କି ପୁଚ୍ଛିଲ
ଅଳ୍ପ ଭକ୍ତିରେ ବିଦୁର ବିହ୍ବ ବାଞ୍ଛା କଲ ।
ବିଦୁର ଘରେ ରହିଲେ ଦେବ ଶ୍ରୀବତ୍ସଲା
ଦିନ ହେଲା ଆସି ଚତୁର୍ଦ୍ଦଶ ଦଣ୍ଡ ବେଳା ।
ଯେଉଁକାଳେ ଯୁଧିଷ୍ଠିର ଅରଣ୍ୟକୁ ଗଲେ
କୋଇନ୍ତା ଦେବୀ ବିଦୁର ମନ୍ଦିରେ ରହିଲେ ।
ଶ୍ରୀକୃଷ୍ଣ ବିଜୟ କଲେ ବିଦୁର ଭବନ
କୋଇନ୍ତା ସଙ୍ଗେ ହେଲ କି କଥୋପକଥନ ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ନାରାୟଣଙ୍କ ଆଗମ ଶୁଣି କର୍ଣ୍ଣପଥେ
କୋଇନ୍ତା ଦେବୀ ମନ୍ଦିରୁ ଆସିଲେ ତ୍ୱରିତେ ।
ଜଗତଜୀବନ ନାଥ ତାହାଙ୍କୁ ନିରେଖି
ଅତି ବେଗରେ ଉଠିଲେ ଆସନ ଉପେକ୍ଷି ।
ବିନୟ ଭାବରେ କୃଷ୍ଣ ହେଲେ କୃତାଞ୍ଜଳି
ଦେଖି ମହାଶୋକ କଲେ ଭୋଜର ଦୁଲାଳୀ ।
ତହୁଁ ସେ ବୋଇଲେ କୋନ୍ତିଭୋଜର ଦୁହିତା
ହେ କେଶବ ଦେଖ ତୁମ୍ଭେ ମୋହର ଅବସ୍ଥା
ବାବୁ ଅତି ଭାଗ୍ୟବନ୍ତୀ ଅଟଇ ଗାନ୍ଧାରୀ
କୁଳଅନୁରୂପେ ପୁତ୍ର ଅଛି ଜାତକରି ।
ଗୋଲକ ବୃକ୍ଷ ବିବାଦ ହେଲ ବାଲ୍ୟକାଳେ
ବ୍ୟାସ ଥାଇ ଧୃତରାଷ୍ଟ୍ରେ ଦେଲେ ଯୋଗବଳେ
କୃତ୍ତିକା ବୃଷରେ ଜାତ ସେ ବ୍ରହ୍ମଅସୁରୀ
ଜ୍ୟେଷ୍ଠ ଅମାବାସ୍ୟା ଦିନ ଅଛି ଅବତରି ।

ଦେଖ ହରି ତାର ପୁତ୍ର କୁଞ୍ଜଗଳ ରାଜା
ଅମରାଧିନାଥ ପ୍ରାପ୍ତେ ପାଇଅଛୁ ପୂଜା ।
ଦୁର୍ବାସା ପ୍ରସାଦେ ପାଇଅଛୁ ଜପମାଳ
ପଣ୍ଡୁ ରାଜା ଭାର୍ଯ୍ୟା ମୁହିଁ ଭୋଜର ଦୁଲଣୀ ।
ସ୍ୱାମି ଧର୍ମଅଂଶେ ଜାତ ହୋଇଲା ଯୁଧିଷ୍ଠି
ପବନ ଅଂଶରେ ହେଲା ଭୀମ ପୁତ୍ର ଗୋଟି ।
ଇନ୍ଦ୍ର ଅଂଶେ ଜାତ ହେଲା ମୋର ଫାଲ୍ଗୁନ
ଦିଶିକୃଷ୍ଣ ନାମ ଦେଲୁ ତାକୁ କୋଳେ ଘେନି
ନକୁଳ ସହଦେବ ଯେ ଅଶ୍ୱିନିର ସୃଷ୍ଟ
ସେହି କୁମାରଙ୍କ ଅଛୁ ଆକାଶରେ ଘୋଷ ।
ହରି ଏମନ୍ତ ଶୁଭରେ ପୁତ୍ର କଲି ଜାତ
ସେ ପୁଅେ ହୋଇଲେ ଷଣ୍ଢୋତଳ ବୃଷବତ ।
ସିଂହ ହୋଇ ଶୃଗାଳରେ ହେଲେ ସେହୁ ଗଣ୍ୟ
ଭିକ୍ଷା ମାଗି ବଞ୍ଚୁଛନ୍ତି ଯେହ୍ନେ ଭିକ୍ଷୁଜନ ।
ହେ ହରି କୋଉ ପଡ଼ିଣ ମୋର ଦେହ ଛୁଡ଼ୁ
ଏ ଦେହ ବିଧ୍ୱଂସ ହେଉ ପେଟ ମୋର ପୋଡ଼ୁ
ହରି ଏମନ୍ତେ ବଞ୍ଚନ୍ତି ସେହୁ ପାଞ୍ଚଜଣ
କହ କେତେ ଦିନ ଥିବେ ଏମନ୍ତ ହୋଇଣ ।
ହରି ହେ ଗହନ ବନେ କନ୍ଦମୂଳ ପାଇଁ
ଆହାର ନିମନ୍ତେ ବନେ ବୁଲନ୍ତି କି ଯାଇ ।
କି ଅବା ବନସ୍ତେ ପଡ଼ି ମୋର ପୋଏ ମଲେ
ଚକ୍ଷୁବର୍ତ୍ତ ନ ପାଇଲି ସବେ କେଉଁଣେ ଗଲେ ।
ଅପୁତ୍ରକ କାହିଁ ମୋତେ ବିଧାତା ନ କଲା
ପୁତ୍ରଙ୍କର କଷ୍ଟ ଦେଖି ଏ ପ୍ରାଣ ନ ଗଲା ।
ଏତେବୋଲି ଦେବୀ ତହୁଁ ଶୋକେ ମୂର୍ଚ୍ଛିଲେଟି
କେଉଁଣେ ଗଲେ ମୋର ଅନ୍ଧଲଉଡ଼ି ଯାଉଅଛି ।
ବନେ ପଶି କନ୍ଦମୂଳ କ୍ଷୁଧାରେ ଭକ୍ଷନ୍ତି
କେବେ ଆହାର ନ ମିଳେ ଉପାସେ ରହନ୍ତି ।
ଗଲେ ସେ ବିଦୁର ଘରେ ଛାଡ଼ିଦେଇ ମୋତେ
ଆହାର ନିମନ୍ତେ ଅବା ଖାଇଲେ ଦଇତ୍ୟେ ।
ଗୋ ବନ୍ଧ ବୋଇଲେ ମାତ ଧୈର୍ଯ୍ୟଧର ଚିତ୍ତେ
ଅକାରଣେ ଅସାଷ୍ଟମ କାହିଁର ନିମନ୍ତେ ।
ପୁଅେ ତୋହର ବାଞ୍ଛିଲେ ଥାଇ ଘୋରବନେ
ଦୈତ୍ୟ ପ୍ରତିପାଳି ଦିନ ନେଲେ ବହୁପୁଣ୍ୟେ ।
ଅନେକ ଦାନବଙ୍କୁ ଯେ ମାଇଲେ ସମରେ
ମହୀ ଭାର ଉଶ୍ୱାସିଲେ ତୋହର କୁମରେ ।

ଅନ୍ଧକକୁ ବଧ କଲା ନକୁଳ କୁମାର
ଲୌହାସୁର ବଧ କଲା ସହଦେବ ତୋର ।
ନିବାତ କବଚ ଧୂମ୍ର ଲୋଚନର ନାତି
ଜମ୍ଭୁ ଦଇତ୍ୟର ସେହି ଅଟଇ ସନ୍ତତି ।
ଆକାଶରେ ନିରୋଧିଲା ଯାଇ ବାରସ୍ୱାତି
ଉପୁଯାଇ ତେଜ୍ୟା କଲେ ସ୍ୱର୍ଗ ସୁରପତି ।
ମାଗେ ଚୌରାଅଶୀ ବେଳ ଧାଡ଼ିଦେଲା ସ୍ୱର୍ଗେ
ବହୁଧନ ରତ୍ନ ଜୁରି କଲା ଦୈତ୍ୟ ରାଗେ ।
ବିଦୁର ବୋଇଲା ଦେବ ନିବାତକବଚ
ସହସ୍ରାକ୍ଷର ହୋଇଲା କାହିଁ । ଶିରପକ୍ଷ ।
କୃଷ୍ଣ ବୋଇଲେ ମହିଷା ବଧ ହେବା କାଳେ
ଧୂମ୍ର ଲୋଚନ ମରିଲା ଦୁର୍ଗା କୋପାନଳେ ।
ଜମ୍ଭୁ ଦଇତ୍ୟ ବୋଲିଣ ତାର ନିଜ ସୁତ
ସେ ପୁଣି ମନ୍ଥନ କଲା ଯାଇ ଦେବତାତ ।
ଇନ୍ଦ୍ରଦେବତା ତାହାକୁ ରଣେ ନାଶ କଲା
ତେଣୁ ଇନ୍ଦ୍ର ଜମ୍ଭଭେଦୀ ନାମକୁ ବହିଲା ।
ଜମ୍ଭଦୈତ୍ୟ ପୁତ୍ର ବଜ୍ର କବଚ ଦଇତ୍ୟ
ଅମର ନିରୋଧ କଲା ଅମିଣ ଉଦ୍ଧତ ।
ଇନ୍ଦ୍ର ତାକୁ ନାରାୟଣ ହସ୍ତେ ମରାଇଲା
ନିବାତ କବଚ ନାମେ ପୁତ୍ର ଉପୁଜିଲା ।
ପିତୃ ପିତାମହଙ୍କର କଥା ମନେ ଧରି
ଚଉରାଶୀ ଥର କଲା ସ୍ୱର୍ଗେ ହୁରିଜୁରି ।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବ୍ରହ୍ମା ଆବର ବହ୍ନି
ଦଶଦିଗପାଳ ଆଦି କଶିଲାକ ପୁଣି ।
ବୃହସ୍ପତି କହିଦେଲେ ମୃତ୍ୟୁଭେଦ ତାର
ଅର୍ଜୁନକୁ ଘେନିଗଲେ ମାତଳି ସଙ୍ଗର ।
ଚଉଷଠି କୋଟି ସୈନ୍ୟ ତାର ସଙ୍ଗେ ଥିଲେ
ଏକା ଦିବା ରାତ୍ରକରେ ଅର୍ଜୁନ ନାଶିଲେ ।
ହିରଣ୍ୟକବଚ ନାମେ ତାର ପୁତ୍ର ଥିଲା
ଦିଗମ୍ବର ବେଶେ ଯୁଧିଷ୍ଠିର ହରିନେଲା ।
ପୁଣିହିଁ ସମରେ ତାକୁ ବଧିଲେକ ପାର୍ଥ
କୌରବ ଘୋଷଯାତ୍ରାରେ ଜଣେ ଚିତ୍ରରଥ ।
ଦୁର୍ଯ୍ୟୋଧନକୁ ଗନ୍ଧର୍ବ ନେଲା ବନ୍ଧକରି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ପଳାଇଲେ ଡରି ।
ଦୁର୍ଯ୍ୟୋଧନେ ବାନ୍ଧିକରି ନେଲା ଚିତ୍ରରଥ
ଚଳେ ନିର୍ଭୟେ ପଞ୍ଚାଶ ସସ୍ର ପୁଣ ପଥ ।

ମାଗୋ ଏବେ ଜାଣ ତୋର ସୁତ ମହିମ ଟି
ଦୁର୍ଯ୍ୟୋଧନ ପାଇଁ ଯୁଦ୍ଧ କରିଲ କର୍ଣ୍ଣଟି ।
ଚିତ୍ରସେନ ଗନ୍ଧର୍ବଙ୍କୁ ସମରେ ଜିଣିଲ
ଦୁର୍ଯ୍ୟୋଧନ ନୃପତିର ଦୁର୍ଗତି ଫେଡ଼ିଲ ।
ମେରୁଶୃଙ୍ଗ ଗଜ ଜଳୁଁ କୁନ୍ତୀଙ୍କୁ ଧରିଲ
ଭୀମସେନ ଭୁଜଙ୍କରେ ସେହୁ ନାଶଗଲା ।
ଦ୍ରୌପଦୀଙ୍କୁ ଜୟଦ୍ରଥ ହରିନେଲା ବନୁ
ଅନେକ ଅବସ୍ଥା ତାକୁ ଦେଲେ ତୋର ସୂନୁ
ରାଗେ ଭୀମ ମୋଡ଼ୁଥିଲ ତାର ମୁଣ୍ଡଗୋଟି
ଦୁଃଶୀଳା ନିପ୍ରୋଧେ ତାକୁ ରଖିଲେ ଯୁଧିଷ୍ଠି
ପୁଣି ଭୀମ ପାଞ୍ଚବେଣି କଲ ତାର କେଶ
କପାଳେ କୁଟାଇ ଦେଲ ପାଣ୍ଡବଙ୍କ ଦାସ ।
ଅନେକ ମହିମା ତୋର ସୁତଙ୍କର କଥା
ତାହା କହିବାକୁ କାଏ ହେବ ସାମରଥା ।
ମାଗୋବିରାଟେତୋପୁତ୍ରେ ଗୋପ୍ୟ ହେଲେଯାଇ
ବ୍ୟାଘ୍ର ମାଲକୁ ମାଇଲେ ନ ଜାଣିଲେ କେହି
ଶତସିଂହ ବଳ ଅଟେ ବିରାଟର ଶଳା
ଦ୍ରୌପଦୀ ପାଇଁକି ଭୀମ ମାରେ ଚପି ଗଳା ।
ଷାରବାହୁ ତ୍ରିଗର୍ତ୍ତର ଦପକୁ ଧ୍ୱଂସିଲେ
ବିରାଟକୁ ଚିରସ୍ଥାୟୀ ସିଂହାସନ ଦେଲେ ।
ଗୋ ହରଣେ ମତ୍ସ୍ୟଦେଶେ ଗଲେ କଉରବେ
ଅଷ୍ଟାଦଶ କ୍ଷୌଣୀ ବଳ ଘେନିଣ ସମ୍ଭବେ ।
ଉତ୍ତରକୁ ସଙ୍ଗେ ଘେନ ସୁଭଦ୍ରାର ନାହା
ଏକା ହୋଇ କୌରବଙ୍କୁ ଯେହ୍ନେ କଲ ଯାହା
ସମୁଦ୍ର ଫେନ ପରାଏ ସର୍ବେ ଗଲେ ଲେଟି
ପରକାର୍ଯ୍ୟ ବୋଲି ଶିର ନ ପକାଏ କାଟି ।
ଯୁଧିଷ୍ଠି ଦେବ ତୋହର ପ୍ରତ୍ୟକ୍ଷେ ଧର୍ମାତ୍ମା
ଯମ କାଳଦଣ୍ଡ ସଙ୍ଗେ କାଳେବର ଭୀମା ।
କୋଟିଏ ସିଂହର ବଳ ଯେଉଁ ବଳରାମେ
ସୁଭଦ୍ରା ହରଣେ ପାର୍ଥ ଜିଣିଲ ସଗ୍ରାମେ ।
ଅର୍ଜୁନ ମହିମା ମୋତେ ଅଗୋଚର ହାଦେ
ତାହାକୁ ଡରିଲ ଶତଧନୁର ବିବାଦେ ।
ଇନ୍ଦ୍ର ଦେବତାଙ୍କୁ ଜିଣି ଖାଣ୍ଡବ ଦହିଲ
ଅଗ୍ନି ଲୁହୁବୁହୁ ବ୍ୟାଧି ମନ୍ଦାଗ୍ନି ନାଶିଲ ।
କପଟରୂପେ ଶିବଙ୍କୁ ଜିଣିଲ ଅର୍ଜୁନ
ଅକ୍ଷ ତୂଣ ପାଶୁପତ ଦେଲେ ତ୍ରିଲୋଚନ ।

ସୁଗନ୍ଧିକା ହରଣରେ ହନୁ ବିବାଦରେ
ସାଗର ବାନ୍ଧିଲ ସେହୁ ଶର ସଂଯୋଗରେ ।
ହନୁଙ୍କେ ବସାଇଲ ସପତ ବ୍ରହ୍ମାଣ୍ଡ
ଅବହେଳେ ବହିଲ ସେ ମହୀ ନବଖଣ୍ଡ ।
ପାଞ୍ଚାଳ ଦେଶର କଥା ଦେଖିଛୁ ପ୍ରତ୍ୟକ୍ଷେ
ଏକା ଅର୍ଜୁନ ଜିଣିଲ ରାଜାଗଣ ଲକ୍ଷେ ।
ମାଗୋ ନିରଞ୍ଜନ ବୋଧି ବୈକୁଣ୍ଠକୁ ଗଲ.
ଅନାଦିନାଥ ତାହାକୁ ମନଭେଦ ଦେଲ ।
ପାଣ୍ଡୁବାସୁରକୁ ମାରି ଦୁର୍ଯ୍ୟୋଧନ ତାରି
ପାଣ୍ଡବ ନାମ ବହିଲେ ଦ୍ୱିଶାସୁରେ କରି ।
ବିରାଟ ରାଜ୍ୟେ ଅଜ୍ଞାତ ବାସକୁ ସେ ସାରି
ଏବେ ବାରୁଣାବନ୍ତରେ ଛନ୍ତି ବିଜେକରି ।
ଅନେକ ନୃପତି ଆସି ଖଟିଛନ୍ତି ପାଶ
ମୋତେ ହକାରିଣ ସେହୁ କରିଲେ ଆଦେଶ ।
ସ୍ୱାମୀଙ୍କ ଆଦେଶେ ମୁହିଁ ଅଇଲଇଁ ବେଗି
ଯାଉଛି ଦୁର୍ଯ୍ୟୋଧନଙ୍କୁ ପାଞ୍ଚଗ୍ରାମ ମାଗି ।
ମାଗୋ ଅନନ୍ତ ବ୍ରହ୍ମାଣ୍ଡ ମୋର ହୃଦଗତ
ଦେଖ ତୋହର ସୁତଙ୍କ ହୋଇଛି ମୁଁ ଭୃତ୍ୟ
ଦେଖ ଏବେ ମୋ ମହିମା ଉଦ୍‌ଯୋଗ ଅନ୍ତେ
ଶେଷେ ସମସ୍ତ ସମ୍ପଦ ଦେବଇଁ ମୁଁ ତୋତେ
ତୁ ମହାସାଧବୀ ମାଗୋ ଅନାଦି ଅପର୍ଣ୍ଣା
ଏ ନବଦ୍ୱୀପରେ ହେବୁ ଶିରୋମଣି ସିନା ।
ସଂସାର ଜନଙ୍କ ହିତେ ହେଲ ମହାଦୁଃଖୀ
ଏବେ କଷ୍ଟକାଳ ଅନ୍ତେ ହେବ ମହାସୁଖୀ ।
ମଧ୍ୟସ୍ଥପଣେ ପେଷିଲେ ମୋତେ ଧର୍ମରାୟେ
ମାଗିବି ମୁଁ ପଞ୍ଚଗ୍ରାମ ହୋଇଣ ବିନୟେ ।
ପଞ୍ଚଗ୍ରାମ ଯୁକତରେ ଦିଏ ମୋତେ ଯେବେ
ହୋଇବ ସନ୍ଧି ସମର ନ ହୋଇବ ତେବେ
ପଞ୍ଚଗ୍ରାମ ନ ଦିଅଇ ଯେବେ କୁରୁପତି
ମୋର ଅଭିମାନେ ତାର ତୁଟିବ ବିଭୂତି ।
ବିଦୁର ବୋଲେ ଯୁଧିଷ୍ଠି ବଡ଼ ମନ୍ଦ କଲ
ତୋତେ କିପାଁ ମଧ୍ୟସ୍ଥ ପଣରେ ପେଷିଲ ।
ସେହି ସଭରେ ବସନ୍ତି ଯେତେ ସର୍ବେ ମନ୍ଦ
କର୍କଶ ମଧୁପିଙ୍ଗଳ ସେ ମାନଗୋବିନ୍ଦ ।
ଶକୁନି କୂଟେ ତାକୁଇ କରିଇବ ନାଶ
ଦୁର୍ଯ୍ୟୋଧନ ବନ୍ଦିକରି ନାଶିଛି ତା ବଂଶ ।

ସ୍ୱାମି ହେ ଦୋଶୃଷ୍ଟ ଈର୍ଷ୍ୟା ଦୁଯୁକ୍ତ ମନ୍ତ୍ରୀ
ଅଶ୍ରଦ୍ଧାଯୁକ୍ତ ମଇନ ଖଳଲୋକେ ପ୍ରୀତ ।
ଅହଲ୍ୟା ବଳନ୍ତୀ ବୋହୁ ଅଗ୍ନିବତ ପୁତ୍ର
ଏତେ ଲୋକଙ୍କୁ ବିଶ୍ୱାସ କଲେ କୁଳ ହତ ।
ଶକୁନି ବଂଶ ନାଶିବ ତାର ମନ୍ତ୍ରୀପଣେ
ମଧୁପାନ ନାରାୟଣ ହେଲୁ ଅକାରଣେ ।
ତସ୍କର ସଭାରେ ଯେସନେ ପୌରାଣିକ ହରି
ଦୈତ୍ୟ ସଭାରେ ବିଷ୍ଣୁଙ୍କୁ ବନ୍ଦନା କି କରି ।
ଅନ୍ଧ ଚିହ୍ନି ପାରିବ କି କିଏ ରତ୍ନମଣି
ବଧିର ଶୁଣିବ କାହିଁ କମ୍ବୁଘୋଷ ବାଣୀ ।
ଚଣ୍ଡାଳ ସଭାରେ ଯେସନେ ହରିବଂଶ ପୋଥି
ପିଶାଚ ସଭାରେ କିବା ବ୍ରାହ୍ମଣେ କରନ୍ତି ।
ଯଦି ଗମନ କରିବ ତୁମ୍ଭେ ଦେବରାଜ
ନିଶ୍ଚେ ସେଠାରେ କହୁଛୁ ପାଇବଟି ଲାଜ ।
ବିଦୁର ବହୁତ ରୂପେ କହେ ଭଗ୍ନ କରି
କଣ୍ଠାଗତକାଳେ ପ୍ରାଣୀ ମନ୍ଦବୁଦ୍ଧି ଧରି ।
ମଦ୍ୟପାନପଣ ଦେଖି ବିରୁଦ୍ଧ ଚିନ୍ତେ
ଯାଉଛ ତାର ସମ୍ପଦ ହରିବା ନିମନ୍ତେ ।
କୃଷ୍ଣ ବୋଇଲେ ଏମନ୍ତ ନ କହ ବିଦୁର
ଯୁଧିଷ୍ଠିର ମହାପ୍ରଭୁ ମୋହର ଠାକୁର ।
ସେହି ଧର୍ମରାଜାଙ୍କ ମୁଁ ଅଟେ ବଶବର୍ତ୍ତୀ
ଦେଉ ବା ନ ଦେଉ ମୋର ଯିବାର ଯୁକତି
ଯୁଧିଷ୍ଠି ତାଙ୍କ ସୋଦର ମୁହିଁ ମଧୁପାନ
ମୋତେ ନିରାଶ କଲେ ତୋ ବାକ୍ୟହେବ ସତ
ଯୁଧିଷ୍ଠିର ଦୟା ଅବା କରିବେଟି ହୃଦେ
ଖ୍ୟାମାର୍ଜୁନ ଟକାଇବେ କେମନ୍ତେ ପ୍ରମାଦେ ।
ଦ୍ରୌପଦୀର ଯେ ପ୍ରତିଜ୍ଞା କହିତ ନ ପାରି
ତାଙ୍କ ବଚନ ଅନ୍ୟଥା କେ ପାରିବ କରି ।
ପୁଣି କୋଇନ୍ତାବୋଇଲେ ଯେତେକଷ୍ଟ ଦେଲେ
କ୍ଷତ୍ରିକୁଳେ ଜନ୍ମି କିଏ ସହିବ କେବେଳେ ।
ମୋହର ଧୃତରାଷ୍ଟ୍ରଙ୍କ ଶୃଗାଳ ସମାନ
ଧିକ ଧିକ ହେଉକିନା ତାଙ୍କର ଜୀବନ ।
ଆମ୍ଭର ଟକା ସୋଦର ଅଟୁ ତୁ ଯୁକତେ
କର ତୁ ଉପାୟ ଯୁଦ୍ଧ ହୋଇବ ଯେମନ୍ତେ ।
ତୁମ୍ଭ ଗୋବିନ୍ଦ ସମର ଯେବେ ନ କରାଉ
ମୋର ରୁଧିର ମିଶାଇ ତୁ ମିଷ୍ଟାନ୍ନ ଖାଉ ।

ତୁ ଯେବେ ପ୍ରବୋଧି କରି ଆଣୁ ବନମାଳୀ
ତୋର ଆଗରେ ପଶିବ ନିଶ୍ଚେ ଅଗ୍ନି ଜାଳ ।
କୋଇନ୍ତାଙ୍କର ବଚନ ଶୁଭ ଅନୁକୂଳେ
ବିଜେକଲେ ନାରାୟଣ ମଧ୍ୟାହ୍ନର ବେଳେ ।
ସଙ୍ଗେ ଅଛନ୍ତି ବିଦୁର ସବୁ ର'ମାନେ
ପ୍ରବେଶିଲେ ଜନାର୍ଦ୍ଦନ ହସ୍ତିନା ଭୁବନେ ।
ଧୃତରାଷ୍ଟ୍ରର ଭବନେ ହୋଇଲେ ପ୍ରବେଶ
ସମସ୍ତେ ଦେଖିଣ ତାଙ୍କୁ ହୋଇଲେ ହରଷ ।
ସଞ୍ଜୟ ବୋଇଲ ରାଜା ଶୁଣ ଧୃତରାଷ୍ଟ୍ର
ନାରାୟଣ ବିଜେ କଲେ ତୋହର ନିକଟ ।
ଅମ୍ବିକା ନନ୍ଦନ ଶୁଣି ବହୁତ ହୃଦୟେ
ଆସ୍ଥାନକୁ ଛାଡ଼ି ଉଭା କୃଷ୍ଣଗଳ ରାୟେ ।
ବୋଇଲ ତୋ ପଦ୍ମପାଦ ଦିଅ ବନମାଳୀ
ଲଲାଟେ ଘେନିବି ତୋର ପାଦତଳ ଧୂଳି ।
ଶ୍ରୀକୃଷ୍ଣଙ୍କର ଚରଣ ଧୃତରାଷ୍ଟ୍ର ଶିରେ
ସଞ୍ଜୟ ଢାଳିଲେ ଜଳ ଚରଣ ଉପରେ ।
କୋଟି କୋଟି ତୀର୍ଥ ଯାର ଚରଣରେ ସ୍ଥିତ
ତାହା ଅଭିଷେକ କଲା ଧୃତରାଷ୍ଟ୍ର ସତ ।
ଅନ୍ଧ ବୋଇଲା ହେ ସ୍ୱାମୀ ମୋର ବଡ଼ପୁଣ୍ୟ
କି ଦେଇ ତୃପ୍ତି କରିବ ତୋତେ ଜନାର୍ଦ୍ଦନ
ଅମୂଲ୍ୟ ରତନ ଦେଇ କରନ୍ତି ବା ପୂଜା
ବରୁଣ ଦୁହିତା ଲକ୍ଷ୍ମୀ ତୋହର ଭାରିଯା ।
ଗୀତ ଗାୟନ କରି ବା ତୋଷନ୍ତି ତୋ ମତ
ବୀଣାପାଣି ଶାରଦାର ଗୀତ ଶୁଣୁ ନିତ ।
ନୃତ୍ୟ ଆରମ୍ଭ କରାଇ ତୋଷନ୍ତି ତୋ ମନ
କୋଟି କୋଟି ଅପସରୀ ତୋହର ଅଧୀନ ।
ତପ କରିବାକୁ ମୋର ନାହିଁ ଯେ ଶକତି
ଶତ ସହସ୍ର ସେବାରେ ନ ଲଭୁ ତୃପତି ।
ବିଦୁର ବୋଇଲା ସ୍ୱାମୀ ବୋଲୁ ହୃଡ଼ କରି
ସମସ୍ତଙ୍କୁ ପାଳୁଛନ୍ତି ଦୁଷ୍ଟଙ୍କୁ ନିବାରି ।
ଭକତ ବତ୍ସଳ ଦୟାମୟ ନାମଗୋଟି
ଦର୍ଶନେ ଅଜ୍ଞାନପଟଳ ନେତ୍ରୁ ଯାଏ ଫିଟି ।
ଶୁଣି ଧୃତରାଷ୍ଟ୍ର କହେ ଏ ପ୍ରକୃତ କଥା
ସେ ମହିମା ଜାଣିବାକୁ ମୁଁ କି ସାମରଥା ।
ଶୁଣ ଆହେ ମହାତମା ବୋଇଲେ ବିଦୁର
ବୈତରଣୀ କୂଳେ ଅଟେ କରବୀର ପୁର ।

ଲକ୍ଷେ ଅଶୀସହ ଦ୍ୱିଜ ବସନ୍ତି ସେ ଗ୍ରାମେ
ଛୁଦ୍ରଶ୍ରବଣ ବୋଲଣ ଏକଦ୍ୱିଜ ନାମେ ।
ଜନ୍ମରୁ ଅନ୍ଧ ଦରିଦ୍ର ପୁଣି ସେ ଅଟଇ
ଶାସନ ବାଶାନ୍ୟେ ଗୃହକର ରହିଥାଇ ।
ଏକଭାର୍ଯ୍ୟା ଏକପୁତ୍ର ଅଟଇ ତାହାର
ସେ ଅନ୍ଧ ସମ୍ବଳ ଭିକ୍ଷା କେବଳ ମାତର ।
ବାଲ୍ୟତ କାଳରୁ ତାର ନିରଞ୍ଜନ ଦୀକ୍ଷା
ଏକଗ୍ରାମ ଛଡ଼ା କାହିଁ ନ ମାଗଇ ଭିକ୍ଷା ।
ସମପ୍ରେକ ନାରାୟଣ ବହିଲେ ଜଷଣ
ଅଦଭୂତେ ଉତପାତ ହେଲା ସେ ଗ୍ରାମେଣ ।
ସେହି ନଗ୍ରକୁ ବ୍ରାହ୍ମଣ ଭିକ୍ଷାମାଗି ଗଲ
ସେ ନଗର ଜନଶୂନ୍ୟ ହୋଇଛୁ ଦେଖିଲ ।
କୁଡ଼ କୁଡ଼ ପଡ଼ିଅଛୁ ପାଣି ଦ୍ରବ୍ୟ ସାର
ଘର ଦାଣ୍ଡ ପିଣ୍ଡାଦରେ ପଡ଼ିଛୁ ଅପାର ।
ପାଟପଟନୀ ଖଣ୍ଡୁଆ ନାନାଜାତ ଶାଢ଼ୀ
ବାତ ବଧାତରେ ସବୁ ଯାଉ ଛନ୍ତି ଉଡ଼ି ।
ସୁବାପିତ ଚଣ୍ଡୁଳ ଶ୍ରୀଜଗନ୍ନାଥ ଯୋଗ୍ୟ
ଦେଖିଣ ବ୍ରାହ୍ମଣୀ ତାହା ସବୁ କଲ ତ୍ୟାଗ ।
ନଗର ବୁଲିଣ ସେଡ୍ରୁ ସମସ୍ତ ଦେଖିଲ
ନରନାରୀ ନ ଦେଖି ସେ ବାହୁଡ଼ି ଅଇଲ ।
ନିଃଶ୍ୱ ସ ଛାଡ଼ି ଉର୍ଦ୍ଧ୍ୱ ବାହୁଡ଼େ ବ୍ରାହ୍ମଣୀ
ଦରିଦ୍ର ହୋଇଣ ସତ୍ୟ ନ ଛାଡ଼ିଲ ପୁଣି ।
ବାଳୁତପୁତ୍ର କାଖରେ ଭିକ୍ଷାପାତ୍ର ହାତେ
ନିଃଶ୍ୱ ସ ଛାଡ଼ି ବୋଇଲ ବ୍ରାହ୍ମଣ ଅଗ୍ରତେ ।
ବ୍ରାହ୍ମଣ ବୋଇଲ କହାଁ ବଳଲ ଗୋ ମନ
ବହୁତ ଇଚ୍ଛାର ପୁଣି ହେଲ ଆଜଦନ ।
ବ୍ରାହ୍ମଣୀ ବୋଇଲ ପଣ୍ଡା ହେଲା ଏ କ କୃତ୍ୟ
ଜନ୍ମରୁ ଦରିଦ୍ର ଆମ୍ଭେ ଭିକ୍ଷା ଆମ୍ଭ ବୃତ୍ତ ।
ତନ୍ତ୍ରିକ ଜଷଣ ଆଣି ହ୍ୟାରା ବହିଲେ
ଦେଖିଲ ନଗରୁଯ ଜ ସବେଁ ପଳାଇଲେ ।
ପଣ୍ଡା ହେ ଶଉରେ ଆଉ ପ୍ରୟୋଜନ କସ
ଅଥବା ଅନଳ ଜାଳ ତହିଁ ହେବା ଖାସ ।
ବ୍ରାହ୍ମଣ ବୋଇଲ ଦୁଃଖେ ପାଇଲୁ ଗୋ ଭୁଦ୍ର
ସ୍ତ୍ରୀ ହୋଇ ସ୍ୱାମୀ ପୋଷିବା ଜାଣ ନ ଯୋଗାଇ
ବୋଇଲ ଦ୍ୱାରକାପୁର ବାଟ ଜାଣୁ ସଖି
ସ୍ୱାମୀଙ୍କ ଦୁବନ ତହିଁ ଦରିଦ୍ରତା ନାହିଁ ।

ବ୍ରାହ୍ମଣ ବୋଇଲେ ଚଲୁଗ ଲଙ୍କା ଯାଇପାର
ଆମ୍ଭେ ବ୍ରଲ ଗୃଲ ପଛେ ହେଉ ମାସ ଗୁର
ଅନ୍ଧର ଲାଉଡ଼ି ଶୋଟି ଘେନିଣ ବ୍ରାହ୍ମଣୀ
ପୁଅକୁ କାଖରେ ହେନ କଢ଼ାଇଣ ଆଣି ।
ଗ୍ରାମ ଗ୍ରାମ ଜେ ରହନ୍ତି ଭିକ୍ଷା ସେ କରଣ
ପଗ୍ଗରନ୍ତି ଦ୍ୱାରକାକୁ ବାଟ କେହୁ ଜାଣ ।
ପ ଅବର୍ଷ ଛନମାସ ବାଇଶ ଦବସେ
ଦ୍ୱାରକା ପରେ ପଦେଶ ହୋଇଲେ ହରଷେ ।
ତହିଁ ଦେଖିଲେ ସୁବର୍ଣ୍ଣମୟ ଅଟେ କାନ୍ତ
ପଶ୍ଚିମ ଦ୍ୱାରେ ରହିଲେ ନିଶ୍ଚିନ୍ତରେ ଅତ ।
ସେବଣ ଦ୍ୱାରରେ ଭିକ୍ଷା ମାଗଇ ବ୍ରାହ୍ମଣୀ
ସୁବର୍ଣ୍ଣ ପାତେ ପୂରଇ ଦ୍ୟନ୍ତି ରତ୍ନମଣି ।
ଏହିରୂପରେ ଅନ୍ଧ ତହିଁ ବରଷେ ରହିଲ
ବହୁଧନ ରତ୍ନ ପାଇ ନିଶ୍ଚିନ୍ତ ହୋଇଲ ।
ଫାଲଗୁନ ମାସ ଶୁକ୍ଳପକ୍ଷ ଏକାଦଶୀ
ଗୁରୁବାର ପୁନର୍ବସୁ ଋକ୍ଷ ପୁଗରାଶି ।
ବାଣିଜ୍ୟ ନାମେ କରଣ ଶୋଭନ ସେ ଯୋଗ
କୁମ୍ଭ ସଂକ୍ରାନ୍ତିକୁ ଦଶ ଅଂଶ ଦନ ଭୋଗ ।
ସେହି ଦ୍ୱାରକାପୁରର ବାଳପୁତ୍ରମାନେ
ଧୂଳି ଖେଳନ୍ତି ସମୁଦ୍ର ତୀରର ଉଦ୍ୟାନେ ।
ସେ ଅନ୍ଧପୁଅ ଖେଳଇ ତାହାଙ୍କ ସଙ୍ଗରେ
ପ୍ରଦ୍ୟୁମ୍ନ ଶୁଣିଲେ ଧୂଳିଘର କୌତୁକରେ ।
ତହୁଁ ଧୂଳିଘେନି ଅନ୍ଧପୁଅ ଅତିବେଗେ
ଧୂଳି ପକାଇ ମାରିଲ ପ୍ରଦ୍ୟୁମ୍ନକୁ ବେଗେ ।
ପୁଣିହିଁ ବୋଇଲ ଆରେ ପାମର ଗଉଡ଼
କିପାଇଁ ଭୁ ଭାଙ୍ଗି ଦେଲୁ ମୋର ଧୂଳିଖେଳ
ଅନେକ ଯତନେ ମୁହିଁ ତାହା ଥିଲି ତୋଳ
ପୁଣି ପ୍ରଦ୍ୟୁମ୍ନକୁ ମାରେ ଆଞ୍ଜୁଳିଏ ଧୂଳି ।
ପ୍ରଦ୍ୟୁମ୍ନ ବୋଇଲ ଆରେ ଅନ୍ଧପୁତ୍ର ବାଇ
ଧୂଳିଘର ଭାଙ୍ଗିଦେଲୁ ପଡ଼ି ଭୋଳ ହୋଇ ।
ଏମନ୍ତ ଉତ୍ତର ଶୁଣି ଅନ୍ଧପୁତ୍ର ରୋଷେ
ଧୂଳିଗୋଟିକ ପକାଇଲ ପ୍ରଦ୍ୟୁମ୍ନର ଗାତ୍ରେ ।
ଅତି କୋମଳ ଅଟଇ ପ୍ରଦ୍ୟୁମ୍ନର କାୟ
ଅଙ୍ଗୁଳି ଚିହ୍ନ ବସିଲ ଦୃଷ୍ଟି ମାତ୍ର ପ୍ରାୟ ।
କାନ୍ଦିଣ ପ୍ରଦ୍ୟୁମ୍ନ ତହୁଁ ଚଳିଲ ନିଜପୁରେ
ଅଶ୍ରୁପୂର୍ଣ୍ଣ ନେତ୍ରେ କହେ ପିତାଙ୍କ ଛାମୁରେ ।

ଉଚ୍ଚସ୍ୱରରେ କାନ୍ଦଣ କରଣ ଗୁହାରି
ବୋଇଲେ ଅନ୍ଧର ପୁତ୍ର ଗଲା ମୋତେ ମାରି
ବଦ ଶ ସହସ୍ର ମୂଳେ ଅଷ୍ଟ ପାଟରାଣୀ
ଏତେ ଘରସାଙ୍କର ସେ ଅଟେ ସ୍ନେହମଣି ।
ବ୍ୟାକୁଳ ହୋଇ ପ୍ରଦ୍ୟୁମ୍ନ କାନ୍ଦେ ପିତାଆଗେ
ବେଗେ ଉଠିଲେ ଶ୍ରୀହରି ପ୍ରଦ୍ୟୁମ୍ନ ବିରାଗେ ।
ଯେଉଁଠାରେ ସ୍ନେହ ତହିଁ ଲାଗିଥାଏ ମୋହ
ବୋଇଲେ ସେ ଅନ୍ଧପୁତ୍ର ଯହିଁ ମୋତେ କହ
ଅନାଥ ପ୍ରାୟେକ କାନ୍ଦେ ମୋର ପୁତ୍ର ଗୋଟି
ଚକ୍ରେ ତା ଶିର କମଳ ପକାଇବି କାଟି ।
ବାପା ବାପା ବୋଲି ଉଚ୍ଚ ସ୍ୱରେ କାନ୍ଦିକରି
ଆସେ ପ୍ରଦ୍ୟୁମ୍ନକୁମର କୃଷ୍ଣାଙ୍ଗୁଳି ଧରି ।
ଅନ୍ଧପୁଅ ପଳାଇଲା ବ୍ରାହ୍ମଣ ଅଗ୍ରତେ
ବୋଇଲା ହେ ପିତା ରଖ ବିପଦରୁ ମୋତେ ।
ଆସରେ ଅନ୍ଧଲଉଡ଼ି କି କଲୁ କାହାକୁ
ବାଳକ ବୋଲେ ନ ଜାଣି ମାରେ ପ୍ରଦ୍ୟୁମ୍ନକୁ
ଅନ୍ଧ ବୋଲେ କୃଷ୍ଣଙ୍କର ସେ ପୁତ୍ର ଅଟଇ
ନଷ୍ଟେ ନାଶଗଲୁ ବାବୁ ତୋର ରକ୍ଷା ନାହିଁ ।
ଅନ୍ଧପୁଅ ବୋଲେ ପିତା ପଳାଇବି କାହିଁ
ଅନ୍ଧବୋଲେ ତୋତେ ରଖି ନ ପାରିବେ କେହି
ଚଉଦ ବ୍ରହ୍ମାଣ୍ଡ ଅଟେ ଯାର ଗର୍ଭଗତ
କାହିଁ ପଳାଇ ପଶିବୁ ଆରେ ନଷ୍ଟ ସୁତ ।
ଦୂରରୁ ଦେଖିଲା ଅନ୍ଧପୁଅ କୃଷ୍ଣ ରୂପ
ଭୟ କରି ଥରହରି ହୋଇଲା ଅମାପ ।
ଅନ୍ଧପୁଅ ବୋଲେ କୃଷ୍ଣ ମହା କୋପମତ
ଅନ୍ଧ ବୋଲେ ଲୁଚିଥାଅ ମୋର ପଛକତ ।
ଅନାଦି ଅନନ୍ତ ଯେହୁ ଜଗତର ପତି
ଅନେକ ପ୍ରକାରେ କୋପ କରାଇବି ଶାନ୍ତି ।
କୋପ ଶାନ୍ତ ନ କରିବେ ଯେବେ ବାସୁଦେବ
ଚକ୍ରେ ଛେଦୁ ଦୁହେଁ ଯିବା ବଇକୁଣ୍ଠ ଠାବ ।
ବଚନେ ଅନ୍ଧ ସାଷ୍ଟାଙ୍ଗ କରିଲା ପୁଅକୁ
ପ୍ରଦ୍ୟୁମ୍ନ ବୋଇଲା ଏହୁ ମାଇଲା ଆମ୍ଭଙ୍କୁ ।
ବାମଭୁଜେ ପ୍ରଦ୍ୟୁମ୍ନକୁ ଦକ୍ଷେ ଚକ୍ରଧରି
ବେଗେ ଅନ୍ଧକୁ ସମସ୍ୟା ଦେଲେ ଦେବହରି ।
ଗୋବିନ୍ଦ ବୋଇଲେ ଅନ୍ଧ ଆସିଲୁ ତୁ କାହୁଁ
ତୋ ପୁତ୍ର ମାଇଲା ମୋର ପୁତ୍ରେ କହୁ କହୁ ।

ଅନ୍ଧ ବୋଇଲା ସ୍ୱାମୀ ମୁଁ ଅଟେ ନିରମାଖି
ଜନ୍ମଅନ୍ଧ ଦରିଦ୍ର ମୁଁ ଅଟେ ବଡ଼ ଦୁଃଖୀ ।
ମୁଁ ତୁମ୍ଭ ଦାସର ଦାସ ଭୃତ୍ୟଙ୍କର ଭୃତ୍ୟ
ମୋ ପୁତ୍ର କି ତୁମ୍ଭ ପୁତ୍ରେ ମାରି ସାମରଥ ।
ଶୁଣେ ପ୍ରଭୁବାକ୍ୟ ତାକୁ କହନ୍ତି ଗୋବିନ୍ଦ
ତୋ ପୁତ୍ର ମୁଖପୋଡ଼ ଚନ୍ଦ୍ର ଦେଖ ଆରେ ଅନ୍ଧ
ଦେଖି ଦେଖି ଦେଖି ବୋଲି ବେଗେ କଲେ ପାଟି
ତାର ଜନ୍ମାନ୍ଧ ପଟଳ ବେଗେ ଗଲା ଫିଟି ।
ପ୍ରତ୍ୟକ୍ଷେ ଅନ୍ଧର ଯହୁଁ ପ୍ରକାଶିଲା ଚକ୍ଷୁ
ଅନ୍ଧ ବୋଲେ ଜଗନ୍ନାଥ ସତେ ଆସିଅଛୁ ।
ଶଙ୍ଖ ଚକ୍ର ଗଦା ପଦ୍ମ ଦେଖେ ଚତୁର୍ଭୁଜେ
ଜଳଧର ପରାୟେକ ସ୍ୱରୂପ ବିରାଜେ ।
ପ୍ରଣିପାତ ହେଲା ଅନ୍ଧ ଅତି ପ୍ରେମଭୋଳେ
ବୋଲେ ଶତଜନ୍ମ ପରେ ଦେଖିଲି ମୁଁ ଡୋଳେ
ସେ ଅନ୍ଧ ବ୍ରାହ୍ମଣପ୍ରତି ସୁପ୍ରସନ୍ନ ହୋଇ
ବିପୁଳ ସମ୍ପତ୍ତି ତାକୁ ପୁଣି ଦେଲେ ନେଇ ।
ବାରସ୍ୱର୍ଣ୍ଣପୁର ଯେନ ରହିଲା ବ୍ରାହ୍ମଣ
କାଳେ ବଇକୁଣ୍ଠ ଦେଲେ ଏହି ନାରାୟଣ ।
ଶୁଣ ମହାମତି ବାସୁଦେବ କଥାଗୋଟି
ଶତଜନ୍ମ ଅନ୍ଧର ଯେ ନେତ୍ର ଗଲା ଫିଟି ।
ଯୁଧିଷ୍ଠିର ବୋଲି ତାର ଯେଉଁ ପୁତ୍ର ଗୋଟି
ଏହି ଜଗନ୍ନାଥ ତାର ପାଦତଳେ ଲୋଟି ।
ତୁ କାହାର ପିଅର ହୋ ଅନ୍ଧ ବେନି ଚକ୍ଷୁ
ହୃଦପଦ୍ମେ ସେବା କରି କି ପୁଣ୍ୟ ପାଇଛୁ ।
ନିଷ୍କଳଙ୍କ ଚିତ୍ତେ ସେବା ଯେବେ ତୁ କରନ୍ତୁ
ଧର୍ମ ଅର୍ଥ କାମ ମୋକ୍ଷ ସକଳ ପାଆନ୍ତୁ ।
ଜଗନ୍ନାଥ ସ୍ମର ତର ସଂସାରର କଷ୍ଟୁ
ଶ୍ରୀ ଜଗନ୍ନାଥ ସ୍ମରି ଅନ୍ଧନେତ୍ର ଫିଟୁ ।
ଜଗନ୍ନାଥ ସ୍ମର ନରେ ଫିଟୁ ଏ ଦୁର୍ଗତି
ଜଗନ୍ନାଥ ସ୍ମର ନରେ ନୋହୁ ଯମ ଶାସ୍ତି ।
ଜଗନ୍ନାଥ ସ୍ମର ନରେ ବିକଶିବ ବୁଦ୍ଧି
ଜଗନ୍ନାଥ ସ୍ମର ନରେ ପ୍ରାପ୍ତହେଉ ସିଦ୍ଧି ।
ଜଗନ୍ନାଥ ସ୍ମର ନରେ ନୋହୁ କାଳଘାତ
ଜଗନ୍ନାଥ ସ୍ମର ନରେ ପୁତ୍ର ହେଉ ଜାତ ।
ଜଗନ୍ନାଥ ସ୍ମର ନରେ ତୁଟୁ ନାନାରୋଗ
ଜଗନ୍ନାଥ ସ୍ମର ନରେ ପ୍ରାପ୍ତ ହେଉ ଭୋଗ ।

ଲୋଭ ମୋହ ହିଂସା ଆଦି ତ୍ୟାଗକର ସବୁ
ଜଗନ୍ନାଥ ନାମଗୋଟି ହୃଦେ ଧର ବାବୁ ।
ଜମ୍ବୁଦ୍ୱୀପ ଦକ୍ଷିଣରେ ଅଛି ମହୋଦଧି
ଯମନକ ତୀର୍ଥ ମନକଳ୍ପବଟ ଭେଦ ।
ଜୟ ତୁ ପ୍ରସନ୍ନ ନାଥ ଭଜେ ନୀଳଗିରି
ଯାର ଜ୍ୟୋତ୍ସ୍ନା ଲଗିଅଛି ବ୍ରହ୍ମାଣ୍ଡ ଆବୋରି
ଖୁରଲକ୍ଷ ବତିଶ ଯେ ହସ୍ତ ଅଛି କଳି
ତହିଁ ମାଡ଼ି ବସିଅଛି ଦେବ ବନମାଳୀ ।
ଶ୍ୱେତଗଙ୍ଗା ସନ୍ନିଧରେ ରୋହିଣୀର କୁଣ୍ଡ
ଯମେଶ୍ୱର ଲିଙ୍ଗ ପୁଣି ବଟେ ମାର୍କଣ୍ଡ ।
ଗୁପ୍ତଗଙ୍ଗା ଯମୁନା ଯେ ବହେ ସରସ୍ୱତୀ
କୋଟି ତୀର୍ଥରେ ପୁଷ୍କର ଅଛେ ବଶବର୍ତ୍ତୀ ।
ବିଜୟ ଶ୍ରୀ ରାମକୃଷ୍ଣ ସୁଭଦ୍ରା ବ୍ରହ୍ମା
ଦୋଷ ଉପେକ୍ଷିଣ ଗୁଣ ଦେଖନ୍ତି ମହାତ୍ମା ।
ସକଳ ଜନ୍ତୁରେ ଶ୍ରେଷ୍ଠ ନରରୂପେ ଜନ୍ମ
ଆପଣା ଆପଣା ରୂପ ପ୍ରକାଶିଛ ବ୍ରହ୍ମ ।
ଜଗନ୍ନାଥ ପ୍ରଭୁଙ୍କର ଭୃତ୍ୟର ମୁଁ ଭୃତ୍ୟ
ଶୁଦ୍ର ଶାରଳାଦାସର ଶତ ପ୍ରଣିପାତ ।

---

## ଶ୍ରୀକୃଷ୍ଣଙ୍କର ପ୍ରଥମଥର କୁରୁସଭାକୁ ଗମନ ଓ ଅପମାନ ଏବଂ ବଳିରାଜାର ଉପାଖ୍ୟାନ

ଅଗସ୍ତିଙ୍କୁ ପଚାରିଲେ ଜଳଙ୍ଗା ରାଜନ
କୃଷ୍ଣ ଯେବେ ଯାଇଥିଲେ ହସ୍ତିନା ଭୁବନ ।
ତହିଁ ଧୃତରାଷ୍ଟ୍ର କଲା ମାନ୍ୟ ଅତିଶୟ
କୌରବ ସଭାରେ କିସ କଲା କୁରୁରାୟ ।
ସେହି କଥା ଶୁଣିବାକୁ ବାସନା ମୋହର
କହନ୍ତୁ ଅଗସ୍ତି ମୁନି ଶୁଣ ନୃପବର ।
ଯା ଶୁଣନ୍ତେ ଧର୍ମ ଅର୍ଥ ପ୍ରାପ୍ତ ହୁଏ ସ୍ୱର୍ଗ
ସପାରହ୍ରଦେ କଲିରେ ପର୍ବ ଉଦଯୋଗ ।
ଦୁଗ୍ଧ ଶର୍କରା ମିଳାଇ ପିବନ୍ତେ ଯେ ସ୍ୱାଦ
ତହିଁରୁ ବଳି ମଧୁର ଉଦ୍ୟୋଗ ପର୍ବ ।
ଯାହା ଯାହା କହିଲ ସେ ବିଦୁର ମହାତ୍ମା
ଧୃତରାଷ୍ଟ୍ର ବୋଲେ ସାଧୁ ତୋହର ମହିମା ।
ବାବୁ ଜଗନ୍ନାଥଙ୍କୁ ମୁଁ କରଇ ଭକତି
ପୁତ୍ର ଉପୁଜାଇ ମୂର୍ଖ ହୋଇଲି ଅଗତି ।
ସୁରସିଦ୍ଧ ମୁନି ଚିନ୍ତା କରନ୍ତି ଯାହାକୁ
ଇନ୍ଦ୍ର ଚରଲୋକେ ସେହି ଧ୍ୟାନ୍ତି ମୁକତିକୁ ।
ସନ୍ନିଧେ ବାସୁଦେବଙ୍କ ଚରଣେ ପ୍ରଣମି
ବୋଇଲ ସେ ସର୍ବ ଜାଣ ତୁମ୍ଭେ ଦେବସ୍ୱାମି
କୋଟି ବ୍ରହ୍ମାଣ୍ଡ ଯାହାର ଅଛି ଏକ ଧ୍ୟାନ
କିଏ ବଳେ କରିପାରେ ତାଙ୍କ କଥା ଆନ ।
ପୁଣି ବୋଇଲା ସବୁଙ୍କ ସୋଦର ତୁ ହରି
କି କାରଣେ ନାହଁପୁଣ ବଜେ ମୋର ପୁରୀ ।
ଧୃତରାଷ୍ଟ୍ରର ବଚନ ଶୁଣିଣ ଶ୍ରୀହରି
ବୋଇଲେ ଶୁଣ ସର୍ବଜ୍ଞ ବଜପୃ ମୋହର ।
ଯୁଧିଷ୍ଠିର ଆଦି ଅଛନ୍ତି ତୋର ପାଣ୍ଡୁପୁତ୍ର
ଅରଣ୍ୟରେ ବୁଲି କଷ୍ଟ ପାଇଲେ ବହୁତ ।
କନ୍ଦମୂଳ ଭକ୍ଷି ସେହୁ ମାଗିଲେ ଯେ ଭିକ୍ଷା
ଋଷିକୁଳେ ଜନ୍ମି ଭିକ୍ଷା କରିଲେ ସେ ଦୀକ୍ଷା ।
ଯାବତୀୟ ତୀର୍ଥ ଦେଖି ଦେଶାନ୍ତରେ ବୁଲି
ପୂଜିଲେ ବୋଧନ୍ତି ଧୃତରାଷ୍ଟ୍ର ପୁତ୍ର ବୋଲି ।
ତୋର ବଂଶର କେମନ୍ତେ ହେଲା କୁରୁବଳ
ମୋହର ବସ୍ତ୍ରରେ ତୋତେ ନୁହଇ କି ଲଜ
ଅବଶେଷେ ଅଭିଷେକ ହୋଇଲେ ବିରାଟେ
ଏବେ ବାରୁଣାରେ ଆସି ରହିଲେ ନିକଟେ
ଅତି ଗୌରବ ଅଟଇ ଯେଣୁ ଜନ୍ମଭୂମି
ରଜଇ ପାଇ ସେ ଭୂମି ତ୍ୟାଗ କଲେ ସ୍ୱାମି ।
ବାସୁଦେବ ବାକ୍ୟ ଶୁଣି ଅନ୍ଧ ହୋଇ ଶାନ୍ତ
ବୋଇଲା ହରି ତୋ ବାକ୍ୟେ ଫିଟିଲା ମୋ ଭ୍ରାନ୍ତ
ଦଧିବାମନ ସୁମରି ଚଳ ତୁ ଅଚ୍ୟୁତ
ମୋ ପୁତ୍ରକୁ ସମାର୍ଜ୍ଜିଣ ଆସ ହେ ତୁରିତ ।
ଶ୍ରୀହରି ବୋଇଲେ ପୁତ୍ରେ ଡାକ ତୋର କେତ
ପଢ଼ା ପାଞ୍ଚଖଣ୍ଡି ଏବେ ଦେଉ କୁରୁପତି ।
ଧୃତରାଷ୍ଟ୍ର ବୋଲେ ତୁମ୍ଭେ ଶୁଣ ଦେବ ହରି
ମୁହିଁ ତାହାଙ୍କୁ ନ ପାରେ ସନ୍ନିଧେ ହକାରି ।
ଯୁଧିଷ୍ଠିର ଶତ ଯେବେ ହେଲା ବନ୍ଧୁକତ
ଆଉ କୁରୁପାଣ୍ଡବଙ୍କ କି ସନ୍ଧି ଅଚ୍ୟୁତ ।
ପୁଣି ପୁଣି ଧୃତରାଷ୍ଟ୍ର ଏହିକଥା ଭଣି
ବୋଲେ ଆଉ ପ୍ରୀତି ନୋହୁ କିସ ଚକ୍ରପାଣି ।
ଗୋବିନ୍ଦ ବୋଇଲେ ସେହି ନ ଆସନ୍ତୁ ପାଶ
ସେହି ପାଞ୍ଚଜଣ ଦୂରେ କରିଥାନ୍ତୁ ବାସ ।

ଅରଣ୍ୟରେ ଥାଇ ତୋତେ କରନ୍ତୁ ସେ ଚନ୍ତା
ତୁହି ଯେଣୁ ତାହାଙ୍କର ଈଶ୍ୱର ଦେବତା ।
ଶୌର୍ଯ୍ୟବନ୍ତ ନ ଭୁଞ୍ଜନ୍ତି ଇଷ୍ଟକୁ ନ ଦେଲେ
ପାଣ୍ଡବ ଯେ ନବର୍ତ୍ତନ୍ତି ତୋତେ ନ ଦେଖିଲେ
ତୋର ଉଚିତ ଅଟଇ ତାଙ୍କୁ ପୋଷିବାକୁ
ଦେଲା ପାଞ୍ଚଖଣ୍ଡି ଏବେ ଦିଅ ତୁ ତାହାଙ୍କୁ ।
ଲକ୍ଷେ ଯୋଜନରେ ଅଧିକାରୀ ଅଟୁ ତୁହି
କିଛିତରେ ଦିଅ ଥାନ୍ତୁ କୋଣକରେ ରହି ।
ଧୃତରାଷ୍ଟ୍ର ବୋଲେ ହରି ଏ ଅଟେ ଯୁକତେ
ତୋ ଶ୍ୱଶୁର କି ଯୁଧିଷ୍ଠି କହୁଅଛୁ ତୋତେ ।
ଯେମନ୍ତ ଶ୍ୱଶୁର ତୁହି କଲୁ ଦେବରାୟେ
ତା କି ସଙ୍କଳ୍ପ କରିଛୁ ପଣ୍ଡୁର ତନୟେ ।
ସନ୍ନିଧେ ରହିଲେ କେବେ ନୋହିବ ପୀରତି
ପଢ଼ା ପାଞ୍ଚଖଣ୍ଡ ମାଗି ଆସ ହୋ ଶ୍ରୀପତି ।
ପୁନରପି ବୋଲେ ଧର୍ମସ୍ଥଳେ ବିଜେ କରି
ଶାନ୍ତି କରାଇ କହିବୁ ଦୁର୍ଯ୍ୟୋଧନେ ଗିରୁ ।
ସ୍ୱାମି ତୋ ମଧ୍ୟସ୍ଥପଣେ ମୁହିଁ ନିସ୍ତରିଲି
ସାନନ୍ଦ ଭଜଣ ହରି ଗତି ମୁଁ ପାଇଲି ।
ଗାନ୍ଧାରୀ ବୋଇଲ ବନ୍ଧୁ ଶୁଣ ବାସୁଦେବ
କୌତୁକ ବିନୟେ ଯେବେ କଥା ପ୍ରକାଶିବ ।
ଉଭୟ କୁଳକୁ ହରି କରି ଆସ ରକ୍ଷା
ଯେବେ ତୋର ସୋମବଂଶ ରଖିବାକୁ ବାଞ୍ଛା
ସମରାଜ୍ୟ ଯୋଟିଅଛି ମ ନରଚକ୍ରବର୍ତ୍ତୀ
ବଡ଼ ଗ୍ରାମ ମାଗିଲେ ସେ ଲଭିବ ଅପ୍ରୀତି ।
ତୁହି ତ ଜଗମୋହନ ଦଶଠାରୁ ଭକ୍ତି
କଣ କଣ କରି ମାଗ ପଢ଼ା ପାଞ୍ଚଖଣ୍ଡି ।
କୃଷ୍ଣ ବୋଇଲେ ତୁ ଦୁଇକୁଳ ଅନ୍ନପୂର୍ଣ୍ଣା
ତୋର ବଚନ ପାଷାଣ ଗାର ମୋତେ ସିନା
ଯୁଧିଷ୍ଠିର ଧର୍ମସେନ ତୃପ୍ତ ହୋଇଥିଲେ
ଆଜ ଭାଇମାନେ ଶାନ୍ତି ଲଭିବେ କି ଭଲେ ।
ଗାନ୍ଧାରୀ ବୋଇଲେ ତୁହି ଶୁଣ ଦେବରାଜ
ମୂର୍ଖକୁ ବୁଝାଇ କର ଶୁଦ୍ଧଧାନେ କାର୍ଯ୍ୟ ।
ଗାନ୍ଧାରୀ ଅନ୍ଧ ସଞ୍ଜୟ ଆବର ବିଦୁର
ପ୍ରଣିପାତ ହେଲେ ସର୍ବେ କୃଷ୍ଣଙ୍କ ପୟର ।
ବିପଦ ଘଡ଼ିଛୁ ଏବେ ଆସି ଦୁଇକୁଳେ
ତୁହି ହରି ସମାଧାନ କର ଏତେବେଳେ ।

ସମସ୍ତଙ୍କୁ ସମ୍ମାର୍ଜ୍ଜନ କରି ଦେବରାୟ
ଦକ୍ଷିଣା ସଭାକୁ ତହୁଁ କରିଲେ ବିଜୟ ।
ଆସ୍ଥାନରେ ବସିଅଛି ଦେବ କୁରୁପତି
ଭୀଷ୍ମ ଦ୍ରୋଣ କୃପ ବ୍ରହ୍ମା ବାହ୍ଲୀକ ଅଛନ୍ତି ।
ସୋମଦତ୍ତ ବୀରକର୍ଣ୍ଣ ପୁଣି ଅଶ୍ୱତ୍ଥାମା
ଜୟଦ୍ରଥ ଅଳମ୍ବୁଷ ବିକର୍ଣ୍ଣ ମହାତ୍ମା ।
ରାଜା ସନ୍ନିଧି ଆସ୍ଥାନେ ବିଜୟ ଶକୁନି
ରାଜ୍ୟ ବୃତ୍ତେ ଭୂତ ଭବିଷ୍ୟତ ପୋଥି ଘେନି ।
ଶତପଦ୍ମ ଯୋଦ୍ଧା କରିଛନ୍ତି ପଟୁଆରି
ରାଜାଙ୍କୁ ଆବୋରିଛନ୍ତି ନାନାଅସ୍ତ୍ର ଧରି ।
ସିନ୍ଧୁ ଦେଶର ଅଟଇ ଯେଉଁ ବଡ଼ ବାଜୀ
ତହିଁରେ ଚଢ଼ି ରାଉତେ ଦିଶୁଥାନ୍ତି ତେଜି ।
ଲକ୍ଷେ ପାଟଛତ୍ର ତହିଁ ଶୋଭଇ ଆକାଶେ
ଲକ୍ଷେ ଚାମର ପଡ଼ଇ ରାଜା ଚଉପାଶେ ।
ସୁବର୍ଣ୍ଣର ବନ୍ଧାଗଙ୍ଗ ଲକ୍ଷଯୋଡ଼ା ତୂରି
ଅଷ୍ଟାଦଶ କ୍ଷୌଣୀ ବଳ ରହିଛନ୍ତି ଘେରି ।
ଦୁନ୍ଦୁଭି ଟମକ ବାଜେ ଉଡ଼ଇ ନିଶାଣ
ସେ ସଭା ମହିମା ଅଟେ ଏହିପରି ଜାଣ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଦୁର୍ବିନ୍ଦ ଦୁରନ୍ତ
ଦୁସ୍କର୍ଣ୍ଣ ଦୁର୍ମନ ଯେ ଦୁର୍ବାର ଦୁର୍ଦ୍ଦନ୍ତ ।
ଦୁର୍ଜ୍ଜୟ ଦୁଃଶଙ୍ଖ ଦୃମ ଦୃଗିର ଦୃର୍ବାଳ
ଦୁର୍ଜ୍ଜାତକ ଦୁର୍ବାସନ ଦୁର୍ଜ୍ଜୟ ଦୁର୍କାଳ ।
ଦୁରଙ୍ଗ ଦୁଃସଙ୍ଗ ଦୁରନ୍ତକ ଦୁସ୍କର୍ଣ୍ଣ
ଦୁସ୍ୱାନୁ ଦୁର୍ମନୁ ଦୁରଥାନ ଦୁରାତନ ।
ଦୁର୍ଜ୍ଜିକ ଦୁର୍ବନ୍ଧ ଦୁନ ଯେ ଦୁଃଗନ ବୋଲି
ଦୁର୍ଭାନୁ ଦୁର୍ହାଧ ଦୁରପଷାଦ କହିଲି ।
ଏ ବିଧିରେ ଦୁର୍ଯ୍ୟୋଧନ ଭ୍ରାତା ଅଟେ ଶଏ
ଦୁର୍ବାସା ମନ୍ତ୍ରେ ଦୁର୍ନାମ ଅଟନ୍ତି ସଭିଁ ।
କରରେ ଗଦା ଶକତି ମୁଦ୍ଗର କାତି
କର୍ଣ୍ଣକଠାରି ଲଙ୍କିଆ ସର୍ବେ ଝଲକନ୍ତି ।
କୁଠାର ତୋମର ପୁଣି ଅସି ଖଣ୍ଡ ମୂନା
ଭଲ୍ଲି ଶୁଲୁଜ କୃପାଣ ଅଙ୍ଗେ ବଜ୍ର ସେହ୍ଲା ।
ଗଜ ବାଜୀ ଆସ୍ଥାନର ତଳକୁ ଆବୋରି
କରନ୍ତି ସେ ନିଶୋଧନ କରେ ଅସ୍ତ୍ର ଧରି ।
ରହିଛନ୍ତି ଆସ୍ଥାନରେ ସମସ୍ତ କୌରବ
ବିଦୁର ସଞ୍ଜୟ ମଧ୍ୟେ ବିଜେ ବାସୁଦେବ ।

ଶିରରେ ଲମ୍ବିତ ଜୂଡ଼ା ନିକଟ୍ଟ ବସନ
ହସ୍ତେ କୁଶବଟୁ ବକ୍ଷେ ଶ୍ରୀବତ୍ସର ଚିହ୍ନ ।
କାନ୍ଧରେ ପଇତା ଆଉ ସୁପଞ୍ଚ ଉତ୍ତରୀ
କଣ୍ଠେ ତୁଳସୀର ମାଳ କରମାଳା ଧରି ।
ନୀଳବର୍ଣ୍ଣ ମେଘ ଯେହ୍ନେ ଝଲକେ ଚପଳା
ଦରହସିତ ବଦନ ଗଳେ ବନମାଳା ।
ଶୁଦ୍ଧ ସ୍ଫଟିକ ପରାୟେ ଦିଶଇ ବଦନ
ମହୀରେ ଗୁଳନ୍ତେ ଦିଶେ ଅତି ସୁଶୋଭନ ।
ବିଶ୍ୱାମିତ୍ର ବାମଦେବ ବଶିଷ୍ଠ ମାର୍କଣ୍ଡ
ଗଉତମ ଭରଦ୍ୱାଜ ବ୍ୟାସ ଯେ ବିଭାଣ୍ଡ ।
ସ୍ୱାଙ୍କମେଳେ ବାଳଖିଲ୍ୟା ଋଷି ଲକ୍ଷ ଲକ୍ଷ
କୋଶକ ଅନ୍ତରେ ଯାଇ ଦିଶିଲେ ଶ୍ରୀବତ୍ସ ।
ବାରଣ ଉପରେ ରହି ଦେଖେ ଦୁଃଶାସନ
ସଭାକୁ ଆସୁଅଛନ୍ତି ନନ୍ଦର ନନ୍ଦନ ।
ଆସ୍ଥାନ ଉପରେ ଥାଇ ଦେଖେ ଧାର୍ତ୍ତରାଷ୍ଟ୍ର
ଅନାନ୍ତି ସବୁଯୋଦ୍ଧାଏ କରି ଏକଦୃଷ୍ଟି ।
ହେ ଚୈତନ୍ୟ ଏ ଦ୍ୱାପର ଯୁଗ ବଡ଼ ଧନ୍ୟ
ଜଗନ୍ନାଥ ହେଲେ ନରଦେହେ ଅବତୀର୍ଣ୍ଣ ।
ଶତ୍ରୁପଣେ ହେଉ ଅବା ମିତ୍ରପଣେ ହେଉ
ଯେ ଦେହ ତେଜଇ ଧନ୍ୟ ତାଙ୍କୁ ବୃହୁଁ ବୃହୁଁ
ଭୀଷ୍ମ ବୋଇଲେ ଆଜର ଦିନ ଧନ୍ୟ ଧନ୍ୟ
ପ୍ରତ୍ୟକ୍ଷେ ଦେଖିଲୁ ଜଗନ୍ନାଥଙ୍କ ବଦନ ।
ସାଧୁ ସାଧୁ ପାଣ୍ଡବରେ ତୁମ୍ଭ ପ୍ରାଣ ଧନ୍ୟ
ସାଧୁ ଏହି ସୋମବଂଶ କଉରବ ସୈନ୍ୟ ।
ବନ୍ଧୁ ଲୟକରି ତୁଟେ ଚନ୍ତି ଯାହାଙ୍କୁ
ଶତ୍ରୁପଣରେ ଦେଖିଲୁ ସେହି ଗୋବିନ୍ଦଙ୍କୁ ।
ଦେଖ ଆମ୍ଭମାନଙ୍କର ପୂର୍ବ ପୁଣ୍ୟପଣ
ଚକ୍ରେ ଯା ଶିର ଛେଦିବେ ପ୍ରଭୁ ନାରାୟଣ ।
ଦେଖ ଏ ସଭାରେ କେତେ ସାର୍ଥକତା ଆଜ
ସଭାରେ ପଡ଼ିବ ଜଗନ୍ନାଥ ପଦରଜ ।
ଶକୁନି ବୋଇଲା ଦେବ ଶୁଣ କୁରୁନାଥ
ମୁଁ ମଣୁଛି ହେବ ଏହି ପାଣ୍ଡବଙ୍କ ଦୂତ ।
ଦ୍ରୋଣ ବୋଇଲେ ଏ କଥା କେ କହି ପାରିବ
ଅନାଦି ପୁରୁଷ ଦୂତ କାହାର ହୋଇବ ।
ଶ୍ରୀବାସୁଦେବ ଦର୍ଶନେ ଦୁର୍ଗତିରୁ ତରି
ମୂଢ଼େ ତରିଯାନ୍ତି ତାଙ୍କ ନାମ ମନେ ସ୍ମରି ।
ଅନ୍ୟ କେହି ନାହାନ୍ତି କି କୃଷ୍ଣ ହେବେ ଦୂତ
ଏହିକ୍ଷଣି ବୁଝାଯିବ ତହିଁର ବୃତ୍ତାନ୍ତ ।
ଦୁର୍ଯ୍ୟୋଧନ ବୋଇଲକ ଆସୁ ନାରାୟଣ
ବସୁ ଏ ସଭାରେ ହରି ମୋକ୍ଷର କାରଣ ।
ଶକୁନି ବୋଇଲା ନନ୍ଦ ଗଉଡ଼ର ସୁତ
ଗୋପାଙ୍ଗଣୀ ଯୁବତୀଙ୍କୁ ହରିଛି ସେହି ତ ।
ଦୁରନ୍ତ ପାତକ ସେହି ଅର୍ଭକେ ବାଳକାଳେ
ପୁତନା ସ୍ତ୍ରୀକି ମାଇଲା କ୍ଷୀରପାନବେଳେ ।
ଷଣ୍ଢାସୁର ମାଇଲା ସେ ଗୋପପୁରେ ପଶି
ଗୋହତ୍ୟା ସ୍ତ୍ରୀହତ୍ୟା ଆଦି କରେ ଅଛି ବସି
ଭୀଷ୍ମ ବୋଇଲେ ଯାହା ତୁ କହିଲୁ ଏ ବାଣୀ
ମୋ ଶରୀର କମ୍ପୁଅଛି ତୋର କଥା ଶୁଣି ।
ନାନାପାତକ କରନ୍ତି ଆନ ଜନମାନେ
କ୍ଷୟ ହୁଏ ନାରାୟଣ ସାକ୍ଷାତ ଦର୍ଶନେ ।
ଶକୁନି ବୋଇଲା ତୁମ୍ଭେ ଶୁଣ ଗୁରୁଦ୍ରୋଣ
ଗୋହତ୍ୟାର ଦୋଷାଦୋଷ ସାବଧାନେ ଶୁଣ
ବିଷ୍ଣୁ ପ୍ରଭୁ ବୋଲିକରି ଏକ ସତ୍ୟଯୁଗେ
ସୋମକ ନାମେ ଈଶ୍ୱର ଥିଲେ ମଧ୍ୟସ୍ୱର୍ଗେ ।
ବୃଷ ଶୁକ୍ଳ ଚତୁର୍ଦ୍ଦଶୀ ତିଥି ସେ ଦିନର
ବିଶାଖା ନକ୍ଷତ୍ର ଅଟେ ଆଉ ଭୌମବାର ।
କରରେ କୁଠାର ଦେନି ସେ ସୌମ୍ୟ ଧୂର୍ଜ୍ଜଟି
ଚନ୍ଦ୍ରଭାଗାରୁ ଆଣିଲେ କୁଶବିଡ଼େ କାଟି ।
ନଦୀକୂଳେ ଶୁଖାଇଲେ କୁଶବିଡ଼ା ତରି
ଲେଉଟେ ଗୋମାତା ଖାଆନ୍ତେ ତାକୁ ଆସିକରି
ସେ ସୋମରୁଦ୍ର ଧାଇଁଲେ ଅତିଶୟ ରାଗେ
ଗୋମାତାଙ୍କୁ ପ୍ରହାରିଲେ ଶୂଳ ନେଇ ବେଗେ
ଗୋମାତାଙ୍କ ଶିର ଛିଡ଼େ ଈଶ୍ୱର ପ୍ରହାରେ
ସେ ମୁଣ୍ଡ ଲଗିଲା ଯାଇ ଶିବଙ୍କ ହସ୍ତରେ ।
ବହୁତୀର୍ଥ କରି ଦେବେ ନ ପାରିଲେ ଧ୍ୱଂସି
ସ୍ୱର୍ଗ ଭୁବନକୁ ଦେବ ନ ପାରିଲେ ପଶି ।
ଅନେକତ ପାପ ହେଲେ ଗୋହତ୍ୟାର ଦୋଷେ
ଈଶ୍ୱର ଅପୂଜ୍ୟ ହେଲେ ଭୁବନ ନିଦିଶେ ।
ତହୁଁ ଭୈରବ ରୂପରେ ହୋଇଲେ ପ୍ରଚଣ୍ଡ
ଅଦ୍ୟାପି ତାହାଙ୍କ ହସ୍ତେ ଅଛି ଗୋରୁମୁଣ୍ଡ ।
ଶକୁନି ମନ୍ତ୍ରୀ କହିଲା କୌରବ ସଭାରେ
ଗୋହତ୍ୟା ନୋହିଲା ପାର ଶିବେ [illegible]

ତାଙ୍କଠାରୁ ଶ୍ରେଷ୍ଠ ଏ କି ଗଉଡ଼ କହ୍ନାଇ
ଗୋହତ୍ୟା ପାତକ ଯିବ ଅଙ୍ଗେ ଲୀନହୋଇ ।
ନାନାବିଧ ପାତକମାନ ଅଛି ଯାର ଅଙ୍ଗେ
ଏ ସଭାରେ ବସିଲେ ସେ ଆସି କେଉଁବାଟେ ।
ଗୋପାଳ ପୁଅଙ୍କ ସଙ୍ଗେ ଖାଇ କାଦମ୍ବରୀ
ବତ୍ସାସୁରଙ୍କୁ ମାରିଲା ନାନା ଛନ୍ଦ କରି ।
ଜନମୁଁ ଅଜାତି ପୁଣି ଅଟେ ଦୋଷକାରୀ
ବନଜ ଗୋଷ୍ଠୀ ହୋଇଲେ ନାରକୀର ସରି ।
କୁଳକ୍ଷୟ ମନ୍ତ୍ରୀ ଯହୁଁ କହେ କଟୁବାଣୀ
ଦୁଷ୍ଟ ଯୋଦ୍ଧାଏ ଆସ୍ଥାନ ନରେ ଥିଲେ ଶୁଣି ।
ବାଟ ଆବୋରି ରହିଲା ଯାଇ ଦୁଃଶାସନ
ଅନେକ ଯୋଦ୍ଧା ବେଢ଼ନ୍ତେ ହୋଇଲା ଗହନ
ଆସ୍ଥାନକୁ ଡେଡେବେଳେ ବିଜେ କଲେ ହରି
ହୋଇଅଛି ବେଳ ତିନ ଘଡ଼ି ଆସିକରି ।
ବିଜେକଲେ ବାସୁଦେବ ଆସ୍ଥାନର ତଳେ
କାହାକୁ ନ ଶୁଭେ ତାଙ୍କ ସଭାର ଗହଳେ ।
ଡେର ପାପଛି ଅଟଇ ସଭା ବାଟ ଗୋଟି
ପଞ୍ଚପାବଛି ପର୍ଯ୍ୟନ୍ତେ କୃଷ୍ଣ ଗଲେ ଉଠି
ଦ୍ରୋଣ ବୋଇଲେ ଦେଖ ହୋ ମାନଚକ୍ରବର୍ତ୍ତୀ
ସଭାସ୍ଥଳେ ବିଜେକଲେ ଆସି ଶିଖିପତି ।
ଯେ ସଭାରେ ନାରାୟଣ ଦେବଙ୍କୁ ନ ବରି
ଜାଣ ସେ ସଭା ପିଶାଚ ସଙ୍ଗତରେ ସରି ।
ଶକୁନି ବୋଇଲା ତୁମ୍ଭେ ଶୁଣ ଗୁରୁ ଦ୍ରୋଣ
କୁଣ୍ଡୀ ନଗରେ ଭୀଷ୍ମକ ନାମେ ନୃପରାଣ ।
ସେ ରଜା ଦୁହିତା ନାମ ଅଟଇ ରୁକ୍ମିଣୀ
ସ୍ୱୟମ୍ବର କଲେ ରଜା ଲକ୍ଷେ ନୃପ ଆଣି ।
ଜରାସନ୍ଧର ସଙ୍ଗରେ ବହୁ ଦେଶ ରାଏ
ଛୟାଣୋଇ ସପ୍ତ ରଜା ବସନ୍ତି ସଭାଏ ।
ସ୍ୱୟମ୍ବର ହୋଇଥିଲା ଚୁଷ୍ଟ ଦିନ ଦିନ
ବୈଶାଖ ଶୁକ୍ଳପକ୍ଷ ଦ୍ୱାଦଶୀର ଦିନ ।
ଦୁଷ୍ଟ ଭୂଜାଏ ଅଛନ୍ତି ଆସ୍ଥାନରେ ବସି
ରାମକୃଷ୍ଣ ବିଜେହେଲେ ସେ ସ୍ଥାନରେ ଆସି ।
ବାହୁର ପାବଛି ଉଚା ଅଟେ ସଭାସ୍ଥଳୀ
ବାଉନ ପାବଛେ ବିଜେ ରାମ ବନମାଳୀ ।
କରେ ଧରଣ ସୌନନ୍ଦ ମୂଷଳ ଲଙ୍ଗଳ
ମହା ବିଶ୍ୱରୂପେ ବିଜେ କଲେ କାମପାଳ ।
ଶଙ୍ଖ ଚକ୍ର ଗଦା ଧନୁ ଯେ ଶାରଙ୍ଗ ହସ୍ତେ
ଗରୁଡ଼ରେ ହରି ରାମ ତାଳଧ୍ୱଜ ରଥେ ।
ଜରାସନ୍ଧ ବୋଇଲେ ଯେ କରି କୋପଦୃଷ୍ଟି
ସଭାପରେ ଗଉଡ଼ଙ୍କୁ ନ ଦିଅରେ ଉଠି ।
ନନ୍ଦଗଉଡ଼ର ପିନା ଏହି ସୁତବେନି
ନାନା ପାତକର ଦୋଷ ଅଙ୍ଗେ ଛନ୍ତି ଘେନି ।
ଆମ୍ଭେ ରଜାଏ ସମସ୍ତେ ଏଥେଁ ଅଛୁ ବସି
କିରୂପେ ଗଉଡ଼ ପୁଅ ବସିବେକ ଆସି ।
ଏସନେକ ବିଚାରନ୍ତେ ଅସ୍ତ ହେଲା ବେଳ
ଲଜ୍ଜାପାଇ ବାହୁଡ଼ିଲେ କୃଷ୍ଣ କାମପାଳ ।
ଶକୁନି ବୋଲେ ଏ କଥା ରହିଅଛି ପୂର୍ବେ
ସେ କଥା ଅନ୍ୟଥା ଆଉ କରିବ କେ ଏବେ ।
ଦୁର୍ଯ୍ୟୋଧନ ବୋଇଲ ମାମୁଁ ଏହା ଯେବେ ଅଛି
ଏବେ କେମନ୍ତେ ସଭାରେ ବସିବେ ଶ୍ରୀବତ୍ସି
ଭୀଷ୍ମ ବୋଇଲେ ଏ କଥା କଲୁ ଯେବେ ପ୍ରତେ
ଆଦ୍ୟ ଭ୍ରାନ୍ତ କରି ମନ୍ତ୍ରୀ କହିଲୁ କ ତୋତେ
ସଭାରେ ଅନୀତି କଥା ଜରା କହୁଁ କହୁଁ
ଉଠିଗଲେ ରାମକୃଷ୍ଣ କୋପଭରେ ତହୁଁ ।
ବିଜେକଲେ ତହୁଁ ଯାଇ ମହତ ପର୍ବତେ
ସନ୍ନିଧିକୁ ହକାରିଲେ ବିନତାର ସୁତେ ।
ବୋଇଲେ ତୁ ବେଗେ ଚଳ ଆରେ ଖଗେଶ୍ୱର
ବେଗେ ଯାଇ ଭୀଷ୍ମଙ୍କର ସଭା ଭଗ୍ନକର ।
ଆଜ୍ଞା ପ୍ରମାଣେ ଚଳିଲା ବିନତାର ବାଳ
ବିଶ୍ୱରୂପ ପ୍ରକାଶିଲେ ତେଜ ଅନର୍ଗଳ ।
ଦେନି ପକ୍ଷ ବିସ୍ତାରଣ କଲା ମହାବାତ
ଉଡ଼ିଗଲେ ରଜା ଗଜ ଅଶ୍ୱର ସହିତ ।
ସହସ୍ରେ ଯୋଜନେ ସର୍ବେ ପଡ଼ିଲେକ ଯାଇଁ
ଆସ୍ଥାନ ନଗର ସବୁ ଗଲା ଚୂର୍ଣ୍ଣହୋଇ ।
ଶୁଣ ଦୁର୍ଯ୍ୟୋଧନ ଦୁହେଁ ସଭାକୁ ନ ଗଲେ
ଜାଣେ ଏକ ବାହନକେ ଏତେ କୃତ୍ୟକଲେ
ଆହେ ମାନଗୋବିନ୍ଦ ତୁ ହେତୁକରି ବୁଝ
ଦୁଷ୍ଟଙ୍କ ଗର୍ବଗଞ୍ଜନକାରୀ ଦେବରାଜ ।
ବାବୁ ଜରାସନ୍ଧ ରଜା ହୋଇଲା ଅପ୍ରୀତି
ଯୁଗଯୋଗ ରଜାହୋଇ ନ ପାରିଲା ବର୍ତ୍ତି ।
ବୈକୁଣ୍ଠ ମାୟାଧର ସବୁ ସେ ଜାଣଇ
ଯାର ଯେମନ୍ତ ବେଭାର ତାକୁ ଦେଇଥାଇ ।

ପୁଣିହିଁ ବୋଇଲେ ଭୀଷ୍ମ ବାବୁ ଆଜ୍ଞା ଦିଅ
ହରିଙ୍କୁ ପୂଜେ କରନ୍ତୁ ପ୍ରଭୁ ଦେବରାୟ ।
ଗାଙ୍ଗେୟ ବଚନ ଶୁଣି ରଜା ହେଲ ତୁନ
ପୁଣିହିଁ ତହିଁ ଉତ୍ତର ଦେଲାକ ଶକୁନ ।
ତୁମ୍ଭେ ତ ବିସ୍ମିତ କଥା କହିଲ ଗାଙ୍ଗେୟ
ସେ ବାସୁଦେବ କେବଣ ରାଜାର ତନୟ ।
ସେ ଅନାଦି ଗୋପାଳ ତୁ ଅପୂର୍ବ କି ଅଛୁ
ଅକାରଣରେ ଅଯୁକ୍ତ ବଚନ କହୁ ।
ହେ ଗାଙ୍ଗେୟ ତୋର ପୁତ୍ର ଦୁହିତାଦି ନାହିଁ
ପ୍ରଗତ କାଳେ ତୋହର ବଦନ ନ ରୁହିଁ ।
ସଭା ମଧ୍ୟରେ ଯଦ୍ୟପି ବୃଦ୍ଧ ତୁ ଆରମ୍ଭେ
କୁଳବୃଦ୍ଧ ବୋଲି ମାନ୍ୟ କରୁ ସର୍ବେ ଆମ୍ଭେ
କହି କହି ଅତିଶୟ କୋପିଲ ଶକୁନ
ଜାଣିଣ ଗାଙ୍ଗେୟ ତହିଁ ହୋଇଗଲେ ତୁନ ।
ଦଶ ପାବଚ୍ଛ ପର୍ଯ୍ୟନ୍ତ କୃଷ୍ଣ ଗଲେ ଉଠି
ଦୁଷ୍ଟରଜା ବସିଛନ୍ତି ତାଙ୍କୁ ଦେଇ ପିଠି ।
ତେର ପାବଚ୍ଛରେ ବସିଛନ୍ତି ଋଷିମାନେ
ବିଦୁର ସଞ୍ଜୟ ଛନ୍ତି କୃଷ୍ଣ ସନ୍ନିଧାନେ ।
ବିଦୁର ବୋଇଲେ ତୁମ୍ଭେ ଶୁଣ ହେ ସଞ୍ଜୟ
ମୋର ଚିତ୍ତେ ଜନମିଲ ଅତିଶୟ ଭୟ ।
ସଞ୍ଜୟ ବୋଇଲେ ଏଥୁ ନଜପାଇ ଗଲେ
କଉରବେ ନାଶିବେ କେଉଁରବେ ହେଲେ ।
କଳହା ଶକୁନ ମନ୍ତ୍ରୀ ହୋଇଅଛି ତାର
ଅସାବଧାନେ କରବ କାର୍ଯ୍ୟ ସେ ପିତାର ।
ଦଶ ପାବଚ୍ଛର ତଳେ ନାରାୟଣ ଉଭା
ଦେଖି ହୋଇଲେ ସାର୍ଥକ କୌରବଙ୍କ ସଭା ।
କୋଟିସିଂହ ପରାକ୍ରମ ଅଟେ ଯେଉଁ କଂସ
ସେ ତରୁଣ ରୂପ ଦେଖି ପ୍ରାଣେ ହେଲ ନାଶ
ସଞ୍ଜୟ ବୋଲେ କୌରବଙ୍କ ଏବେ ଧନ୍ୟ
ସାଧୁ ତୁମ୍ଭ ପିତା ମାତା ପୁଣିହିଁ ଜୀବନ ।
ସ୍ୱାମୀ ଏତେ ଅପମାନ ସହନ୍ତି କିପରି
କାହିଁକି ଏହାଙ୍କ ଦୋଷ ଅଛି ତ୍ୟଗକରି ।
ଗୋବିନ୍ଦ ବୋଇଲେ ତୁମ୍ଭେ ହେ ସଞ୍ଜୟ ଶୁଣ
ପିଠିକରି ବସନ୍ତି କି ଏହି ନୃପଗଣ
ଯେଣୁ ଅଟନ୍ତି ମୋହର ଠାକୁର ଯୁଧିଷ୍ଠି
ଏଥୁ ସୋଦର ତାଙ୍କର ଅଟେ ଧାର୍ତ୍ତରାଷ୍ଟ୍ରି ॥

ଭୀଷ୍ମ ପିତାମହ ଦ୍ରୋଣ ତାହାଙ୍କର ଗୁରୁ
ସେ ନିମନ୍ତେ ସବୁଦୋଷ ମନରୁ ସହାରୁ ।
କୌରବ ସଭାରେ ଏହା ବିସ୍ତର କରନ୍ତେ
ବେଳ ସାତଦଣ୍ଡ ଅସି ହୋଇଲା ଯୁକତେ ।
ଖାଳରେ ନିପଣ୍ଡ ହେଲେ ପ୍ରଭୁ ଦେବରାଜ
ସର୍ବ ସମ୍ମୁଖନ୍ତି ଯେଣୁ ଯୁଧିଷ୍ଠିଙ୍କ କାର୍ଯ୍ୟ
ଦ୍ରୋଣ ବୋଇଲେ ତୁ ଶୁଣ ରାଜ ରାଜେଶ୍ୱର
ଜଗମୋହନନାଥଙ୍କୁ ଉପହାସ ନ କର ।
ଲୋମେ ଲୋମେ ଅବସ୍ଥିତ ଯାହାର ବ୍ରହ୍ମାଣ୍ଡ
ଉଦରେ ରହିଛି ଯାର ମହୀ ନବଖଣ୍ଡ ।
ସେହି ମହାପ୍ରଭୁ ଉଭା ଛନ୍ତି ସଭାତଳେ
କାର କି ଶିରକମଳ ନାହିଁ ସ୍କନ୍ଧତଳେ ।
ପନ୍ନଗନାରାୟଣ ତୁ କଷା ଜଗତ୍ଜେଠୀ
ମହାରାଜାଧିରାଜା ତୁ ଅଟୁ ଧାର୍ତ୍ତରାଷ୍ଟ୍ରି ।
ତୋତେ ନ ଶୋଭଇ ବାବୁ ଏହି କଥାଗୋଟି
ସୁବାକ୍ୟ କହି ଫିଟାଅ ଅନ୍ଧପଟଳଟି ।
ସନ୍ତୋଷଙ୍କୁ ଭଜ ବାବୁ ମାନଚକ୍ରବର୍ତ୍ତୀ
ହି ଦଶ ଠାକୁର ପର ଅଟନ୍ତି ଶ୍ରୀପତି ।
ସଭାକୁ ଆପନ୍ତୁ ହରି ବସନ୍ତୁ ଆସ୍ଥାନେ
କରିବାକୁ ସମ୍ମାନନା ପାଦାର୍ଘ୍ୟ ବିଧାନେ ।
ଶକୁନ ବୋଇଲ ଦ୍ରୋଣ ତୁମ୍ଭେ ତ ଭିକ୍ଷାଶୀ
ଏକ ଭାରିଯା ଗୋଟିକୁ ନ ପାରିଲ ପୋଷି ।
ସପତ ମାସର ସେହୁ ଥିଲ ଗର୍ଭବତୀ
ବ୍ୟାଧି ଆକୋରନ୍ତେ ଚଳ ନ ପାରିଲ ସତୀ ।
ନଖ ଦେନ ବିଦାରିଲୁ ତାହାର ପେଟକୁ
ଉଛୁଡ଼ କାଢ଼ିଲୁ ତାର ପେଟରୁ ପୁଅକୁ ।
ତୋହର ବୁଦ୍ଧିରେ ସେହୁ ପ୍ରାଣେ ହତହେଲ
ଅଶ୍ୱ ପ୍ରାୟ ରବ ପୁତ୍ର ଅଶ୍ୱତ୍ଥାମା ହେଲ ।
ସ୍ତ୍ରୀହତ୍ୟା ଦୋଷ ଜାଣ ତୋ ଶରୀରେ ଅଛି
ବିଦ୍ୟାଗୁରୁ ପାଇଁ ତୋତେ ନବୋଲୁ ଯେ କିଛି
ଆପଣେ ପାତକୀ ହୋଇ ପରେ କହୁ କଥା
ଆପଣା ପରାୟ ମଣି ଦେଉଛୁ ବ୍ୟବସ୍ଥା ।
ହେମନ୍ତ ତ [illegible]ଷ୍ଟୀରେ ଜନ୍ମ ସେହିକଥା କହୁ
ସାମାନ୍ୟ ଆସ୍ଥାନ ବୋଲି ମଣିଲୁ କି ଏହୁ ।
ପନ୍ନଗନାରାୟଣ ଏ ଶ୍ରୀମାନଗୋବିନ୍ଦ
ଲକ୍ଷେ ରଜା ମୌଳିମଣି ଜଗଦ୍ବନ୍ଦ ।

ଆହେ ଦ୍ରୋଣ କୋଟିତୀର୍ଥ ହେଳଣ ପୁଷ୍କର
ଅଭିଷେକ କରିଅଛୁ ଯେଉଁ ରାଜା ଶିର ।
ଭୀଷ୍ମ ବୋଇଲେ କହିଲୁ ତୁହି ନ ବିଦୁର
ପୁଷ୍କରାଭିଷିକ୍ତ ନୁହେଁ କେଉଁ ଦଣ୍ଡଧାରୀ ।
ପୁଷ୍କରାଭିଷେକୀ ଯିହା ହୋନ୍ତି ରାଜା ହାଦେ
କୋଟିତୀର୍ଥ ହେଳଥାଏ ଜଗନ୍ନାଥ ପାଦେ ।
କୃଷ୍ଣ ପଦ୍ମପାଦ ହେତୁ ଆସିଅଛୁ ବନ୍ଧୁ
ଦେବରାଜ ବ୍ରହ୍ମର୍ଷି ସାଧୁ ଅନ୍ତ ଚହିଁ ।
ବିଷ୍ଣୁ ନଖକୋଣୁ ବହେ ଯେଉଁ ଧବଳାଙ୍ଗୀ
ମୂକତ ହୁଅନ୍ତି ନରନାରୀ ଦେବଦେବୀ ।
ସୁବୁଦ୍ଧି ମନ୍ତ୍ରୀ ହୋଇଣ ନ ଜାଣୁ ତୁ କିଛୁ
ବିଷ୍ଣୁ ଅଂଶେ ନ ଜନ୍ମିଲେ ରାଜା କେ ହୋଇଛି
କୁବେର ଅଂଶ ହେଳଣ ଜନମ ନ ହେଲେ
ସାଧବ ହୋଇବ କାହୁଁ ମହାଜ୍ଞାନୀ ହେଲେ ।
ଗନ୍ଧର୍ବ କଳା ନ ଥିଲେ ସାଧ କ ଗାୟନ
ମୁନିଅଂଶ ନ ଥିଲେ କି ଶାସ୍ତ୍ରେ ହେବ ଜ୍ଞାନ ।
କାମ ଦେବାଂଶ ନ ଥିଲେ କାହିଁ ରୂପବନ୍ତ
ହନୁଙ୍କ କଳା ନ ଥିଲେ ନୋହି ବଳବନ୍ତ ।
ତୁ ମନ୍ତ୍ରୀ ଜଗତଜନମାନଙ୍କର ବନ୍ଧୁ
ସୁବୁଦ୍ଧି ପଣ୍ଡିତ ହୋଇ ଜଗନ୍ନାଥ ନନ୍ଦୁ ।
ଶକୁନି ବୋଇଲା ଜାଣ ଦେବତା ହୋଇଲେ
ସଭାରେ ଗଣିତା ନୁହେଁ ହତ୍ୟାଦୋଷ ଥିଲେ
ତୀର୍ଥ ହୋଇକରି ଯେବେ ହେବ ଦୋଷକାରୀ
ବ୍ରାହ୍ମଣ ହୋଇଣ ଯେବେ ହେବ ଅନାଚାରୀ ।
ଅନ୍ୟାୟୀ ଦ୍ୱିଜେ ନ ଜାଣି ତାକୁ କଲେ ମାନ୍ୟ
ଆପଣା ଐଶ୍ୱର୍ଯ୍ୟ ତୁଟେ ପୁଣ ହୁଏ ହୀନ ।
ଏମନ୍ତ ବିଚାର ବସି କରନ୍ତେ କୌରବ
ସଭା ତେର ପାବଚ୍ଛରେ ଉଭା ବାସୁଦେବ ।
ଝର ଝର ହୋଇ ଅଶ୍ରୁ ଝୀଳ ଯାଏ ବହି
ସବୁ ସହନ୍ତି ଯୁଧିଷ୍ଠି ଦେବ କାର୍ଯ୍ୟ ପାଇଁ ।
ବିଦୁର ବୋଇଲା ତୁହି ଜଗତର ପ୍ରଭୁ
ଅଭିହିଁ ହିଂସା ପଣ କେତେ ତୁ ସହିବୁ ।
ଅବଶ୍ୟ ପ୍ରାଣରେ ନାଶ ହୋଇବେ କୌରବ
ଚକ୍ରରେ ଛେଦନ କର ଏମନ୍ତ ପ୍ରସ୍ତାବ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ହୋ ବିଦୁର
ଯୁଧିଷ୍ଠି ଦେବଙ୍କ ଏହି ସମସ୍ତେ ସୋଦର ।
ମଧ୍ୟପାବର ପଣରେ ଆସିଅଛୁ ମୁହିଁ
ଯାଙ୍କୁ କେମନ୍ତେ ନାଶିବ ସ୍ୱାମିଙ୍କୁ ନ କହି ।
ଶୁଣିଲେ କୋପ କରିବେ ଦ୍ରୌପଦୀର ସାଇଁ
ଏମନ୍ତ ବାକ୍ୟ କହିଲେ ଦେବ ଭାବଗ୍ରାହୀ ।
ଗୋବିନ୍ଦ ମୁଖରୁ ଏହା ଶୁଣିଣ ବିଦୁର
ବୋଇଲେ ସତରଣ ପ୍ରଭୁ ଏ ଦୁର୍ଯ୍ୟୋଧନର ।
ଚହୁଁ ଆସ୍ଥାନେ ଉଠିଣ ଅନୁବଣ୍ଟୀ ସୂତ
ଦୁର୍ଯ୍ୟୋଧନକୁ କହିଲା ହୋଇଣ ବିନୀତ ।
ବାବୁ ତୁମ୍ଭେ ଜମ୍ବୁଦ୍ୱୀପେ ପୃଥ୍ୱୀ ଧାରଣା
ଦିବ୍ୟଚକ୍ଷୁ ଥାଉଁ ଥାଉଁ ହେଉଅଛ ବଣା ।
ଶ୍ରୀ ହରି ବିଜେ କରନ୍ତୁ ଆସି ଆସ୍ଥାନରେ
ଦେବର୍ଷି ବ୍ରହ୍ମର୍ଷି ଅଛନ୍ତି ସଙ୍ଗରେ ।
ଚତୁର୍ଦ୍ଦଶ ଦଣ୍ଡ ଆସି ହୋଇଲାକ ବେଳା
କମ୍ପୁତ କାରଣେ ତୁମ୍ଭେ କର ଏତେ ହେଳା ।
ଆଜ୍ଞାଦିଅ ଆସ୍ଥାନକୁ ଆସନ୍ତୁ ଶ୍ରୀହରି
ମୋ ବାକ୍ୟେ କୋପ ନ କର ଅନୁଗ୍ରହ କରି
ବିଦୁର ବାକ୍ୟେ ସାନନ୍ଦ ରାଜା ଚକ୍ରବର୍ତ୍ତୀ
ବୋଇଲା ଆସ୍ଥାନେ ବିଜେ କରନ୍ତୁ ଶ୍ରୀପତି ।
ବାସବର ଆଜ୍ଞା ଯେହ୍ନେ ପାଳଇ ମାତଳି
ସ୍ୱପନ ସୁଲଭ ପ୍ରାପ୍ୟେ ବିଜେ ବନମାଳୀ ।
ଦୁଃଶାସନ ଦୁର୍ଜ୍ଜୟ ଯେ ଛାଡ଼ିଦେଲେ ପଥ
ସଭାରେ ବିଜୟ କଲେ ଆସି ଜଗନ୍ନାଥ ।
ଆକାଶରେ ଦେଖୁଥିଲେ ଥାଇ ଦେବଗଣ
ଶୂନ୍ୟବାଣୀ ହେଲା ଶତ୍ରୁ ନାଶ ନାରାୟଣ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଆବର ଶକୁନି
ବାହ୍ଲିକ ସୋମଦତ୍ତ ଯେ କରିଲେ ଦଇମା ।
ଆସ୍ଥାନରେ ବସିଥିଲା ରାଜା ଧାର୍ତ୍ତରାଷ୍ଟ୍ରି
କାହାକୁ ନ କଲେ ମାନ୍ୟ ଆସ୍ଥାନରୁ ଉଠି ।
ରାଜା କର୍ଣ୍ଣରେ କହିଲା ଯାଇଣ ଶକୁନି
ରାଜ୍ୟ ମାଗି ଆସିଅଛୁ ପାଣ୍ଡବାଙ୍କ ହେନ ।
ଦୁର୍ଯ୍ୟୋଧନ ବୋଲେ ମାମୁଁ ପ୍ରତିବାକ୍ୟ ଦିଅ
ଶକୁନି ବୋଇଲା ତୋର କହିବା ବିଧେୟ ।
ସେହୁ ଜଗତର ନାଥ ତୁମ୍ଭ ମହୀଧର
ଏହି ବାକ୍ୟ ହୋଇବ ନା ତାଙ୍କର ତୋହର
ବେନି କାଖରେ ଶ୍ରୀକୃଷ୍ଣ ବେନିହସ୍ତ ଦେଇ
ସଭାର ମଧ୍ୟରେ ଦେବ ଛନ୍ତି ଉଭା ହୋଇ ।

ବସ ବୋଲି ନ ବୋଇଲ ସେ ମାନଗୋବିନ୍ଦ
ହୃଦ ଯାର କୁନ୍ତ ତାହୁଁ ହୋଇବ ସୁସାଧ୍ୟ ।
ଦୁର୍ଯ୍ୟୋଧନ ପ୍ରତିବାକ୍ୟ ବୋଲେ ନାରାୟଣ
କିମର୍ଥେ ଆମ୍ଭର ପୁରେ କରିଲ ପ୍ରୟାଣ ।
କିବା ଅନୁଗ୍ରହ ମୋତେ ଦେଖିବା ନିମନ୍ତେ
ଅବା କି କାର୍ଯ୍ୟ ଆଗତ କହ ଏବେ ମୋତେ
ହରି ହେ ବଡ଼ ହରଷ ହୋଇଲି ମୁଁ ଆଜ
ଅସୁର ଦର୍ପ ଭୟ କି ହେଲା ଦେବରାଜ ।
ଦେବତା ବ୍ରାହ୍ମଣ କିବା ପିତୃମାତୃ କାର୍ଯ୍ୟ
ମୋତେ ସମ୍ବାଦ ଦେବାକୁ କରିଛ କି ବିଜେ
ଜନମ ସୁଫଳ ହେଲା ବିଜେ କଲ ଆଜ
ବଡ଼ ସୁଲଭ ଆଜ ମୋ ହେଲ ଦେବରାଜ ।
ସ୍ୱାମି ଏ ଦ୍ୱାପରଯୁଗ ସାର୍ଥକତା ଲେଖି
ଶ୍ରବଣେ ଯା ଶୁଣିଥିଲି ତାହା ନେତ୍ରେ ଦେଖି ।
ଆହେ ହରି ରାଗ ମୋହ ହିଂସା ଅପବାଦେ
ମାୟା ମୋହେ ପଡ଼ି ମୁହିଁ ବଣା ହେଲି ହାଦେ
ପରମାନନ୍ଦ ପୁରୁଷ ଆସି ସଙ୍ଗେ ଖେଳା
ତୋତେ ସାମାନ୍ୟ ପରାୟେ ବୁଝି କରୁ ହେଳା
ଗୋପପୁରେ ଖେଳୁଥାଉ ଗୋପାଳଙ୍କ ମେଳେ
ଅତି କୌତୁକେ ମାତିଲୁ ତୁହି ଭବଖେଳେ
ବତ୍ସଙ୍କୁ ନ ପାଇ ନନ୍ଦ ଲେଉଟିଗଲ ବାଟେ
ଚୂଳଗୋଟି ଧରି ତୋର ପିଟିଲେକ ପୁଟେ ।
ଗୋଟାଏ ଗୋପାଳ ପୁଅ ଖେଳ କୁତୂହଳେ
ସୁପୋତେ ମାଇଲା ନେଇ ତୋର ବକ୍ଷସ୍ଥଳେ
ପଳାଇ ଯାଆନ୍ତେ ତୁହି ପଡ଼ିଲୁ ହାମୋଡ଼ି
ସେ ତେଇଁ ଯାଆନ୍ତେ ତୋର ଶିରେ ପାଦ ପଡ଼ି
କୁତୂହଳ ପୁରୁଷ ତୁ ସହ୍ୟ କଲୁ ତାହା
ସେହି ଦୋଷ ନ ଦେଲୁ ତୁହି ଚକ୍ରବାହା ।
ସ୍ୱାମି ସଂସାର କୁଳେ ଭ୍ରମୁ କୁତୂହଳେ
ନାନାଦି କୌତୁକ କରି ମାଧବର ତଳେ ।
ଏମନ୍ତ ଚରିତ ତୋର ଦେଖିଣ ଗୋପାଳ
ଧାଇଁ ଯାଇଁ ଧଇଲ ସେ ଦୁହିଁଙ୍କର ବାଳ ।
ତହିଁ ପୁଣି ବସ୍ତ୍ରରୂପ ଧରି ଦେବହରି
ଫେଲି ପକାଇଲୁ ଚନ୍ଦ୍ରସେଣା ଭୁଜ ଧରି ।
ସହସ୍ର ଯୋଜନେ ଯାଇଁ ପଡ଼େ ଚନ୍ଦ୍ରସେଣା
ଷଡ଼ମାସ ବୁଲି ବୁଲି ପଥ ହେଲ ବଣା ।

ଏମନ୍ତ ଚରିତମାନ ଶୁଣିଅଛୁ କର୍ଣ୍ଣେ
ପ୍ରତ୍ୟେ କରୁ ନ ଥିଲି ମୁଁ ନ ଦେଖି ନୟନେ
ଗୋବିନ୍ଦ କହିଲେ ତୁହି କହିଲୁ ଯେମାନ
ମିଥ୍ୟା ନୁହଇ ଏମାନ ପ୍ରକୃତ ବଚନ ।
ଦୁର୍ଯ୍ୟୋଧନ ବୋଲେ ଦୋଷ ନ ଧର ତାଙ୍କର
ମୋ ଦୋଷ ନ ଧର ମୁହିଁ ତୋର ସହୋଦର
ତୁ ଦେବ ମୋହର ଦୋଷ କରିବୁ ଉପେକ୍ଷା
କୋପ ଛାଡ଼ି ନାରାୟଣ ମୋତେ କର ରକ୍ଷା ।
ଗୋବିନ୍ଦ ବୋଇଲେ ଭ୍ରାନ୍ତି ନ କର ତୁ ମନେ
କୋପ କରିବି ମୁଁ ତୋତେ କେଉଁ ପ୍ରୟୋଜନେ
ଦୁର୍ଯ୍ୟୋଧନ ବୋଲେ ମୋର ସୁହୃଦ ତ ଅଛୁ
ମୋର ପୁରରେ ଭୋଜନ କର ଶିଷ୍ଟବନ୍ତି ।
ପବିତ୍ର ବ୍ରାହ୍ମଣ ଏହୁ ଭରଦ୍ୱାଜ ନାତି
ସମସ୍ତ ରନ୍ଧଣା ଜାଣେ ଶୌଚ ଯୋଗ ପ୍ରତି
ଗୋବିନ୍ଦ ବୋଇଲେ ହତ୍ୟାକାରୀ ଅସ୍ତ୍ରଧାରୀ
ତାହାକୁ ବ୍ରାହ୍ମଣ ବୋଲି ଲେଖ କେଉଁ ପରି ।
ଭୋଜନ ଅର୍ଥେ ନା ତୁହି କଲୁ କୁରୁରାଜ
ସନ୍ଧିକି ଆସିଲି ତାର ହେଉ କେଉଁ କାର୍ଯ୍ୟ ।
ଦୁର୍ଯ୍ୟୋଧନ ବୋଲେ ହରି କେବଣ ସନ୍ଦେଶ
ବିସ୍ତାରଣ ସେହି କଥା ମୋ ଆଗେ ପ୍ରକାଶ ।
କୃଷ୍ଣ ଭଣି ଶୁଣ କୁରୁରାଜ ଅଧିକାରୀ
ଯୁଧିଷ୍ଠିର ଦେବ ସୋଦର ଅଟନ୍ତି ତୋହର ।
ତାହାଙ୍କର ପିଅର ଯେ ପାଣ୍ଡୁ ରାଜା ଥିଲେ
ଧୃତରାଷ୍ଟ୍ରେ ରାଜ୍ୟ ଦେଇ ବନବାସ ଗଲେ ।
ଶତଶୃଙ୍ଗ ପର୍ବତରେ ଘୋର ଅରଣ୍ୟରେ
ଶୀତ ଖରା ବର୍ଷା । ସେହି ବହିଲେ କଷ୍ଟରେ ।
କନ୍ଦମୂଳ ଖାଇ ଦୁଷ୍ଟ ଦାନବଙ୍କୁ ନାଶି
ଏ ପୃଥ୍ୱୀ ରାଜ୍ୟକୁ ରକ୍ଷା କଲେ ଦିବାନିଶି ।
ଅନ୍ନପଠେଲ ବାନ୍ଧିଣ ବସିଲେ ଚାରିଆଡ଼
କୋଇନ୍ତା ପାଳିଲେ ତୋତେ ଅତି ଯତ୍ନକରି ।
ଏବେ ସେ ପାଣ୍ଡବେ ତୋତେ ନିଜରାଜ୍ୟସ୍ଥାପି
ବୁଲିଲେ ସେ ଘୋରବନେ ବାଳକ ଅଦ୍ୟାପି
ଅନେକ ପାଇଲେ ଦୁଃଖ ଥାଇଣ ବନସ୍ତେ
ଅଜ୍ଞାତେ ବର୍ଷ ବଞ୍ଚିଲେ ବିରାଟ ପୁରତେ ।
ଏବେ ଆସିଣ ଉଦିତ ହେଲେ ଇନ୍ଦ୍ରପ୍ରସ୍ଥେ
ସୋଦର ପ୍ରତିପାଳିବା ଲାଗାଇ ନା ତୋତେ

ମୋତେ ଦେଇ ଆଜ୍ଞା ଦେଲେ ଧରମ ସୁଧିଷ୍ଠି
ଧାର୍ତ୍ତରାଷ୍ଟ୍ରେ ମାଗ ହରି ଚଢ଼ା ପାଞ୍ଚଗୋଟି ।
କଣ୍ଟକ ମାନଙ୍କେ ଚଢ଼ା ପାଞ୍ଚଖଣ୍ଡି ଦେଲେ
କୋଣକରେ ପଡ଼ିଥିବ ଭାଇଙ୍କର ଭୂତଳ ।
ଦୁର୍ଯ୍ୟୋଧନ ଭୁଲେ ଥାଉ ପ୍ରୀତି ନିରବଧି
ଧୃତରାଷ୍ଟ୍ରଙ୍କ ଚରଣେ ଥିବି ମୁଁ ଆରାଧି ।
ମଧ୍ୟେ ଧରି ଲକ୍ଷଣରେ ଅଟେ ତୋର ଜନ୍ମ
ସୋଦର ନ ସମ୍ଭାଳିଲେ କିପ ଧର୍ମମାନ ।
ଯୁକତେ ସେହୁ ଅଟନ୍ତି ତୋର ଉପକାରୀ
ଅନେକ ସଙ୍କଟୁ ତୋତେ ଅଛନ୍ତି ଉଦ୍ଧାରି ।
କଲା ଉପକାରମାନ ନ ଦେନେ ଯେ ଜନ
ନିଶ୍ଚେଁ ଜାଣିବ ସେ ହେବ ନରକେ ପତନ ।
ଚଢ଼ା ପାଞ୍ଚଖଣ୍ଡ ରାଜା ଦିଅ ପାଣ୍ଡବଙ୍କୁ
ଚିରଲକ୍ଷ୍ମୀ ଘେନିଯାଅ ଲଭିଣ ସୁଖକୁ ।
ଦୁର୍ଯ୍ୟୋଧନ ବୋଲେ ହରି ଆଜ ଏଥେଁ ରହ
କାଲି ପ୍ରଭାତ ଆସ୍ଥାନବେଳେ ମୋତେ କହ ।
ଘଡ଼ି ଘଡ଼ିଆ ଜଣାଏ ଆସି ସନ୍ଧ୍ୟାକାଳ
ସୁବଳ ପ୍ରକାଶ ହେଲା ମନୋହର ବେଳ ।
ସୂର୍ଯ୍ୟବେଳରେ ଭୁଞ୍ଜିଲେ ଅନ୍ନ ହୁଏ ପାକ
ଚନ୍ଦ୍ରବେଳରେ ଭୋଜନ ନୁହଇ ସୌଖ୍ୟକ ।
ଦୁର୍ଯ୍ୟୋଧନ ବୋଲେ ହରି ସେନ ନିବେଦନ
ଆହ୍ନିକ ସାରି ଏଠାରେ କରିବା ଭୋଜନ ।
ଗୋବିନ୍ଦ ବୋଇଲେ ଯିବୁ ବିଦୁର ଗୃହକୁ
ସେଠାରେ ଆଜ ଭୋଜନ ଦେବ ସେ ଆମ୍ଭକୁ ।
ସଙ୍ଗେ ଘେନି ବିଦୁରକୁ ଯାନ୍ତି ବନମାଳୀ
ଦେଖି ଦୁର୍ଯ୍ୟୋଧନ ରାଜା ବୋଇଲାକ ଚଳି ।
ମାମୁଁ ମୋହର କହିଲ ଯେଉଁ କଥାମାନ
ସେ ମହାମନ୍ତ୍ରୀର କଥା ହୋଇବ କି ଆନ ।
ବାଳକାଳରୁ ବଢ଼ିଲୁ ଗୋପାଳଙ୍କ ମେଳ
ଛାଡ଼ି ନ ଗଲା ତାଙ୍କର ପ୍ରକୃତିରୁ ଛଳେ ।
ପୁନରପି ବୋଇଲା ସେ ଶୁଣିବା ଶ୍ରୀପତି
କହୁଛୁ ଏବେ ବିଦୁର ଅଟେ ଯେଉଁ ଜାତି ।
ଶୂଦ୍ରସେନ ବୋଲି କରି କେଇ ନୃପତି
ତାହାର ଦୁହିତା ନାମ ଅଟେ ଜମ୍ବୁବତୀ ।
ପରାଶର ପୂଜନକଲେ ତା ସଙ୍ଗରେ ପ୍ରୀତି
ବ୍ରାହ୍ମଣ ବୀର୍ଯ୍ୟେ ଶୂଦ୍ରାଣୀ ଗର୍ଭରୁ ଉତ୍ପତ୍ତି ।

ପ୍ରତ୍ୟକ୍ଷେ ନର ଶୃଗାଳ ବୋଲନ୍ତି ଏହାକୁ
ପଣ୍ଡୁ ଧୃତରାଷ୍ଟ୍ର ତେଣୁ ତ୍ୟାଗକଲେ ତାକୁ ।
ଦ୍ୱିଜହୋଇ ଶୂଦ୍ରଠାରୁ କଲେ ପ୍ରତିଗ୍ରହ
ଜାଣିଥାଅ ସେହି ପ୍ରାଣୀ ନର୍କେ ହୁଏ ଦାହ ।
ବ୍ରାହ୍ମଣ ହୋଇଣ ଯେବେ ଶୂଦ୍ର ଅନ୍ନ ଭୁଞ୍ଜି
ନାଶକରି ଦଣ୍ଡେ ହୁଏ ବହୁକାଳ ଗଞ୍ଜି ।
ଦ୍ୱିଜ ହୋଇ ଶୂଦ୍ରାଗର୍ଭେ ଯେବେ ବୀର୍ଯ୍ୟଦିଏ
ରଉରବ ନର୍କେ ସେହୁ ଚିରଦିନ ଥାଏ ।
ବ୍ରାହ୍ମଣ ହୋଇଣ ଯେବେ ଶୂଦ୍ରଙ୍କରେ ସେବା
ନର୍କେ କୀଟ ହୁଏ ସେହୁ ମନରେ ରଖିବା ।
ବ୍ରାହ୍ମଣ ହୋଇଣ ଯେବେ ହରେ ପରନାରୀ
ଯମ ଶାସ୍ତି ଦିଏ ତପ୍ତ କଟାହରେ ଭରି ।
ବ୍ରାହ୍ମଣ ହୋଇଣ ଯେବେ ହରେ ପରବିତ୍ତ
କୋଟି ଜନମ ନରକୁଁ ନୁହଇ ମୁକତ ।
ଏରି ତୁ ଜାତ ହୋଇଛୁ ପଦ୍ମ ଋଷିଙ୍କଠେ
ଶୂଦ୍ରାନ୍ନେ ବଳାଉ ତଉ ତୋର ପ୍ରୀତିଆଶେ
ଯଥାସ୍ୱବେ ପ୍ରୀତି ତୁହି କରନ୍ତୁ ଯୁକତେ
ଅନ୍ୟ ଜାତି ଘରେ ଅନ୍ନ ଭୁଞ୍ଜିବୁ କେମନ୍ତେ ।
ଅନେକ ଧିକ୍କାର କରି କହି ଧାର୍ତ୍ତରାଷ୍ଟ୍ରି
ଆସ୍ଥାନ ଉପରୁ ତହୁଁ ବେଗେ ଗଲା ଉଠି ।
ଗୋବିନ୍ଦ ବିଜୟ କଲେ ବିଦୁରର ପୁରେ
ଅନେକ ଯୋଗାଡ଼ କରେ ବିଦୁର ସମ୍ଭାରେ ।
ନୋହଇ ଗଙ୍ଗା ଯମୁନା ଯେଉଁ ନଦୀଗୋଟି
ବିଧିବିଧାନରେ ସ୍ନାନ କଲା ଧାର୍ତ୍ତରାଷ୍ଟ୍ରି ।
ନିତ୍ୟକର୍ମ ବିଧି ସାରି ତହିଁ ନୃପରାଜ
ମନୋହିକ ବିଜେକଲା ନ କରିଣ ବ୍ୟାଜ ।
ସୁବାସ ଅନ୍ନ ବ୍ୟଞ୍ଜନ ଯା ଦେବତା ଭୋଗି
ଭୁଞ୍ଜି ଆଚମନ ସାରି ପାନ ହେଲା ଲାଗି ।
ଦଉସମ ଲଗି ହୋଇ ଦୁର୍ଯ୍ୟୋଧନ ରାଜା
ନିଅବକାଶେ ଯାଇଣ ବିଜେ କଲା ଶଯ୍ୟା
ନଦ୍ରାତେକିଣ ଦେବାଙ୍ଗ ବସ୍ତ୍ର ହେଲା ଲାଗି
ଦିବ୍ୟ ଅବତାର ହୋଇ ବାହାରିଲା ବେଗି
ଚନ୍ଦନ କସ୍ତୁରୀ ଅଙ୍ଗେ ହୋଇଲା ଲେପନ
ସୁବାସରେ ଚଉଦିଗ ହୋଇଗଲା ପୂର୍ଣ୍ଣ ।
ବିଜେକଲା ଯାଇ ଚନ୍ଦ୍ରଶାଳାର ଭବନେ
ଛତିଶିଏ ପ୍ରବେଶିଲେ ଆସି ସନ୍ନିଧାନେ ।

ଖଣ୍ଡନ୍ତି ଅତି ହରଷେ ଯେ ସର୍ବ ଗଣିକା
ତାଣ୍ଡବ ଆଳାପନ ଯେ କରନ୍ତି ନାୟିକା ।
ଏମନ୍ତ ସମୟେ ପୁଣି ପ୍ରଭୁ ଦାମୋଦର
ବିଜୟ କରିଲେ ଯାଇ ବିଦୁର ମନ୍ଦିର ।
ଆହ୍ନିକ ସାରିଲେ ନାଥ ଋଷିଗଣ ମେଳେ
ଅନେକ କୌତୁକ କଲେ ଗଙ୍ଗାନଦୀ ଜଳେ ।
ଅନେକ ଭକତଭାବେ ଖଟିଲ ବିଦୁର
ମଣୋହି କୋଠରେ ଥାଳି ବଢ଼େ ଦାମୋଦର
ଶର୍କରା ଅମାନ ଖଣ୍ଡ କ୍ଷୀର ଦାସପଣା
ଅମୃତପାଣି କଦଳୀ ପଇଡ଼ ଅଗଣା ।
କେଶର ସିଙ୍ଗାଡ଼ା ଲଗି ହେଲେ ନାରାୟଣ
ସୁପକ୍ୱ ଫଳ ରଖାଏ କରିଲେ ଭକ୍ଷଣ ।
ନଟିକାଳ ନାନାଫଳ ଖଣ୍ଡ ସେ ଏଣ୍ଡୁରି
ଖଣ୍ଡର ଚକୁଳି ପୁଣି ଦୁଗ୍ଧ ସରପୁଳୀ ।
ବିଦୁର ଭକତି ବଚନେ କଲ ସେତେବେଳେ
ସ୍ୱର୍ଗ ଦେବତା ଇଚ୍ଛିଲେ ହରି ତେତେବେଳେ
ଅମୁବଛର ନନ୍ଦନ ଜାଣେ ସବୁ ଦୃଷ୍ଟି
ଋଷିଙ୍କି ଭୋଜନ ଦେଲ ଯେଉଁ ରୂପେ ବସି ।
ପ୍ରସନ୍ନ ହୋଇଣ ବର ଦେଲେ ସଦର ।
ବଇକୁଣ୍ଠେ ଥିଅ ତୁମ୍ଭ ବିଷ୍ଣୁ ଲୋକବାସୀ ।
ଭୁଞ୍ଜନ୍ତି ଜଗତନାଥ ହରଷ ବଦନେ
ପରଷଇ ବିଦୁର ସେ ଭୋଳ ହୋଇ ମନେ ।
ପ୍ରସନ୍ନେ ଅଭୟ ବର ଦେଲେ ନନ୍ଦଶିଶି
ବୋଇଲେ ବିଦୁର ଥିଅ ବିଷ୍ଣୁପୁରବାସୀ ।
ଜଗତବନ୍ଧୁ ନିସ୍ତାର କରିବା ନିମନ୍ତେ
ଭୋଜନବେଳେ କୌତୁକ କଲେ ଜଗନ୍ନାଥେ
ମହାପ୍ରଭୁ କରତଳ ଅଞ୍ଜନ୍ତି ବଢ଼ାଇ
ଘର । ଆସେ ବିଦୁର ଭଏ ଜଣୁ ନାହିଁ ।
ଯେତେ ଭୋଳ ହୋଇଅଛି ବିଦୁରର ମନ
କଦଳୀର ଚୋପା ଦେଲ ତୋଳିଣ ହସ୍ତେଣ ।
ଅନ୍ତର୍ଯ୍ୟାମୀ ନାଥ ଭକ୍ଷିଦେଇଣ ରି ତାହା
ବୋଇଲେ ବିଦୁର ବର ଦେନ ଦେବ ଯାହା
ଏମନ୍ତ ବର ତାକୁ ଦେଲେ ବ୍ରହ୍ମଋଷି
ବୈକୁଣ୍ଠେ ବିଷ୍ଣୁ ଲୋକରେ ଥାଅ ତୁମ୍ଭେ ବସି
ତୁମ୍ଭରେ କହେ ବିଦୁର କର ଯୋଡ଼ିକର
ଶୁଣ ତ୍ରୈଲୋକ୍ୟର ନାଥ ବ୍ରହ୍ମାଣ୍ଡାଧିକାରୀ ।

ମଧ୍ୟସ୍ଥ ପଣରେ କାର୍ଯ୍ୟ ନ ହୋଇଲା କିଛି
ବାହୁଡ଼ି ଦର୍ଶନ କର ଧର୍ମଙ୍କୁ ଶ୍ରୀବତ୍ସି ।
ଗୋବିନ୍ଦ ବୋଇଲେ ତୁମ୍ଭ କହୁ ମନ୍ଦକଥା
ଧର୍ମ ମୋତେ ନିରଞ୍ଜନ ପରମେ ଦେବତା ।
ତାଙ୍କ ଆଜ୍ଞାରେ ଅଇଲି ହୋଇ ଦୂତକାରୀ
କାର୍ଯ୍ୟ ସିଦ୍ଧି ନ ହୋଇଲା ଯିବି କେଉଁ ପରି ।
ବିଦୁର ବୋଲେ ଆମ୍ଭର ସ୍ୱାମୀ ଦୂତପଣେ
ତୁମ୍ଭହୁଁ ଦୂତପଣେ କି ଅଛି ଆନ ଜଣେ ।
ପାଞ୍ଚଗଡ଼ା ମାଗୁ ସ୍ୱାମି ଯୁଧିଷ୍ଠିର ବାକ୍ୟେ
ତୃପ୍ତି ହେବେ କି ସେମାନେ ଏକଇ ପଡ଼ାକେ
ମାନଗୋବିନ୍ଦ ଯେ ଦେଉ ନ ଥିଲ ତ କିଛି
ଏବେ କି ସେ ପାଞ୍ଚଗ୍ରାମ ପାଇବ ମଣୁଛି ।
ଅଥବା ବିତର୍କ କରି ଦେନାଇବ ଗ୍ରାମ
ତେବେହେଁ ତୃପ୍ତ ହେବେ କି ହେ ପୁରୁଷୋତ୍ତମ
ଶୁଣି କହନ୍ତି ଗୋବିନ୍ଦ ସେ ପଞ୍ଚପାଣ୍ଡବେ
ଏକକୁ ଆରେକ ଯେହ୍ନ ବଳବନ୍ତ ସର୍ବେ ।
ପାଞ୍ଚଜଣ ପାଞ୍ଚଗ୍ରାମ ଅଛନ୍ତି ଯେ ମାଗି
କାହାର ବଚନେ ଏବେ ପାରିବ ନ ଘର୍ଷି ।
ବୋଲେ ଦେଉ ପାଞ୍ଚଗ୍ରାମ ନ ଦେଉ ବା କିଛି
ସଙ୍ଗେ ଫିଟିଯିବ ଯେ ରହନ୍ତୁ ସେ ମୂର୍ଚ୍ଛି ।
ଶୁଣ ହୋ ବିଦୁର ତୁମ୍ଭ ବଦନ୍ତି ମାଧବ
ତୋହର ବଚନେ ହେବ ସର୍ବ ହାନିଲାଭ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ଚଇତନ
ଭୀଷ୍ମ ଦ୍ରୋଣ ଗଲେ ଦୁର୍ଯ୍ୟୋଧନ ସନ୍ନିଧାନ
ପ୍ରସ୍ତାବ ବଚନମାନ ବୋଇଲେ ଗାଙ୍ଗେୟ
ମଧ୍ୟସ୍ଥପଣେ ବିଜେ ଦେବ ଯଦୁରାୟ ।
ନାରାୟଣଙ୍କର ତୁଲେ ଋଷିମାନେ ସାକ୍ଷୀ
ଯୁଧିଷ୍ଠିର ଅଜ୍ଞାରେ ପାଞ୍ଚପଡ଼ା ମାଗୁଅଛି ।
ଶୁଣି ପ୍ରତିବାକ୍ୟ ଦେଲ ମାନଚକ୍ରବର୍ତ୍ତୀ
ବେଣପଡ଼ା ଦେଇ ତୃପ୍ତି କରିବା ଶ୍ରୀପତି ।
ତହୁଁ ସନ୍ତୁଷ୍ଟ ହୋଇଲେ ଭୀଷ୍ମ ଦ୍ରୋଣ ବେନି
ଏହା ଶୁଣି ପ୍ରତିବାକ୍ୟ ଦେଲକ ଶକୁନି ।
ଆହେ ଭୀଷ୍ମ ଦ୍ରୋଣ ତୁମ୍ଭେ ଏମନ୍ତ ବୋଇଲ
ଜଗନ୍ନାଥଙ୍କୁ ଦି ଖଣ୍ଡ ପଡ଼ା ଦେବା କଲ ।
ଯଦି ଏବା ପାଞ୍ଚଗ୍ରାମ ଦେବ କୁରୁପତି
ତଥାପି ଗୋବିନ୍ଦ ଚିତ୍ତ ନ ହୋଇବ ଶାନ୍ତି ।

ଯଦି ଅବା ତୁମ୍ଭେ ତାଙ୍କୁ ଏକଗ୍ରାମ ଦେବ
ଗ୍ରାମଟିକେ ସେ ଚରାଚର ସମସ୍ତ ଘେନିବ ।
ଶୁଣ କୁରୁନାଥ କହେ ନାରାୟଣ କଥା
ସତ୍ୟଯୁଗେ ବଳିରାଜା ଦାନବ ବାରତା
ବୃନ୍ଦାର୍କ ନାମେ ରଚିଲା ସେହୁ ଏକଯଜ୍ଞ
ଦେବଙ୍କେ ନମାନେ ଆସି ନେବେ ହବିର୍ଭାଗ ।
ଦେବତାଙ୍କୁ ଧ୍ୱଂସି ସ୍ୱର୍ଗେ ହୋଇବ ସେ ଇନ୍ଦ୍ର
ବସିବ ଅମରପୁରେ ଘେନି ଦୈତ୍ୟବୃନ୍ଦ ।
ନାରଦ କହନ୍ତେ ଦେବେ ଗଲେ ଭୟକରି
କ୍ଷୀରାର୍ଣ୍ଣବେ ନାରାୟଣେ କରିଲେ ଗୁହାରି ।
ବୋଇଲେ ବଳି ଅନୀତ ଶୁଣ ଯୋଗବାସୀ
ବୃନ୍ଦାର୍କ ଯଜ୍ଞେ ଆମ୍ଭଙ୍କୁ ପକାଇବ ଧ୍ୱଂସି ।
ତବ ହେତୁ ଜାତ ବୋଲି ନ ବୋଲୁଛୁ କିଛି
ତିନିପୁର ଅସୁରଙ୍କ ଭୋଗ ହେଉଅଛି ।
ଆଦି ସିଂହିକା ଗର୍ଭରୁ ଜାତ ହେଲା ରାହୁ
ରାହୁଠାରୁ ଜାତ ହେଲା ପୁତ୍ର ବୀରବାହୁ ।
ବୀରବାହୁ ପୁତ୍ର ହେଲା ଅମୁନାମେ ଦୈତ୍ୟ
ବଜ୍ରକବଚ ବୋଲିଣ ହେଲା ବେନିପୁତ୍ର ।
ବଜ୍ରକବଚର ପୁତ୍ର ହେଲା ହିରଣ୍ୟାକ୍ଷ
ପ୍ରହଲାଦ ନାମେ ପୁତ୍ର ହେଲା ତାର ଦକ୍ଷ ।
ପ୍ରହଲାଦର ନନ୍ଦନ ବୈରୋଚନ ରାଏ
ତା ଭାର୍ଯ୍ୟା ମାଳଶ୍ରୀ ଗର୍ଭେ ବଳି ଜାତ ହୁଏ ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ସର୍ବଚିନ୍ତାମଣି
ଅସୁର ଭୟରୁ ଏକା ଉଦ୍ଧାରନ୍ତା ପ୍ରାଣୀ ।
ବଳି ଧ୍ୱଂସନରେ ଦେବ କର ଏବେ ବୁଦ୍ଧି
ତହୁଁ ବାମନର ରୂପ ହେଲେ ଦୟାନିଧି ।
ଅତି କ୍ଷୀଣରୂପ ହେଲେ ତହୁଁ ମହାଭାଗ
ବାମନ ଅଙ୍ଗୁଳି ମାତ୍ର ହୋଇଲେ ଉତ୍ସର୍ଗ ।
ଆହେ ଶିଷ୍ଟ କାଛେ ଛତା ହସ୍ତେ ବେଦପୋଥି
ଦଣ୍ଡ କମଣ୍ଡଳୁ ଧରି ବଇଷ୍ଣବ ମୂର୍ତ୍ତି ।
ବାମ କାନ୍ଧରେ ପଇତା ଉତ୍ତରୀୟ ଅଛି
କଣ୍ଠେ ତୁଳସୀର ମାଳ ନିକେ ପିନ୍ଧିଛି ।
ଯଜନ ଯାଜନ ଆଦି ଷଟକର୍ମ ମୁଦ୍ରା
ତମ୍ବାର କୁଣ୍ଡଳ କର୍ଣ୍ଣେ ଭୂଷଣ ସର୍ବଦା ।
ସୁନ୍ଦର ବ୍ରାହ୍ମଣ ଗାତ୍ରେ ଚିତା ଦ୍ୱାଦଶଟି
ସର୍ବଦା ମଉନବ୍ରତ ଶିଶୁକାୟ ଗୋଟି ।
ଅନନ୍ତ ଶାଖାରେ ସେହୁ ବାମନ ମୂରତି
ଏକକରେ ତାମ୍ରପାତ୍ର ଆର କରେ କାତି ।
ଭାଦ୍ରବ ଶୁକଳପକ୍ଷ ଏକାଦଶୀ ଦିନ
ଭୃଗୁବାରକୁ ଶ୍ରବଣା ନକ୍ଷତ୍ର ଯେ ପୁଣ ।
ସୁକର୍ମା ନାମକ ଯୋଗ ବଷ୍ଟି କରଣରେ
ବାମନ ପ୍ରବେଶ ଯାଇ ବଳିର ଦୁଆରେ ।
ବଳିଦ୍ୱାରେ ଅଶୀଲକ୍ଷ ମଲ୍ଲ ଥିଲେ ବସି
ବାମନ ଯାଉନ୍ତେ ନାକରେ ହାତଦେଇ ହସି
ମାଲେ ବୋଇଲେ ରେ ଶୁଣ ବାମନ ପୁରୁଷ
ମାପିବା ତୁମ୍ଭଙ୍କୁ ସ୍ୱାମି ବେଗ ହୋଇ ଆସ
ଚରଣ ଜାନୁ ଅଙ୍ଗୁଳି ଅଟଇ ଯେ ବଂଶ
ଅନ୍ୟ ଅନ୍ୟ ଅଙ୍ଗ ତାଙ୍କ ହୋଇବ ବତିଶ ।
ସୁବାହୁ ମାଲ ମାପିଲା ତୃଣଖଣ୍ଡେ ଘେନି
ମାପନ୍ତେ ବାମନାଙ୍ଗୁଳି ହୋଇଲେକ ପୁଣି ।
ବାଳୁତର ରୂପଗୋଟି ଆପଣେ ପ୍ରକାଶି
ବଳିଦ୍ୱାରେ ଦ୍ୱିଜବର ମିଳିଲେକ ଆସି ।
ଷଟକର୍ମ ମାଲମାନେ କହନ୍ତି ବଟଣ୍ଡା
କେବଣ ଦେଶରୁ ତୁମ୍ଭେ ବିଜେ କଲ ପଣ୍ଡା ।
ହସ୍ତରେ କୁଶ ତଣ୍ଡୁଳ ବେଦକାଣ୍ଡି ପୁଣି
ଅଣ୍ଟିରେ କୋକିଳ ପ୍ରାୟେ ଶୁଭେ ମନ୍ତ୍ରଧ୍ୱନି ।
ବାମନ ବୋଇଲେ ତୁମ୍ଭେ କୁଶଳରେ ଥାଅ
ବଳିରାଜାର ସମ୍ମୁଖରେ ବଚନ ଜଣାଅ ।
ବୋଲିବ ଅତିଥି ଦ୍ୱିଜ ବାମ୍ଭ ଦୂରଦେଶୀ
ବୁଭୁକ୍ଷିତ ହୋଇ ସେହୁ ଦ୍ୱାରେ ଅଛି ବସି ।
ଆଶୀର୍ବାଦ କରୁଅଛି ମୁଁ ତୁମ୍ଭମାନଙ୍କୁ
ରାଜ ଦର୍ଶନ କରାଅ ନେଇଣ ଆମ୍ଭଙ୍କୁ ।
ମାଲେ ବୋଇଲେ ପଣ୍ଡାଏ ଆସ୍ଥାନ ଚହଳ
ପୂର୍ଣ୍ଣାହୁତି ହେବ ଆଜ ତେଣୁ ବଡ଼ଗୋଳ ।
ମହା ମହା ବ୍ରାହ୍ମଣେ ଯେ ନ ପାରନ୍ତି ପଶି
ତୋତେ ସମ୍ମୁଖକୁ ନିଅନ୍ତେ ହେବୁ ଉପହାସୀ
କେହି ନ ଶୁଣିଲେ ଯହୁଁ ସେ ବ୍ରାହ୍ମଣ ବାଣୀ
କିଂଭୂତ ଭ୍ରାନ୍ତ୍ୟେ ମଣିଲେ ଦେବ ଚକ୍ରପାଣି ।
ଦ୍ୱାରେ ଥାଇ ବ୍ରାହ୍ମଣ ଯେ କରେ ବେଦଧ୍ୱନି
ଗହ ଗହ ଶବଦରେ କମ୍ପେ ପୁର ତିନି ।
ଢୋଲ ଦମାଲୁ ଠେମକ ଆଦି ଯେତେ ବାଦ୍ୟ
ସମସ୍ତ ବୁଡ଼ି ଶୁଭିଲା ବେଦଧ୍ୱନି ନାଦ ।

ଶବଦ ଶୁଣିବା ମାତ୍ରେ ଲକ୍ଷ୍ୟ କଲା ବଳୀ
କାହାର ଶବ୍ଦେ କମ୍ପିଲା ଏହି ମହୀସ୍ଥଳୀ ।
ବଳୀ ରାଜାର ଆଗରେ ଦୂତେ ଯେ ଜଣାଇ
ଏକ ବ୍ରାହ୍ମଣେ ଆସିଛୁ ଅତି କ୍ଷୀଣଦେହୀ ।
ବସି ବେଦ ଅଧ୍ୟୟନ କରୁଅଛି ଦ୍ୱାରେ
ବ୍ରହ୍ମାଣ୍ଡ କମ୍ପିଲା ବେଦଧ୍ୱନି ଶବଦରେ ।
ଦରଶିବେ ନରେନ୍ଦ୍ର ହୋଇ କୁତୂହଳ
ଆଣ ସେ ଦ୍ୱିଜକୁ ବୋଲି ଆଜ୍ଞାଦେଲ ବଳୀ
ରାଜା ଆଜ୍ଞା ପାଇକରି ଗଲେ ଦୂତଗଣ
ବୋଇଲେ ସ୍ୱାମୀର ଆଜ୍ଞା ଆସ ହେ ବ୍ରାହ୍ମଣ ।
ତହୁଁ ଚଳଲେ ବ୍ରାହ୍ମଣ ଧୀର ଧୀର ଗତି
ଦୂରହୁଁ ଦେଖିଲା ରାଜା ମାନବ ମୂରତି ।
ବୟସ ଅଳପ ଅଟେ ଅତି କ୍ଷୀଣକାୟା
ବଡ଼ ଅଗୋଚର ଏହି ବ୍ରାହ୍ମଣର ମାୟା ।
ଦେଖି ଉପହାସ କଲେ ଦାନବ ସକଳେ
ବିଜୟ କଲେ ବାମନ ବଳୀ ଯଜ୍ଞଶାଳେ ।
ଇଦଂବାକ୍ୟ ବଳୀରାଜା କହିଲ ଆହ୍ଲାଦେ
ଅପୂର୍ବ ବ୍ରାହ୍ମଣ କାହୁଁ ଅସିଲ ଏ ହ୍ରାଦେ ।
କୃତହସ୍ତ ହୋଇକରି ଦେବ ଦଇତ୍ୟାରି
ତଣ୍ଡୁଳ ପକାଇ ତାକୁ ଆଶୀର୍ବାଦ କରି ।
ପ୍ରଥମରେ ଜାଣିପାରି ମହାମନ୍ତ୍ରବାଣୀ
ପଚାରିଲେ ପଣ୍ଡା ତୁମ୍ଭେ ଅଟ କେଉଁ ବେଦୀ ।
କେଉଁ ଗୋତ୍ରେ ଜନ୍ମ ଅଛ କି ନାମ ବୋଲଅ
କେଉଁ ପ୍ରବର ଅଟଇ ସଞ୍ଜ୍ଞା କିସ କହ ।
କପାଇଁ ଆଗତ ବୋଲି ବଚନ ସମାଧି
ବିସ୍ତାରଣ କହ ତୁମ୍ଭେ କେଉଁ ମନ୍ତ୍ରବାଦୀ ।
ହେ ପଣ୍ଡା ବୟସେ ସାନ ବାଳକତନୁ ଦିଶ
ତୁମ୍ଭ ବେଦ ଅଧ୍ୟୟନେ କମ୍ପେ ସର୍ବଠାବ ।
ବ୍ରାହ୍ମଣ ସମସ୍ୟା ଦ୍ୟନ୍ତି ଅମୃତର ବାଣୀ
ନରକୂଳ ଦେଶ ଦକ୍ଷିଣ ସ୍ଥିତ ବୈତରଣୀ ।
ବାରସ୍ତି ବୋଲି କଟକ ଅଛଇ ଶାସନେ
ତଇତନ ପାଟଣାର ଅତି ସନ୍ନିଧାନେ ।
ସେହି ଶାସନର ଆମ୍ଭେ ଅଟୁ ପାଣିଗ୍ରାହୀ
ନିରଞ୍ଜନ ଧର୍ମଦାସ ସେହୁ ବେନି ଭାଇ ।
ମାତାର ନାମ ଆମ୍ଭର ଅଟେ ଅନନ୍ତାକ୍ଷି
ପିତା ନାମ ନିରଞ୍ଜନ ପଣ୍ଡା ଯେ ଅଟଇ ।

ବହ୍ମଦ୍ୱର ଦାସ ପଣ୍ଡା ଆମ୍ଭ ଜ୍ୟେଷ୍ଠଭାଇ
ଯାହା ପୃଚ୍ଛା କଲ ରାଜା ଶୁଣ ମନଦେଇ ।
ନରକୂଳବଂଶୀ ଆମ୍ଭେ ଜଳପୂର୍ଣ୍ଣ ଗୋତ୍ରୀ
ଆମ୍ଭର ନାମ ବାମନ ପଣ୍ଡା ଶୁଦ୍ଧମୂର୍ତ୍ତି ।
ଯାଗ ଯଜ୍ଞ ପ୍ରତିଷ୍ଠାଦି କର୍ମେ ଯେ ପ୍ରବୀଣ
ଦାମ୍ଭିକ ଧାର୍ମିକ ଦେଖି ଆସୁ ସନ୍ନିଧାନ ।
ଧନ୍ୟ ଧନ୍ୟ ମହିମା ତୋ ଦାନେଶ୍ୱର ବଳି
ବଡ଼ ମହିମା ରହିଲା ତୋର ମହୀସ୍ଥଳି ।
ଦାନେ ଶୂରବନ୍ତ ତୁହି ଦୈତ୍ୟ କୁଳଗୋଷ୍ଠି
ଅକ୍ଷୟ କୀର୍ତ୍ତି ରଖିଲୁ ତୁହି ଏହି କ୍ଷିତି ।
ଅନେକ ବିପ୍ର କହିଲେ ତୋହର ମହିମା
ବିସ୍ତର ଜାଣିଲୁ ତୁ ଯେ ପ୍ରତ୍ୟକ୍ଷେ ମହାତ୍ମା ।
ଯାହା ଶୁଣିଥିଲୁ ଏବେ ପ୍ରତ୍ୟକ୍ଷେ ଦେଖୁଛୁ
ମୋତେ ମହାରାଜା କିଛୁ ଦେବାକୁ ନ ଇଚ୍ଛ ।
ବଳୀ ବୋଲେ ମାଗ ବିପ୍ର ଯାହା ହୁଏ ଚିତ୍ତ
ଦେଇ ପୂରାଇବି ମୁହିଁ ତୋର ମନୋରଥ ।
ସେ ବଳୀରାଜା ବୋଇଲ ବାମନର ଆଗ
ପୂର୍ଣ୍ଣ ଆହୁତି ଦେବଇଁ ଶେଷ ହେଉ ଯାଗ ।
ଅମର ବିନାଶ ପାଇଁ ମୋହର ଆହୁତି
ଐରାବତ ମହାଇନ୍ଦ୍ର ପଡ଼ିବ ସମ୍ପ୍ରତି ।
ଅନୁଷ୍ଟୁପ ମହାଋଚି ଅଟେମ୍ଭ ପାଙ୍କି କ
ଆହୁତି ସମ୍ପୂର୍ଣ୍ଣ ପରେ ଦେବ ଯା ମୋ ବାକ୍ୟ
ବଳୀର ବଚନେ ଦ୍ୱିଜ କଲେ ବେଦଧ୍ୱନି
ଆକାଶ କି ଝଡ଼ପଡ଼େ ଟଳିଲ ଧରଣୀ
ରହ ରହ ବୋଲିକରି ବୋଲେ ବଳୀରାୟେ
ତୋର ବେଦଧ୍ୱନି ଶୁଣି କମ୍ପେ ମୋର କାୟେ
ଲକ୍ଷେ ବରଷ ହୋଇଲା ଦେଉଅଛୁ ଦାନ
ନ ଦେଖିଲି ବ୍ରାହ୍ମଣ ମୁଁ ତୋହର ସମାନ ।
ଏହା କହି ବୋଲେ ମାଗ ତୋହର ଯେ ଇଚ୍ଛା
ଯାହା ତୋ କଲ୍ୟାଣେ ଥିବ ପୂରାଇବି ବାଞ୍ଛା
ଜଳ ଭରଣ ଭାହାଣାବର୍ତ୍ତିକ ଶଙ୍ଖରେ
ଆପଣେ ବାମନ ଦେଲେ ବଳୀରାଜା କରେ ।
ମହାମନ୍ତ୍ର ସ୍ମରଣେ ଜଳ ତଳ ଭରି
ବଳୀରାଜା ହସ୍ତେ ଦେଲେ ସଙ୍କଳପ କରି ।
ତଳହସ୍ତ କରି ଯେ ମାଗିଲେ ବାମନ
ଉପର ହସ୍ତରେ ବଳୀ ଦେଉଅଛି ଦାନ ।

ବଳୀ ବୋଲେ ମାଗ ଦ୍ୱିଜ ଯେତେକ ଅଛଇ
ତୋ ବଂଶର ଦାରିଦ୍ର୍ୟତା ଯେସନେ ଫିଟଇ ।
ବାମନ ବୋଲନ୍ତି ତେବେ ଶୁଣ ମହାରାଜ
ଧନ ସମ୍ପଦରେ ମୋର କିଛି ନାହିଁ କାର୍ଯ୍ୟ ।
ଏହା କହି ସାକ୍ଷୀ କଲେ ସେ ଦିଗପାଳଙ୍କୁ
ଆବର ସାକ୍ଷୀ କରନ୍ତି ଇନ୍ଦ୍ର ସେ ସୂର୍ଯ୍ୟଙ୍କୁ ।
ମେଘମାନଙ୍କୁ ବରଣ ସାକ୍ଷୀ ଯେ କରନ୍ତି
ଗୁରୁଦେବଙ୍କୁ ଚାହିଁଣ ପୁଣି ସେ ବୋଲନ୍ତି ।
ଉପର ହସ୍ତରେ ଦାନ ଦେଉଅଛି ବଳୀ
ସାମାନ୍ୟ ଦାନ ମୋହର ଅଟେ ନି ଅଙ୍ଗୁଳି ।
ଦାନ ଦିଅନ୍ତେ ଶୁକ୍ରମୁନି ବଚନ ବୋଇଲା
ରହ ରହ ବୋଲି ରାଜା ଶଙ୍ଖ ଛଡ଼ାଇଲା ।
ରହ ରହ ରାଜା ତୁହି କାହାରେ ଦେଉ ଦାନ
ସାମାନ୍ୟ ପ୍ରାୟ ମଣୁ କି ଏ ଦ୍ୱିଜ ବାମନ ।
ଅସଂଖ୍ୟ ସମ୍ପଦ ରାଜା ଦେଖିଣ ତୋହର
ନାରାୟଣ ହୋଇଛନ୍ତି ବାମନାବତାର ।
ଦେବେ ଅଂଗୀକାର ଅଟେ ଏ ତୋର ସମ୍ପଦ
ଗୋପନେ ଗୋବିନ୍ଦ ତୋତେ ଚିନ୍ତନ୍ତି ପ୍ରମାଦ
ବଳୀ ବୋଇଲା ତୁମ୍ଭେ ତ ଭୃଗୁକୁଳେ ଜାତ
କେମନ୍ତେ ଜନ୍ମ କରିଲେ ତୁମ୍ଭ ପିତାମାତ ।
ଅଳପ ବହୁତ ଦାନ ଯେ ଅବା ଦିଅଇ
ବାସୁଦେବେ ପ୍ରାପ୍ତହେଉ ବାଞ୍ଛା ସେ କରଇ ।
ଦାନଦିଅନ୍ତେ ନାରାୟଣ ମୁଖରେ ଉଚ୍ଚାରି
ଯେବେ ଏ ବାମନ ଗୋଟି ସାକ୍ଷାତରେ ହରି
ତେବେ ଏହାଙ୍କୁ ଅଧିକ କି ଅଛି ସୁଲଭ
ଏ ସବୁ ସମ୍ପଦ ମୋର ନେନୁ ପଦ୍ମନାଭ ।
ଶୁକ୍ର ବୋଇଲା ଅର୍ଜିଛୁ ଯେତେ ତୁ ବିଭବ
ଚକ୍ରକୁଟ ମାୟାକରି ନେବେ ବାସୁଦେବ ।
ବଳୀ ବୋଇଲା ମନ୍ତ୍ରୀ ହେ ନୁହଇ ଏମନ୍ତ
ପୂର୍ଣ୍ଣ ଥିଲେ ଦାନଦେବ ଏ ବାମନ ହସ୍ତ ।
ଧର୍ମ ଅର୍ଥ କାମ ମୋକ୍ଷ ଏହୁ ଚଉବର୍ଗ
ଆଜ ପ୍ରାପ୍ତ ହେବ ମୁହିଁ ଯେ ଅକ୍ଷୟ ସ୍ୱର୍ଗ ।
ପୁଣି ବଳେ ଶୁକ୍ର ମନ୍ତ୍ରୀ ବଳୀହସ୍ତ ଧରି
ଦାନ ଦିଅନ୍ତେ ଶଙ୍ଖକୁ ଦେଲା ଓଟାରି ।
ଦେଖି କୋପାନଳ ହେଲେ ବାମନ ମୂରତି
ରଗେ ବାମକରେ ପେଲିଦେଲେ ଯେ ଶ୍ରୀପତି ।

ବାମନର କରେ ଯେଉଁ କୁଶବଟୁ ଥିଲା
ସେ କୁଶାଗ୍ର ଲାଗି ଶୁକ୍ର ଆଖି ଫୁଟିଗଲା ।
ନୟନ ଫୁଟି ଶୋଣିତ ବହେ ଘନଘନ
ବଳୀ ବୋଲେ ଅକାରଣେ ଲଭିଲୁ କଷଣ ।
ଦେଉଥିଲି ଦାନ ମୁହିଁ କହିଲୁ ନିବାରି
ତତକ୍ଷେ ଫଳିଲା ଫଳ ନ ପାରୁ ବିଚାରି
ମାଗ ହୋ ବାମନ ବଳୀ କହଇ ବଚନ
ଶଙ୍ଖେ ଜଳ ତଳ ଦେନି ଭଜେ ଭଗବାନ ।
ବାମନ ବୋଲେ ତ୍ରିପାଦ ଭୂମି ଦିଅ ମୋତେ
ବିସ୍ତାର ହୋଇବ ମୋର ତିନିପାଦ ଯେତେ ।
ମାଗନ୍ତେ ଯେତେ ହୋଇବ ଦାନଦେବୁ ପୃଥ୍ୱୀ
ଶୁଣି ଆଶ୍ଚର୍ଯ୍ୟ ହୋଇଲା ବଳୀ ନରପତି ।
ବିସ୍ମୟ କରଣ କହ ହେ ଦ୍ୱିଜ ସନ୍ତତି
ଏହି ଦାନ ମାଗୁ ମୋତେ ହୋଇ ବାଳମତି
ପାଞ୍ଚଅଙ୍ଗୁଳି ବିସ୍ତାର ବେନି ପାଦଗୋଟି ।
ଏଥେ ତିନିପାଦ ଭୂମି କାହିଁ ତୋତେ ଅଣ୍ଟି
ବ୍ରାହ୍ମଣ ବୋଲେ କାଞ୍ଚିତ ମାତ୍ର ନେବି ଦାନ
ବହୁତ ଦାନ ନେବାକୁ ନୁହଇ ଭାଜନ ।
ଅଲ୍ପମନ୍ତ ଜାଣି ଯେହୁ ବହୁଦାନ ମାଗି
ନାଶକର ଦଣ୍ଡେ ସେହି ହୁଏ କୃମିଭୋଗୀ ।
ବଳୀ ବୋଲେ ତିନିପାଦ ଭୂମି ହେବ କେତେ
ତୋଠା ଖଣ୍ଡିଏ ନ ଥିଲେ ବଞ୍ଚିବୁ କେମନ୍ତେ ।
ବାମନ ବୋଇଲା ବଳ ମୁହିଁ ନୁହେଁ ଲୋଭୀ
ଅଧିକ ନ ମାଗେ ତିନିପାଦ ଦେବୁ ଭୂମି ।
ବଳୀବୋଲେ ମୁହିଁ ଦାମ ତୋତେଦେବି ଦାନ
ମୋହର ଦାନ ନେବାକୁ ନୋହିଲୁ ଭାଜନ ।
ଏବେ ଆବୋର ତ୍ରିପାଦ ଦିବ୍ରାନଦକୁଳି
ଦେଖୁ ଦେଖୁ ବାମନାଙ୍ଗ ବଢ଼େ ବେଳୁବେଳୁ ।
ବଳୀ ବୋଇଲା ବାମନ ହେ ଚରଣ ବଢ଼ା
ତାହା ଶୁଣିଣ ବାମନ ଫେରିଲା ଦୋସଢ଼ା ।
ବିସ୍ତାର ଦିଅନ୍ତେ ବାମନ ବେନିପାଦ ଗୋଟି
ଏକାବେଳେ ହୋଇଗଲା ସସାଗର ସୃଷ୍ଟି ।
ଦେଖି ଆଶ୍ଚର୍ଯ୍ୟ ହୋଇଲା ମହାରାଜା ବଳୀ
ଶୁକ୍ରର କଥା ସୁମରି ହୃଦଗତେ ଭାଳି ।
ସାଧୁ ସାଧୁ ମନ୍ତ୍ରୀ ତୁହି କହି ଥିଲୁ ଯାହା
କାଳେ ଫଳିଲା ଅସିଣ ନ ଚେତିଲି ତାହା ।

ମୋର ନିମନ୍ତେ ଶୁନ୍ଦର ଚକ୍ଷୁ ନାଶଗଲା
ଏ ବାମନ କୂଟ ମୋତେ ଅଗୋଚର ହେଲା
ତହୁଁ ବାମନ ବୋଇଲେ ଦିଅ ଆଉପାଦେ
ବଳୀ ବୋଇଲା ଦେଲି ମୁଁ ଆକାଶକୁ ପାଦେ
ଏକ ପାଦରେ ପୃଥ୍ୱୀ ଆରେକ ଆକାଶ
କୋଟି ବ୍ରହ୍ମାଣ୍ଡ ଘୋଟିଲେ ପ୍ରଭୁ ହୃଷୀକେଶ ।
ବାମନ ବୋଇଲେ ବଳୀ ଆଉପାଦେ ଦିଅ
ସଙ୍କଳ୍ପ କରି ନ ଦେଲେ ଧର୍ମ ହୁଏ କ୍ଷୟ ।
ବଳୀ ବୋଇଲା ପାରିବି ଆନ ଦାନଦେଇ
ହେ ବାମନ ତୋର ଆଉ ଅନ୍ୟ ପାଦ କାହିଁ ।
ତହୁଁ ହୁଂକାର ଶବଦ କଲେ ଜଗନ୍ନାଥ
ନାଭି କମଳରୁ ପାଦେ ହୋଇଲା ନିର୍ଗତ ।
ବଳୀ ବୋଲେ ବେନିପାଦେ ଘୋଟିଲୁ ଜଗତ
ଆଉ କିଛି ନାହିଁ କିସ ଦେବି ଜଗନ୍ନାଥ ।
ବାମନ ବୋଇଲେ ତୁହି ଦାନେଶ୍ୱର ବଳୀ
ସତ୍ୟଭଗ୍ନ ହୋଇବୁ କି ତୁହି ଆନଭଳି ।
ସଙ୍କଳ୍ପ କରି ନ ଦେଲେ ହୁଏ ବଡ଼ ଦୋଷ
ଗତଧର୍ମ ନାଶଯାଇ ନରକେ ନିବାସ ।
ଶୁଣି ମଥା ପୋତିଦେଲା ମହାରାଜା ବଳୀ
କମଳପାଦ ତା ମାଥେ ଦେଲେ ବନମାଳୀ ।
ମେରୁସମ ତୁଲ୍ୟ ଅଟେ ବଳୀରାଜା କାୟେ
କଣ୍ଠରେ ପାତାଳେ ଚାପିଦେଲେ ଦେବରାୟେ
ଇଦଂ ବାକ୍ୟରେ ଶକୁନି କହିଲା ଏ ଭାଷା
କହିଲି ବୋଲି ସେ ଅଟେ ତାକୁ କି ଭରସା
ବାମନ ରୂପକୁ ଧରି ଏହି ଅବତାର
ତିନିପାଦେ ଘୋଟିଗଲା ଦେଖ ତିନିପୁର ।
ଦେଇ ନ ପାରିଲା ତିନିପାଦ ଭୂମି ବଳୀ
ପଞ୍ଚଗ୍ରାମ ଦେବ ତାକୁ ତୁମ୍ଭେ କେଉଁଭଳି ।
ପଞ୍ଚଗ୍ରାମ ଛାଡ଼ି ଯେବେ ଦେବ ଏକଗୋଟି
ଗ୍ରାମକେ ସେ ଚରାଚର ପୃଥ୍ୱୀ ଯିବ ଘୋଟି
ଏମନ୍ତ କରଣ ହରି ପଡ଼ାଏ ମାଗିବ
ବିଶ୍ରାମ କରିବାପାଇଁ ଠାବ ନ ମିଳିବ ।
ଏଥିରୁ ଅନ୍ୟଥା ଯେବେ ହେବ ମୋର କଥା
ମନ୍ତ୍ରୀପଣ ନ କରିବି ରାଜ୍ୟରେ ସର୍ବଥା ।
ଶଠକୂଟ ବୁଦ୍ଧିଧାର ଦେବଙ୍କୁ ଅଦୃଶ୍ୟ
ଏତେବଡ଼ ସମସ୍ତ୍ରୁ ନ କର ବିନାଶ ।
ହେ ବାମନରୂପୀ ପ୍ରଭୁ ଦେବ ତ୍ରିପୁରାରି
ଶାରଳାଦାସକୁ ଭବକଷ୍ଟୁଁ କର ପାରି ।

---

## ଦୁର୍ଯ୍ୟୋଧନ ଦୁଇଖଣ୍ଡ ପଡ଼ାଦେବା ନିମନ୍ତେ ଭୀଷ୍ମଙ୍କଠାରେ ଇଚ୍ଛା ପ୍ରକାଶ ଓ ଶକୁନିର ଅମତ ଏବଂ ବିବନାଭୂତର ବିବରଣ

ଅଗସ୍ତିଙ୍କୁ ପୁଚ୍ଛାକଲେ ବଳଙ୍କ ରାଜନ
ବିଦୁର ଗୃହକୁ କୃଷ୍ଣ କରିଲେ ଗମନ ।
ତଦପରେ କି ବିସ୍ତର କଲ କୁରୁନାଥ
ପଡ଼ା ଦେବାକୁ ଶକୁନି ସର୍ବଦା ଅମତ ।
ଭୀଷ୍ମ ଦ୍ରୋଣ ଆଦି କରି ତହିଁ ମନାନ୍ତର
ଏମନ୍ତ ସ୍ଥଳରେ ହେଲ କେବଣ ବିସ୍ତର ।
ସେହି କଥା ଶୁଣିବାକୁ ବଳଇ ମାନସ
କହନ୍ତି ଅଗସ୍ତି ମୁନି ଶୁଣ ହେ ନରେଶ ।
ଭୀଷ୍ମଦେବ ବୋଇଲେ ସେ ବଳୀ ଦାନ ଦେଇ
ଗତି ଲଭି ପାତାଳରେ ନୃପତି ହୋଇଲା ।
ଆକାଶରେ ଇନ୍ଦ୍ର ପୁଣି ଦେବ ସମସ୍ତକେ
ଏମନ୍ତ ସମ୍ପଦ ତାକୁ ଦେବ ଦେଲେ ସୁଖେ ।
ଶକୁନି ବୋଇଲା ମୁହିଁ କହେ ଏକ କଥା
ଶୁଣ ହେ ଗାଙ୍ଗେୟ ଏବେ ପୂର୍ବର ବାରତା ।
ଜମ୍ବୁଦ୍ୱୀପ ଭରତଖଣ୍ଡ ଓଡ୍ରରାଷ୍ଟ୍ର ମଣ୍ଡଳେ
ବ୍ରହ୍ମାଙ୍କର କୁଟସ୍ଥଳୀ ବୈତରଣୀ କୂଳେ ।
ବେଦପୁର ବୋଲି କରି ଏକଇ ଶାସନ
ତହିଁ ଲକ୍ଷେ ବାଆସ୍ତରି ଥାନ୍ତି ମହାଜନ
ସେହି ନଗର ନିବାସୀ ଆଠଗୋଟି ବାଳୀ
ବୟସ ଧର୍ମରେ ସର୍ବେ ଧୂଳିଖେଳ ଖେଳି ।
ଏସନକ ସମୟରେ କପିଳାସବାସୀ
ବୃଷେ ଗିରିଜା ଶଙ୍କର ବିଜେକଲେ ଆସି ।
ଶୂନ୍ୟେ ଥାଇ ସେମାନଙ୍କୁ ଦେଖି ବିଶ୍ୱନାଥ
ବୋଇଲେ ବଡ଼ କୌତୁକ ଅଟେ ଏ ସଙ୍ଗାତ
ପାର୍ବତୀ ବୋଲନ୍ତି ଏହା ବାଳ୍ୟକାଳ ଖେଳ
ଏ ଖେଳ ଖେଳନ୍ତି ସଦା କୁମାରୀ ସକଳ

ପିତାଙ୍କ ଗୃହରେ ଆମ୍ଭେ ଥିଲୁ ଯେତେବେଳେ
ଏହି ଖେଳ ଖେଳୁଥିଲୁ କୁମାରୀଙ୍କ ମେଳେ ।
ଈଶ୍ୱର କହିଲେ ତହୁଁ ଦେବୀ ଆଗେ ଆମ୍ଭ
ସେ ତ ଗୃହବାସୀ କି ନ ଜାଣନ୍ତି ଉଷାଶୀ ।
ଉମା ବୋଇଲେ ସ୍ୱାମୀ ହେ ସତା ଯେନ୍ତୁ ବାଇ
ସଜ୍ଜନ କଥା ତହିଁକି ନେଡ଼ଲେ ମିଳଇ ।
ବାଳଙ୍କର ବାଳଭାବ ବାଳଲୁଣ୍ଠି କରି
ଯେଠାରେ ମାଗିଲେ କଏ ପାଇବ ଭିକାରି ।
ଶଙ୍କର ବୋଇଲେ ତୁମ୍ଭେ ଥାଅ ଅନ୍ତରାଷ
ମୁହିଁ ସେ ସ୍ଥାନକୁ ଯାଇ ତାଙ୍କୁ ମାଗେ ଭିକ ।
ପାର୍ବତୀ ବୋଇଲେ ଏବେ ଏ ରୂପେ ଦେଖିବେ
ଭୟରେ ବିଷଜ୍ୱାଳାରେ ସମସ୍ତେ ମରିବେ ।
ଗିରିଜାଙ୍କୁ ରଖାଇଣ ଦେବ ଦେବ କାଶୀ
ବାଳକ ସନ୍ୟାସୀ ରୂପ ତହିଁ ପରକାଶି ।
ଏକଇ ବଦନ ସ୍ୱାମୀ ଶିରରେ ଶୀତାଂଶୁ
ବହଇ ଧବଳାଙ୍ଗୀ ସେ ତ୍ରିବେଣୀ ଆକାଶୁ ।
ଚନ୍ଦ୍ରରୂପକୁ ଧାରଣ କଲେ ତ୍ରିଅମ୍ବକ
କଣ୍ଠେ ତୁଳସୀର ମାଳା ସଙ୍ଗରେ ହୀରକ ।
ଶୁଦ୍ଧ ସ୍ଫଟିକର ମୁଦ୍ରା ଶୋଭେ ବେନିକର୍ଣ୍ଣେ
ଜଗତକୁ ମୋହୁଅଛୁ ସହାସ୍ୟ ବଦନେ ।
ଡାକ ଡମ୍ବରୁ ହସ୍ତରେ ଡବ ଡବ ବାଜେ
କ୍ଷୁଦ୍ର ଘଣ୍ଟିକା କିଙ୍କିଣୀ କଟିଦେଶେ ସାଜେ ।
ଅନନ୍ତ ଉରଙ୍ଗ ଶୋଭେ ଶ୍ରୀଅଙ୍ଗେ ବାହୁଟି
ବିଭୂତି ଲେପନ ଦେହ ପିନ୍ଧି ଚରକୁଟି ।
ଭୁଜରେ ଯାମଳା ଲଉ କରରେ ତ୍ରିଦଣ୍ଡି
ଝଟକଇ ଚଉକତି ତିଳକ ଶ୍ରୀଖଣ୍ଡି ।
ଏମନ୍ତ ସ୍ୱରୂପ ସ୍ୱାମୀ ବାଳୁତ ପୁଆଳି
କନ୍ୟାଙ୍କ ନିକଟେ ଗଲେ ହୋଇ କୁତୂହଳି ।
ଡିବିଡିବି ଡମ୍ବରୁକୁ ଦ୍ରୁସ୍ୱରରେ ବାଇ
କୁମାରୀଙ୍କ ଖେଳଘରେ ପ୍ରବେଶିଲେ ଯାଇ ।
ଦେଖିକରି ହସିଲେ ସେ ବାଳୁତ କୁମାରୀ
ମିଛୁକା ଘରକୁ ଦେଖି ସତକା ଭିକାରି ।
ଧୂଳିରେ ଅନ୍ନ ବ୍ୟଞ୍ଜନ କରିଛୁ ସଙ୍ଗାତ
କିସ ଭିକ୍ଷାଦେବା ନେଇ ଏହାଙ୍କର ପାତ୍ର ।
ସୁସଜ୍ଞ କରି ପାତ୍ରରେ ପୂରାଇଲେ ଧୂଳି
ସଦାଶିବଙ୍କ ପାତ୍ରରେ ତାହା ଦେଲେ ତୋଳି

ହରଷ ଭାବରେ ଦାନୀ ଦେଲେ ଧୂଳିମୁଷ୍ଟି
ତାହା ଦେଖିଣ ଆନନ୍ଦ ହୋଇଲେ ଧୂର୍ଜଟି ।
ଈଶ୍ୱର ପ୍ରଶଂସା କଲେ ଧନ୍ୟ ତୁମ୍ଭ ସତ୍ୟ
ବାଳୁତ କୁମାରୀ ହୋଇ ଏତେକ ନିପୁତ ।
ଆନନ୍ଦରେ ସୁପ୍ରସନ୍ନ ହୋଇ ସଦାନନ୍ଦ
ବଚନ କହିଲେ ସ୍ୱାମୀ ହସି ମନ୍ଦ ମନ୍ଦ ।
ସତମନେ ତୁମ୍ଭେମାନେ ଦେଲ ଧୂଳିଭିକ୍ଷା
ତୁମ୍ଭମାନଙ୍କୁ ସଦାଶିବ କରୁ ରକ୍ଷା ।
କୋଟିକଳ୍ପ ଆୟୁ ହେବ ବପୁ ଧରି ସ୍ୱର୍ଗେ
ଯୁବାବସ୍ଥା ହୋଇଥାଅ କୋଟି କୋଟି ଯୁଗେ
ରମ୍ଭା ଉର୍ବଶୀ ମେନକା ପୁଣି ଚିତ୍ରଲେଖା
କାମସେଣା ମଦନିକା ମୋହିନୀ ଅମ୍ବିକା ।
ଯୁଗ ଭୋଗକର ହୋଇ ଅଷ୍ଟ ଅପସରୀ
ଏହିମତେ ମୋହୁଥାଅ ଦେବ ସ୍ୱର୍ଗପୁରୀ ।
କୋଟିଏ ଇନ୍ଦ୍ର ସ୍ୱର୍ଗରେ ହୋଇ ନାଶଯିବେ
ତୁମ୍ଭର ଏ ଯୁବାବସ୍ଥା ନ ତୁଟିବ କେବେ ।
ଶକୁନି ବୋଇଲେ ତୁମ୍ଭେ ଶୁଣ ହେ ଗାଙ୍ଗେୟ
ଶିବ ବାକ୍ୟେ ଅଷ୍ଟସଖୀ ହୋଇଲେ ଅକ୍ଷୟ ।
ବଳୀ ରାଜାର ଭାରିଯା ନାମ ଲୀଳାବତୀ
ଅର୍ଘ୍ୟଦେଇଣ ମିଳିଲା ବାମନର କତ୍ତ ।
ବୋଲେ ବାମନ ତ୍ରୈଲୋକ୍ୟନାଥ ତୁ ବୋଲାଉ
ଜଗତ ଠାକୁରପଣ ତୋର ଧିକ ହେଉ ।
ସଦାଶିବଙ୍କର ବର ଶୁଣ ତୁ ବାମନ
ରେଣୁ ଭିକ୍ଷାରେ ପାଇଲେ ଅମର ଭୁବନ ।
ମୋର ସ୍ୱାମୀ ତିନିଲୋକ ତୋତେ ଦାନଦେଲା
ସମସ୍ତ ସମ୍ପଦ ଦେଇ କାରଣ ନୋହିଲା ।
ଧିକ ଧିକ ବାମନ ହେ ତୁମ୍ଭ ପାତ୍ର ଗୋଟି
ସ୍ୱାମୀ ମୋର ନାଶଗଲା ତୁମ୍ଭ ପାତ୍ରେ ଖଟି ।
ଆହେ ତିନିଲୋକ ଜନ ଏବେ ସାକ୍ଷୀଥାଅ
ହେ ବାମନ ଏହିରୂପେ ଭିକ୍ଷା ମାଗି ଖାଅ ।
ଈଶ୍ୱରଙ୍କ ବରଗୋଟି ପରମ ମୌଷଧି
କଳ୍ପ କଳ୍ପ ଦାନ ଦେଲେ ସର୍ବକାର୍ଯ୍ୟ ସିଦ୍ଧି
ଶୁଣ ଗାଙ୍ଗେୟ ଆଗରୁ ଅଛି ଏହି ବାଣୀ
ଦେଲେହେଁ ତୃପ୍ତ ନୋହିବ କେବେ ଚକ୍ରପାଣି
ଦାମ୍ଭି ଭକତରେ ଯେହ୍ନୁ ନ ଦେନଇ ଦେବା
ଦେଇ ତୃପତ ତାହାକୁ କରିବ କିଏ ବା ।

ଯେତେ ବ୍ରହ୍ମାଣ୍ଡ ଯେତେବେ ଦେବ ତାଙ୍କ ହସ୍ତେ
ଶାନ୍ତ ବା ଭୂପତି ସେହି ନ ହୋଇବ ଅନ୍ତେ ।
ଶାସ୍ତ୍ରର ସଙ୍ଗତ କଥା କହିଲା ଶକୁନି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶୁଣି ହେଲେ ତୁନି
ଆସ୍ଥାନରୁ ଉଠିଗଲେ ସନ୍ଧୁଁ ଭୀଷ୍ମ ଦ୍ରୋଣ
ନନ୍ଦୁଁ ଦ୍ରୌଣି କୃପାଚାର୍ଯ୍ୟ ଚଳିଲେ ତତ୍କ୍ଷଣ ।
ଶଲ୍ୟ ଶକୁନି ଆଦିର କର୍ଣ୍ଣର ସହିତେ
ସେ ଯାହା ମନ୍ଦିରେ ଗଲେ ଭୋଜନ ନିମନ୍ତେ
ଚନ୍ଦ୍ରଶାଳାର ପୁରକୁ ବିଜେ ଦୁର୍ଯ୍ୟୋଧନ
ଅନ୍ଧ ଗାନ୍ଧାରୀ ସଞ୍ଜୟ କରେ ଆଗମନ ।
ଚନ୍ଦ୍ରଶାଳା ମନ୍ଦିରରେ ବିଜେ ଧୃତରାଷ୍ଟ୍ର
ପ୍ରବେଶ ହୋଇଲେ ସବୁ ଅମାତ୍ୟ ଶ୍ରେଷ୍ଠ
ସକଳେ ମିଳନ୍ତେ ଦୁର୍ଯ୍ୟୋଧନ ସନ୍ନିଧାନ
ଦେଖି ପୂଜା ବିଧି କଲା ରାଜା ଦୁର୍ଯ୍ୟୋଧନ ।
ଇଦଂ ବାକ୍ୟ ଧୃତରାଷ୍ଟ୍ର ପୁତ୍ରେ ଶୁଭବାଣୀ
ଗାନ୍ଧାରୀ ବୋଇଲା ଶୁଣ କୁରୁ ଚୂଡ଼ାମଣି ।
ଶୁଣ ବାବୁ ମହାରାଜା ମାନ ଚକ୍ରବର୍ତ୍ତୀ
ଲକ୍ଷେ ରାଜା ମୌଳିମଣି ମଣ୍ଡଳାଧିପତି ।
ପଦ୍ମନାରାୟଣ ତୁ ବିଷ୍ଣୁ ଅବତାର
ସଂସାରର ନ [illegible] ତୁ ରଖିବୁ ସଂସାର ।
ଏହି ସୋମବଂଶେ ଥିଲେ କେତେ କେତେ ରାଜା
ତୋହ ପରାୟେକ କେହୁ ନ ପାଇଲେ ପ୍ରଜା
ପାଣ୍ଡବ ତୋର ସୋଦର ସେହୁ ପଞ୍ଚଭ୍ରାତ
ତେ ର ଥାଆନ୍ତେ ସେମାନେ ହେବେ କି ଅନାଥ
ଦେଖିବୁ ପଞ୍ଚପାଣ୍ଡବେ ଏକା ଆସ୍ଥାନରେ
ଲକ୍ଷେ ରାଜା ସଙ୍ଗ ଛଟିଥିବେ ତୋ ପଦରେ ।
ବାବୁ ଯେ ପଞ୍ଚପାଣ୍ଡବ ଅଟଇ ପଞ୍ଚାଗ୍ନି
କୃଷ୍ଣ ସଖା ହୋଇଛନ୍ତି ବାସୁରୂପ ଦେନି ।
ଅଗ୍ନି ସହିତ ପବନ ଏକତ୍ର ହୋଇଲେ
ମହା ଅରଣ୍ୟ ଦହଇ ଗାନ୍ଧାରୀ ବୋଇଲେ ।
ବିନ୍ଧୁର ନ କରୁ କହିଁ ହୋ କୁରୁମଣି
ପାଣ୍ଡବଙ୍କ ପାଖାପଷେ ଛନ୍ତି ଚକ୍ରପାଣି ।
ସୁଭଦ୍ରା ହରନ୍ତେ କୋପକଲେ ବଳରାମ
ରଣେ ଜିଣିବାକୁ ତାଙ୍କୁ ନ ହୋଇଲେ କ୍ଷମ
ଦ୍ୱାରକା ପୁରେ ଅର୍ଜୁନ ଏତେ କୃତ୍ୟ କଲ
ରାମକୃଷ୍ଣଙ୍କ ଭଉଣୀ ସୁଭଦ୍ରା ହରିଲ ।

ସେ ତଙ୍କର ସୈନ୍ୟ ସାଜି ଗ୍ରାମ କଲେ ଗୋଳ
ସମରେ ହାରିଲେ ତାଙ୍କୁ କୃଷ୍ଣ କାମପାଳ ।
ଧୃତରାଷ୍ଟ୍ର ବୋଲେ ମୁହିଁ ଜାଣେ ତୋର ହୟା
ତେବେ ମରିବା ପାଣ୍ଡବେ ଜଗନ୍ନାଥ ଦୟା ।
ସୋଦର ଗୁଡ଼ିଲେ ହରି ପାଣ୍ଡବ ନିମନ୍ତେ
ଯାଦବଙ୍କୁ ହରାଇଲେ ପାଣ୍ଡବଙ୍କ ହସ୍ତେ ।
ଯେବଣ ଶତ୍ରୁକୁ ଏବା ନ ପାରନ୍ତି ଜିଣି
ଏତେ ତାହାକୁ ନାଶନ୍ତି ଉପାୟରେ ପୁଣି ।
ସନ୍ନିଧିକୁ ଅଣାଇଣ ରଖାଇଲେ ତାଙ୍କୁ
ଗଙ୍ଗା ବେଦନ ଖଣ୍ଡ ମାନ ଦେବା ପାଣ୍ଡବଙ୍କୁ ।
ମନ୍ତ୍ରିଙ୍କର କାର୍ଯ୍ୟକର କୋପ କର ତେଜ୍ୟ ।
ସେ ତ ସୋଦର ଏଥିକୁ କହିଁ କର ଲଜ୍ଜା ।
ଦେଖ ଗଙ୍ଗେୟ ସେ ଶାନ୍ତନୁଙ୍କ ବହ୍ନି
ଦଦ ଅଳାବ ଥିବେର ବେଦକାର୍ଯ୍ୟ ଅନ୍ତ
ପରମାଣି ବୃଦ୍ଧ ସବୁ ସୋଦରଙ୍କ କାର୍ଯ୍ୟ
ମୂଳତେ ପାଣ୍ଡବଙ୍କର ଅଟ୍ଟ ଅର୍ଦ୍ଧରାଜ୍ୟ ।
ନିରାଶ କରିବା ପାଇଁ ଯେତେ କରୁ ବୁଦ୍ଧି
ତାହାକୁ ତ ସାଉଁଟିବୁ ଏତେକ ସମ୍ପତ୍ତି ।
ନିରାଶ ହୋଇ ନ ଯାନ୍ତୁ ଯେତେକେ ନାରାୟଣ
ସର୍ବ ପ୍ରବୋଧି କହିବୁ ସଭାରେ ଥାଇଣ
ଯେବେ ପ୍ରବୋଧ ନ ହୋଇ ଯିବେ ନ ରାୟଣ
ତେବେ ସୈନ୍ୟ ସଜ କରି କରିବାକ ରଣ ।
ଶୁଣି ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ ମହାରଥା
ନିତାନ୍ତ କହିଲ ଯେବେ ରଖିବା ସେ କଥା ।
ଯାଅ ଯାଅ ତୁମ୍ଭେମାନେ ନିଜର ଆଶ୍ରମେ
କହିଁ ନିରାଶ କରିବା ଶ୍ରୀପୁରୁଷୋତ୍ତମେ ।
ବୃଦ୍ଧପାଣ୍ଡବ ସମର ନୋହିବ ନିର୍ଣ୍ଣନ୍ତ
ସକଳେ ବୋଇଲେ ତୃପ୍ତ ହେବେ ଜଗନ୍ନାଥ
ବାରୁଣାବନ୍ତ ରାଜ୍ୟଟି ଉତ୍ତର ଦିଗରେ
ତ୍ରିଗର୍ତ୍ତ ପଡ଼ ଦେବା ମେଖଳା କୂଳରେ ।
ଭୀଷ୍ମ ବୋଇଲେ ତୋହର ପ୍ରାଣ ସାଧୁ ସାଧୁ
କୋଟିପାଦେ ନ ଛାଡ଼ିବେ ଲକ୍ଷ୍ମୀ ତୋର କନ୍ଧୁ
ସଂସାରକୁ ଉଦ୍ଧାରଣ ତୋର ବାକ୍ୟ ଗୋଟି
ତ୍ରିଲୋକର ଅନ୍ଧକ୍ଷେ ଏବେ ଗଲା ଫିଟି ।
ସୋର କରତା ଆସିଅଛୁ ଦୁ-ପଟେ
ତାହାଙ୍କୁ ଜିଣିଲୁ ତୁହି ଅମୃତ ବଚନେ ।

ଅନେକ ସାନନ୍ଦ ହୋଇ ରହେ ଷଡ଼ଯୋଦ୍ଧୀ
ବୋଇଲେ ଗଲା ସମର ହୋଇଲାକ ସନ୍ଧି ।
ଛାଡ଼ିଗଲା ଉପଦ୍ରବ ସର୍ବେ ହେଲେ ଶାନ୍ତ
ଧର୍ମ ଉଦେହେଲା କୁରୁପାଣ୍ଡବରେ ପ୍ରୀତ ।
ଧର୍ମ ଉଦେହେଲା କୁଞ୍ଜଗଲା ଦେଖ ମାର୍ଗେ
ଦେବତା ରକ୍ଷା ପାଇଲେ ପାଣ୍ଡବଙ୍କ ଯୋଗେ
ସେହିଦିନ ହୋଇଅଛି ଅର୍ଦ୍ଧେକ ରଜନୀ
ରାଜାଙ୍କୁ ଦର୍ଶନ କଲା ଯାଇଣ ଶକୁନି ।
ଦୁର୍ଯ୍ୟୋଧନ ଏକାନ୍ତରେ ଶକୁନିର ଭୁଲେ
ବୋଇଲେ ଶ୍ରୀହରି ଦୂତପଣରେ ଅଇଲେ ।
ସଂସାର ତାରଣ ହରି ହୋଇଲେ ମଧ୍ୟସ୍ଥ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାର ହୃଦଗତ ।
ବହୁତ କଲେକ ବଚନ ନ ପାରିଲ ମେଣ୍ଟି
କୃଷ୍ଣର ବଚନେ ଦେବ ଗ୍ରାମ ବେନି ଗୋଟି ।
ଯାବତ ପ୍ରାଣୀଙ୍କୁ ମାମୁଁ ଜଗନ୍ନାଥ ମୂଳ
ତାହାଙ୍କ କୁପିତ ହେଲେ ଖଣ୍ଡେ ଅମଙ୍ଗଳ ।
ଶକୁନି ବୋଇଲା ତୁହି ସର୍ବଜନଦାତା
ସମସ୍ତଙ୍କ ଘରଭର ତୁହି ଯେ ହରନ୍ତା ।
ବାବୁ ଭୀଷ୍ମ ଦ୍ରୋଣ ଦୁହେଁ ଗୁରୁଙ୍କର ଗୁରୁ
ତାଙ୍କର ବଚନ ଭ୍ରଷ୍ଟ କରି ତ ନପାରୁ ।
ସେମାନେ ଅଟନ୍ତି ପୁଣି ମହାବଳବନ୍ତା
ତାଙ୍କର ବଚନ ଭ୍ରଷ୍ଟ କେ ଅଛି କରନ୍ତା ।
କର୍ଣ୍ଣ ଦୁଃଶାସନ ଶଲ୍ୟ ଆଗୁର୍ଯ୍ୟ ଯେ କୃପ
ଏମାନେ ପ୍ରବେଶ ହେଲେ ରାଜାର ସମୀପ ।
ଶକୁନି ବୋଲେ ଯୋଗାଏ ଏ ସବୁ ମନକୁ
ଜଣେ କି ସମର୍ଥ ବନ୍ଧୁ ବାକ୍ୟ ମେଣ୍ଟିବାକୁ ।
ମୋ ବଚନ ବୁଝିଥାଅ ବାବୁ ଧାର୍ତ୍ତରାଷ୍ଟ୍ର
ପାଣ୍ଡବେ ଦେବା ନ କରି ପଡ଼ା ବେନିଗୋଟି
ଆବର ବୋଲେ ଶକୁନି ଶୁଣ ଦୁର୍ଯ୍ୟୋଧନ
ବଳୀକି ତ୍ରିପାଦ ଭୂମି ମାଗିଥିଲ ଦାନ ।
ବାମନକୁ ଉପହାସ କରି ଦେଲା ଦାନ
ମନ୍ତ୍ରୀର ବୋଲ ନ କଲା ଅସୁର ରାଜନ ।
ପାଦକେ ଘୋଟିଲ ସେହୁ ସସାଗରା ସୃଷ୍ଟି
ଆକାଶ ଘୋଟିଲା ତାର ଅନ୍ୟ ପାଦ ଗୋଟି
ଏତେକେ ମଧ୍ୟ ବ୍ରାହ୍ମଣ ସନ୍ତୋଷ ନୋହିଲା
ପୁଣି ପାଦେ କାଢ଼ି ତାକୁ ପାତାଳେ ରୁପିଲା ।

ବେନି ପଡ଼ା ଦେବା ଇଚ୍ଛୁ ଗୋବିନ୍ଦର ପ୍ରୀତେ
ଏକା ପଡ଼ାକେ ଘୋଟିବ ବ୍ରହ୍ମାଣ୍ଡ ସହିତେ ।
ସଭାରେ ଗ୍ରାମ ମାଗିବ ହରି ଯେତେବେଳେ
ସତ୍ୟବାକ୍ୟ ଜାଣିବ ହେ ମୋର ସେତେବେଳେ
ଆହେ ରାଜା ନୃପତିକି ଯେବେ ଅଛି ଇଚ୍ଛା
ପାଣ୍ଡବେ ଗ୍ରାମଦେବାକୁ ତେବେ କର ବାଞ୍ଛା ।
କୁଟୁମ୍ବ ରକ୍ଷା କରିବୁ ଯେବେ ତୁହି ହାଦେ
ପାଣ୍ଡବଙ୍କୁ ସୂଚୀମୁନେ ଭୂମି ତୁହି ନ ଦେ ।
ଶୂନ୍ୟରେ ରଣ କରନ୍ତି ସେହି ପାଞ୍ଚଭାଇ
ଗ୍ରାମଦେଲେ ତୋର ପ୍ରାଣ କେବେହେଁ ନ ରହି
ଦୁର୍ଯ୍ୟୋଧନ ବୋଲେ ହରି ନିରାଶ ହୋଇଲେ
ବର୍ତ୍ତି ନ ପାରିବାଟିକି ସେହୁ କୋପ କଲେ ।
ଶକୁନି ବୋଇଲା କୃଷ୍ଣ ଅଟେ ସିନା ଏକା
କୋଟି ଯୋଦ୍ଧା ଅଛୁ ଆମ୍ଭେ ତାଙ୍କୁ କପାଁ ଶଙ୍କା
ଅନ୍ୟାୟୀ ବ୍ରାହ୍ମଣ ଆଉ କପଟୀ ମଇନ୍ତ
ଅତ୍ୟନ୍ତ ଲୋଭୀ ଭିକାରୀ ଲଘୁ ମଧ୍ୟପାନ ।
ଦୋଗୃହୀ ଦ୍ୱାରଯା ପୁଣି କଳଙ୍କିତ ସୂତ
କିଛି ଦୋଷ ନ ହୋଇବ ଯାଙ୍କୁ କଲେ ହତ ।
ମଧ୍ୟପାନ ପଣେ ହରି ଆସିଛି ଯୁକତେ
କୁପତ ନୋହିବ ଆମ୍ଭେ ତାକୁ ଦେବା ଯେତେ
ବେନି ପଡ଼ାଏ କୁପିତ ହେଲେ ବାସୁଦେବ
ତେବେ ଉଭୟ କୁଳରେ ପ୍ରମାଦ ନୋହିବ ।
କୁପିତ ନୋହିଲେ ଆମ୍ଭେ ଏକ ହୋଇଥିବା
ସେହି ସଭାରେ କୃଷ୍ଣଙ୍କୁ ମାରି ପକାଇବା ।
ଯାଙ୍କୁ ମାଇଲେ ପାଣ୍ଡବେ ହୋଇବେ ଅନାଥ
ଏହୁ ନାରଖାର ବୁଦ୍ଧି ଉଆଏ ସମସ୍ତ ।
ଶକୁନି ମନ୍ତ୍ରୀର ମୁଖୁଁ ଏସନକ ଶୁଣି
ସାନନ୍ଦେ ନିଶରେ ହାତ ଦେଲା କୁରୁମଣି ।
ତୃତୀୟ ପ୍ରହର ଆସି ହୋଇଲା ରଜନୀ
ଛିଦ୍ର କହି ନିଜ ଗୃହେ ଚଳିଲା ଶକୁନି ।
ଦୁର୍ଯ୍ୟୋଧନ ଦୁଃଶାସନ କର୍ଣ୍ଣାଦି ସହିତେ
ଆସ୍ଥାନରୁ ଉଠିଗଲେ ସର୍ବ ଅମାତ୍ୟେ ।
ଶୟନ ମନ୍ଦିରେ ବିଜେ ମାନଚକ୍ରବର୍ତ୍ତୀ
ଅର୍ଦ୍ଧ୍ୟ ଘେନିଣ ଛାମୁରେ ମିଳେ ଭାନୁମତୀ ।
ବନ୍ଦାପନା କଲା ରାଣୀ ଯେମନ୍ତ ବିଧାନ
ବିନୟରେ ମହାସତୀ ପୁଚ୍ଛିଲା ଏସନ ।

ଗୋବିନ୍ଦ ବିଜେ ସୁଧର୍ମ୍ମ ଦେବ ଆଜ୍ଞା ଘେନି
ତାଙ୍କ ସଙ୍ଗେ ରହିଛନ୍ତି ମହା ମହା ମୁନି ।
ମାର୍କଣ୍ଡ ବ୍ୟାସ ନନ୍ତି ତାହାଙ୍କ ସହିତେ
ଜୟ ଜୟ କହିଲେ ସେ ଈଶ୍ୱର ଅଗ୍ରତେ ।
ଏକେ ସହୋଦର ପୁଣି ଅଟନ୍ତି ସେ ଜ୍ୟେଷ୍ଠ
ଶ୍ରୀମନ୍ତ ଧାର୍ମିକ ଆଉ ବିଶେଷେ ବଳିଷ୍ଠ ।
ଗୋବିନ୍ଦ ମଧ୍ୟସ୍ଥ ଯେବେ ଆମ୍ଭ ପୂର୍ବଭାଗ୍ୟ
ସୁରପୁରେ ଭାଇଙ୍କର ଅଛି ଜାଣ ଭାଗ ।
ପଞ୍ଚଗ୍ରାମ ମାଗୁଛନ୍ତି ଯଦି ଜଗନ୍ନାଥେ
ପଡ଼ା ତିନିଖଣ୍ଡି ଦେବା ତାଙ୍କ ପ୍ରୀତି ଅର୍ଥେ ।
ଗୋବିନ୍ଦ ତୃପ୍ତ ହୋଇଲେ ପାଣ୍ଡବରେ ପ୍ରୀତି
ଏଥିପାଇଁ ଭକ୍ତିଭାବେ କରିବା ବିନତି ।
ଭକ୍ତବତ୍ସଳ ଅଟନ୍ତି ପ୍ରଭୁ ବାସୁଦେବ
ଗୋବିନ୍ଦ ତୃପ୍ତିରେ ଆମ୍ଭ ପାପ କ୍ଷୟ ଯିବ ।
ଦୁର୍ଯ୍ୟୋଧନ ବୋଲେ ହୁ ଗୋ ଶୁଣ ହନୁମନ୍ତ
ଭୀଷ୍ମ ଦ୍ରୋଣାଦି ସମସ୍ତେ କହିଲେ ଏମନ୍ତ ।
ମୁହିଁ ହୃଦଗତେ ମଧ୍ୟ ବିଚାରିଲି ଏହା
ମାମୁଁର ବିଚାରନ୍ତି ନ ହଇଲା ତାହା ।
ବୋଇଲା ସେ ଗ୍ରାମ ଦେଲେ ପ୍ରମାଦ ପଡ଼ିବ
ଗ୍ରାମ ଥାଇ ସୂଚୀମୁନେ ଭୂମିହିଁ ନ ଦେବ ।
ହନୁମନ୍ତ ବୋଲେ ସ୍ୱାମି ବିଦ୍ୱଜନ ମତ
ଜଣକ ବୋଲେ ପଡ଼ିଲେ ହୁଅଇ ଅନର୍ଥ ।
ସାବଧାନେ ଶୁଣ କହେ ପୂର୍ବର ଚରିତ
ଷଟକର୍ମ ପୁରାଣରେ ଯା ଅଛି ଲିଖିତ ।
ତୁଙ୍ଗଭଦ୍ରା କୂଳେ ଜ୍ଞାନପୁରେକ ନଗରେ
ମଲେ ପ୍ରାଣୀ ମୁକତ ନ ହୁଅନ୍ତି ସେଠାରେ ।
ଯେତେ ଲୋକ ସେ ସ୍ଥାନରେ ହୋନ୍ତି ପ୍ରାଣେହତ
ସ୍ୱର୍ଗେ ପଶି ନ ପାରନ୍ତି ହୁଅନ୍ତି ସେ ପ୍ରେତ ।
ଏମନ୍ତେ ବହୁତ ପ୍ରେତ ନଦୀକୂଳେ ଜୁଣ୍ଡ
ସେମାନେ ଅଟନ୍ତି ଦୁଷ୍ଟ ମହା ପରଚଣ୍ଡ ।
ପର୍ଣ୍ଣି ମହିଷ୍ମ ନିବାସୀ ଶୂଦ୍ରକ ରାଉଳ
ସେ ଯାଇ ପ୍ରବେଶ ହେଲା ତୁଙ୍ଗଭଦ୍ରା କୂଳ ।
ବଡ଼ ପରିମଳ ଅଟେ ଦେଖିଲା ସେ ଗ୍ରାମ
ତେଣୁକରି ସେ ନଗ୍ରରେ କଲେକ ବିଶ୍ରାମ ।
ଗୁଣବନ୍ତ ଦେଖି ସର୍ବେ ତାକୁ କଲେ ପୂଜା
ଗୋଟିଏ ଆତ୍ମଜ ତାର ଗୋଟିଏ ଭାରିଯା ।

ଏକଦିନେ ସେ ଶୂଦ୍ରକ ଗ୍ରାମ ବୁଲିଗଲା
ଧବଳ ପର୍ବତ ତଳେ ସ୍ଥାନେକ ଦେଖିଲା ।
ଦେଖିଣ ରାଉଳ ତହୁଁ ବିଚାରିଲା ମତି
ଗ୍ରାମବାସୀଙ୍କୁ ମାଗିଣ କରିବି ମୁଁ ବୃତ୍ତି ।
ମହାବଳବନ୍ତ ପୁଣି ନରେଶ ଏ ବୃତ୍ତି
ମାଧ୍ୟତଳ ଖଣ୍ଡିଏ ଯେ ବୁଣିବି ମୁଁ ଏଥି ।
ଏହା ବିଚାରି ରାଉଳ ଗ୍ରାମକୁ ଆଇଲା
ସେ ଦେଶ ମହାଜନଙ୍କୁ ଯାଇଣ ଭେଟିଲା ।
ସେ ଗ୍ରାମ ଲୋକମାନଙ୍କୁ ମାଗିଲା ସେ ଭୂମି
ତିଳ ଖଣ୍ଡିଏ କରିବି ଦିଅ ମୋତେ ସ୍ୱାମି ।
ନିର୍ମଳ ଭୂମି ଖଣ୍ଡିଏ ଦେଖିଲଇଁ ମୁହିଁ
ଧବଳ ପର୍ବତ ତଳେ ଗୃହ କରିବ [illegible] ।
ଗ୍ରାମର ଲୋକେ ବୋଇଲେ ତହିଁ ଭୂତମେଳ
ଦୁର୍ଭର ପ୍ରେତ ସଙ୍ଗେ କେ ହେବ ବାତୁଆଳ ।
ରାଉଳ ବୋଇଲା ମହାଜାଲ ମୁଁ ପାତିଲେ
ଏକଘାତ୍ରିକରେ ବାନ୍ଧି ପାରିବି ମୁଁ ଭଲେ ।
ଏହିରୂପେ ବୋଲି ସେହୁ ଶୂଦ୍ରକ ରାଉଳ
ବୃଷ ଚଢ଼ିବାକୁ ଗଲା କରି ଅନୁକୂଳ ।
ଲଙ୍ଗଳ ବୃଷଗୋଟିକୁ ଯୋଗୁଇ ଘେନିଲା
କୃଷିକାରୀଙ୍କୁ ଲଗାଇ ବାହୁଡ଼ି ଆଇଲା ।
ଶୁଣ ନାଥ ସବୁ ପ୍ରେତ ଏକମେଳ ହେଲେ
କୃଷିକାରୀଙ୍କ ଲୋକଙ୍କୁ ସେ ଯାଇଣ ଲାଗିଲେ ।
ହଳତୁଣ୍ଡ ସର୍ବେ କେଶ ବାସ ଅସମ୍ଭାଳେ
ଭୂତ ପରାୟେ ନାଚିଲେ ଅତି କୁତୂହଳେ ।
ବଳଦ ପଳାଇ ଗଲେ ଜୁଆଳିକି ଭାଙ୍ଗି
ତଉଅନ୍ତି କୃଷାଣ ମାନ ଧାଇ ଭୂତସଙ୍ଗୀ ।
ଅନ୍ୟ ଘେନିଣ ରାଉଳ ପ୍ରବେଶିଲା ବେଗି
ଦେଖେ ବଳଦ ପଳାନ୍ତି ଲଙ୍ଗଳକୁ ଭାଙ୍ଗି ।
କୃଷାଣମାନେ ତଉଅନ୍ତି ଦେଇ ଗଳଗାଜ
ରାଉଳ ବୋଲେ ଭାଙ୍ଗିବି ପ୍ରେତ ଠାଣି ଆଜ ।
ଏତେ ବୋଲି ମହାଜାଲ ପାତିଲା ବନ୍ଧନ
ସମସ୍ତ ପ୍ରେତମାନଙ୍କୁ କଲା ସେ ବନ୍ଧନ ।
ବିକଳେ ଲୋଟନ୍ତି ଭୂତ ରାଉଳର ପାଏ
ବୋଲନ୍ତି ଏତେ କାଳରେ ପଡ଼ିଲୁ ଅପଚୟେ ।
ମହାରାଉଳ ବୋଇଲା କାଳିବି ତୁମ୍ଭଙ୍କୁ
ଷାଠିଏ ପଉଟି ତିଳ ନ ଦେଲେ ଆମ୍ଭଙ୍କୁ ।

ବଛନ ଉପରେ ସମସ୍ତେ ସନମତ କଲେ
ଅଇଁଠା ଚଣ୍ଡିକୁ ଲଗା କରି ପଳାଇଲେ ।
ବାହୁଡ଼ି ମହାରାଉଳ ନିଜ ଗୃହେ ଗଲା
କୃଷିକାରୀ ଲୋକଙ୍କୁ ସେ ଯାଇ ପ୍ରବୋଧିଲା ।
ବାବନାଭୂତ ବୋଲଣ ଭୂତଙ୍କର ରାଜା
ପ୍ରତାପୀ ସେ ସବୁ ଭୂତ କରନ୍ତି ତା ପୂଜା ।
ସେ ନଥିଲା ପରବେଶ ହୋଇଲାକ ଆସି
ବୋଇଲା ମୋ କ୍ରୀଡ଼ାଭୂମି କିଏ ଅଛି ଚଷି ।
ଭୂତେ ବୋଇଲେ ଗୋସାଇଁ ଏକଇ ରାଉଳ
ସେହୁ ଚାଷ ଚଷୁଅଛି ବୁଣାଇବ ତିଳ ।
ଆମ୍ଭେ ବରେଧିଲୁ ତାର କୃଷାଣମାନଙ୍କୁ
ମହାଜାଲ ପାତି ସେହୁ ଧଇଲା ଆମ୍ଭଙ୍କୁ ।
ଷାଠିଏ ପଉଟି ତିଳ ଦେବା ସ୍ଥିର କଲୁ
ଅଇଣ୍ଠା ଚଣ୍ଡିକୁ ଲଗା କରିଣ ଆସିଲୁ ।
କ୍ଷଣେହେଁ ସେ ନ ଗୁଡ଼ିଣ ମାରଇ ନିରତ ।
ତା ଶୁଣି ବାବନାଭୂତ ହେଲା କୋପାନ୍ୱିତ ।
ମୂହୁର୍ତ୍ତକେ ବସି ତହିଁ ଚିନ୍ତାନ୍ୱିତ ହେଲା
ବୋଲେ ଦଣ୍ଡେ ନ ଥିବାରୁ ଏତେକୃତ୍ୟ କଲା
ମୁହିଁ ତୁମ୍ଭର ଠାକୁର ଅଟେ ମହାପ୍ରଭୁ
ଷାଠିଏ ପଉଟି ତିଳ କାହୁଁ ଆଣିଦେବୁ ।
ଏବେ ଯେ ତୁମ୍ଭେ ସମସ୍ତେ ଆସ ମୋରତୁଲେ
ସେ ରାଉଳ ଦେହମାଂସ ଭକ୍ଷିବା ହୋ ଭଲେ
ଭୂତେ ସକଳେ ବୋଇଲେ ମାଂସେ ନାହିଁକାର୍ଯ୍ୟ
ଆଗେ ତିଳ ଛଡ଼ାଇଣ ଆସ ଭୂତରାଜ ।
ପ୍ରଚଣ୍ଡ ରୂପକୁ ଧରି ବୋଲେ ଭୂତରାଜ
ନରଜନଙ୍କୁ ଧୂମାନ୍ତ କରିବି ମୁଁ ଆଜ ।
ଚଳିଲା ବାବନାଭୂତ ହୋଇ କୋପାନଳ
ପ୍ରବେଶିଲା ଯହିଁ ଗୃହ କରିଛି ରାଉଳ ।
ଶୁଣ ରାଜନ ବାବନା ଭୂତ ଗଲା ବେଗେ
ସେ ମହାରାଉଳ ପୁଚ୍ଛ ଅଗ୍ରେ ଯାଇ ଲାଗେ ।
ସେ ପୁଚ୍ଛର ଚେଷ୍ଟା ଦେଖି ରାଉଳ ଜାଣିଲା
ମହାଜାଲ ପାତି ଭୂତରାଜକୁ ଧଇଲା ।
ଲୁହାକଣ୍ଟାରେ ରାଉଳ କାଳିବାକୁ ଗଲା
କ୍ଷମାକର ମୋତେ ବୋଲି ବାବନା ବୋଇଲା
ରାଉଳ ବୋଇଲା ଯେବେ ଛାଡ଼ିବି ମୁଁ ତୋତେ
କିଷଠି ପୌଟି ତିଳ ଦେବୁଟିକି ମୋତେ ।

ବାବନାଭୂତ ବୋଇଲା ସର୍ବେ ଯାହାକଲେ
ଅପଖ୍ୟାତି ପାଇବ ନା ମୁହିଁ ଛଡ଼ାଇଲେ ।
ପାଣିରେ ଧୋଇଦେବି ମୁଁ ତା ଚେପା ଛଡ଼ାଇ
ଶଙ୍ଖବର୍ଣ୍ଣ ପ୍ରାପ୍ତ କରିଦେବି ମୁଁ ଗୋସାଇଁ ।
ଶୁଣି ସେ ମହାରାଉଳ ମନରେ ହସଇ
ଅଇଣ୍ଠା ଚଣ୍ଡିକୁ ଲଗା କରିଣ ଆସଇ ।
ଏହି ପରକାରେ ସେହି ନିଷ୍ଟସ୍ଥିତା କରି
ତିଳ ଦେଲା ନିବନ୍ଧିରେ କହିଲା ଯେପରି ।
ଏହିପରି ଭାନୁମତୀ ରାଜାକୁ କହିଲା
ବହୁଜନ କଥା ମେଣ୍ଟି ଏମନ୍ତ ହୋଇଲା ।
ଯେହୁ ବହୁଜନ ତେଜେ ନିଜମତ ଘେନି
କାଳେ ବାବନା ପରାୟେ ହୋଇବ ଶକୁନି ।
ଦୁର୍ଯ୍ୟୋଧନ ବୋଇଲା ଗୋ ଶୁଣ ଭାନୁମତୀ
ଜନ୍ମେ ଜନ୍ମେ ହୋଇଥାଉ ଶକୁନି ମୋ ମନ୍ତ୍ରୀ
ପଞ୍ଚରାଜ୍ୟ ପାଇଲି ମୁଁ ମାମୁଁର ପ୍ରସାଦେ
ଅନେକ ଶତ୍ରୁ ଜିଣିଲି ମୁହିଁ ଅପ୍ରମାଦେ ।
ଭୀମେ ବିଷଲଡ଼ୁ ଦେଲି ମାତୁଳ ବୁଦ୍ଧିରେ
ପଶା ଖେଳାଇ ଲଭିଲି ରାଜ୍ୟ ଅକ୍ଲେଶରେ ।
ବାରୁଣାରେ ଜତୁଗୃହ ଭିଆଇଲା କୂଟେ
ଜଉ ସଜଳସ ଗୁଆଘୃତ ଛଣପଟେ ।
ମୋର ଶତ୍ରୁ ଜିଣିବାକୁ ତାର ଏଡ଼େ ମନ
ପ୍ରାଣ ଥିବାଯାଏ ତାକୁ ନ କରିବି ଭିନ୍ନ ।
ଭାନୁମତୀ ବୋଲେ ସ୍ୱାମୀ ମୃତ୍ୟୁକାଳେ ପ୍ରାଣୀ
ମାରକ ପଦାର୍ଥ ସବୁ ସୁଧାପ୍ରାପ୍ତ ମଣି ।
କୂଟେ ପାଷାଣ ଗୃହରେ ତା ବଂଶକୁ ଧରି
ଯେଉଁ ପରକାରେ ତୁମ୍ଭେ ତାଙ୍କୁ ଅଛ ମାରି
ଏଡ଼େ କୂଟ କପଟରେ ଲଭିଅଛ ସିଦ୍ଧି
ତୁମ୍ଭ ବଂଶ ମରାଇବ କରିଛ ଏ ବୁଦ୍ଧି ।
ସ୍ୱାମି ସୋଦର ସଂଗ୍ରାମ ନ ଯୋଗାଏ ମୋତେ
ରାଜ୍ୟ ଅର୍ଦ୍ଧଭାଗ ତାଙ୍କୁ ଯୋଗାଏ ଯୁକତେ ।
ଯୁକତେ ତୁମ୍ଭ ସୋଦର କୃଷ୍ଣ ସାହା ତାଙ୍କୁ
କେମନ୍ତେ ରଣେ ଜିଣିବ ପାଣ୍ଡବମାନଙ୍କୁ ।
ତାଙ୍କର ବଳ ବୁଝିଛି ମୁହିଁ ହେତୁକରି
କୌଣସି କାଳେ ତାହାଙ୍କୁ ନ ହୋଇବ ସରି
ହେ ରାଜନ ବିଷଲଡ଼ୁ ଭୀମ ପାରିକଲା
ନାଗବଳ ରଞ୍ଜି ବହୁବିଦ୍ୟା ସେ ପାଇଲା ।

କଳ୍ପୁସ୍ତମ୍ଭରୁ ଉଦ୍ଭୁରି କୁମ୍ଭୀଶିଙ୍କୁ ମାରି
ମଧୁବନରେ ସଂହାର କରିଲେ କଳଙ୍କି ।
ହିଡ଼ିମ୍ବକ ବନେ ପଶି ହିଡ଼ିମ୍ବାକୁ ନାଶି
ଏକଚକ୍ରରେ ବକାକୁ ପକାଇଲେ ଧ୍ୱଂସି ।
ଅଙ୍ଗାରପର୍ଣ୍ଣଗଙ୍କୁ ଯେ ଜିଣି ଫାଲଗୁନି
ପାଞ୍ଚାଳେ ପ୍ରବେଶ ହେଲେ ଦ୍ୱିଜରୂପ ଘେନ
ଲକ୍ଷେକ ରାଜା ଯେଉଠାରେ ହୋଇଥିଲେ ମେଳ
ମହା ଲକ୍ଷ ଭେଦି ପାର୍ଥ ଲଭିଲ ପାଞ୍ଚାଳୀ ।
ବହୁନୃପ ଘେନ ତୁମ୍ଭେ କରିଲ ସମର
ଲଜ୍ଜା ପାଇଲ ସୈନ୍ୟ ଯେ ଗଲେ ଯମଘର ।
ସ୍ୱାମୀ ହେ ଇନ୍ଦ୍ର ହୋଇଲେ ଅର୍ଜ୍ଜୁନ ବିବାଦୀ
ଖାଣ୍ଡବ ଦହି ଅଗ୍ନିର ନାଶିଲ ବ୍ୟାଧି ।
ନିବାତକବଚ ମାରି ସ୍ୱର୍ଗ କଲ ରକ୍ଷା
ଇନ୍ଦ୍ରଦେବର ପୂରିଏ ସେହୁ ମନୋବାଞ୍ଛା ।
ହନୁ ଅର୍ଜ୍ଜୁନ ସମୟେ ହୋଇଲେ ବିବାଦୀ
ଶରେ ଶର ସଂଯୋଗରେ ବାନ୍ଧେ ବାରିନିଧି ।
ଘୋଷଯାତ୍ରାକାଳେ ଚିତ୍ରସେନ ନେଲ ଧରି
ତହୁଁ ପାର୍ଥ ଆଣିଲେ ତୁମ୍ଭଙ୍କୁ ଉଦ୍ଧରି ।
ପାଣ୍ଡବାସୁର ତୁମ୍ଭଙ୍କୁ ଗିଳିବାର ବେଳେ
ତାଙ୍କୁ ମାରି ଉଦ୍ଧାରିଲ ତୁମ୍ଭଙ୍କୁ ସେ ହେଳେ ।
ଗୋଧନ ହରଣକାଳେ ଜାଣ ସବୁକଥା
କିଏ ବା ନ ଥିଲେ ତହିଁ ତୁମ୍ଭ ମହାକଥା ।
ଅଲକ୍ଷିତକର୍ମା କଲେ ରକ୍ଷା ଜଗତ୍‌ଶ୍ରେଷ୍ଠୀ
ଚିରନ୍ତନ କଥା ତହୁଁ ରଖିଲେ ଜଗତି ।
ସ୍ୱାମି କଲ ଉପକାର ନ ମାନେ ଯେ ଜନ
ଅସ୍ୱାର୍ଥ ଶାବକ ତାର ନରକେ ପତନ ।
ଦୁର୍ବୁଦ୍ଧି କଥା କହନ୍ତି କର୍ଣ୍ଣ ଦୁଃଶୋ ମଲ୍ଲ
ଯାଙ୍କ ବୁଦ୍ଧି କଲେ କାଳେ କାର ନୁହେ ଭଲ
ହନୁମନ୍ତ ବୋଲେ ସ୍ୱାମି ଶୁଣ ମୋ ବଚନ
ଯେତେ କଥା କହେ କର୍ଣ୍ଣ ହୋଇଲ ମଉନ ।
ସମସ୍ୟା ନ କଲେ ସ୍ୱାମି ମୋର ବଚନକୁ
ସଂଗ୍ରାମ କଲେ କି ଯଶ ହୋଇବ ତୁମ୍ଭଙ୍କୁ ।
ହନୁମନ୍ତ କହୁଁ କହୁଁ ପ୍ରହରେ ରଜନୀ
ସ୍ନାନ ମନ୍ଦରେ ବିଜୟେ କଲ କୁରୁମଣି ।
ନିତ୍ୟକର୍ମ ସାରି କଲ ଦେବପିତୃ ପୂଜା
ଭୋଜନାନ୍ତ ଶେଷକରି ତହୁଁ କୁରୁରାଜା ।
ସଭା ମଣ୍ଡପରେ ଯାଇ ବିଜୟେ ତକ୍ଷଣ
ସକଳ ଅମାତ୍ୟ ଆସି କଲେ ଦରଶନ ।
ବିଜେ ସମ୍ପୂର୍ବ ଆସ୍ଥାନେ ମାନଚକ୍ରବର୍ତ୍ତୀ
ପାତ୍ରଦଣ୍ଡମାନେ ଯେଝା ଆସ୍ଥାନେ ବସନ୍ତି ।
ଚଳେ ପଟ୍ଟଆସି ଛନ୍ତି ସହସ୍ରେ ସଇନ
ଖଣ୍ଡିଆ ଡାକଇ ନୃପ ହୁଅ ସାବଧାନ ।
ଜୟ ତୁ ଧର୍ମଦେବତା କାର୍ଯ୍ୟ କରୁ ସିଦ୍ଧି
ଜୟ ତୁ ଧର୍ମଦେବତା ସାତ୍ତ୍ୱିକ ପୟୋଧି ।
ନିରଞ୍ଜନ ନିର୍ମଳ ତୁ ଅଟୁ ନିରାକାର
ଧର୍ମର ପୁରୁଷ ତୁହି ଧର୍ମେ କରୁ ପାର ।
ଅହିଂସା ଅମାୟା ତୋର ଅଭେଦ ଅନନ୍ତା
ଦୁଃଖୀ ତାରଣ ଅଗତି ତୁହି ଗତିଦାତା ।
ନମାମି ଶ୍ରୀନାରାୟଣ ଚରଣ ସରୋଜ
ଯୋଗୀଜନ ଚିନ୍ତାମଣି ହୃଦୟରେ ଭଜ ।
ଅନାଥ ତାରଣ ନାଥ ଅଟୁ ଦେବସ୍ୱାମି
ଶରଣ ତାରିବାପାଇଁ ଜାତ ଅନ୍ତର୍ଯ୍ୟାମୀ ।
ଭାବଗ୍ରାହୀ ନାଥ ତୁହି ଭକତବତ୍ସଳ
ତିନି ଭୁବନଯାକଙ୍କ ରଖନ୍ତା କେବଳ ।
ଅନୁବ୍ରତେ ଚିନ୍ତାମଣି ପରଦୁଃଖେ ଦୁଃଖୀ
ବାଞ୍ଛିତ ଭକତେ ମହାସଙ୍କଟରୁ ରଖି ।
ଯାବତ କର୍ମେ ଧରିବା ତୋର ନାମଗୋଟି
ଯାର ଦର୍ଶନରେ ଜନ୍ମଅନ୍ଧ ଯାଏ ଫିଟି ।
ଏ ମାୟା ସଂସାର ବୃଥା ମାୟାରେ ଆବଦ୍ଧ
ହୃଦଗତେ ଜାଣୁ ଜାଣୁ ଅଦଭୁଡ଼ ବନ୍ଧ ।
ଧର୍ମଦେବଠାରେ ମୁହିଁ ସଦା ଅପରାଧୀ
ନିରାକୁଳ ଭୂମିକୁ ମୁଁ ବଳାଇଲି ବୁଦ୍ଧି ।
ଶ୍ରୀଧର୍ମଦେବତା ପାଦେ ସର୍ବଦା ଦଇନୀ
ବଦତି ଶାରଳାଦାସ କବି ଶୂଦ୍ରମୁନି ।

---

## କୌରବ ସଭାକୁ ଶ୍ରୀକୃଷ୍ଣଙ୍କର ଦ୍ୱିତୀୟଥର ଗମନ ଓ ଭୀଷ୍ମଙ୍କର ଅପମାନ ଏବଂ ନରସିଂହରୂପ ଧାରଣ

ଶୁଣ ହେ ଚୈତନ୍ୟ ତୁମ୍ଭେ ପୁଚ୍ଛା କଲ ଯେ
ବିଦୁର ଭବନୁ [illegible]

ଅଠାଶୀ ସହସ୍ର ଋଷି ଘେନଣ ସଙ୍ଗରେ
ବିଜେକଲେ ଦାମୋଦର ସଭାକୁ ସଭରେ ।
ଭୀଷ୍ମ ବୋଇଲେ ଶୁଣିଁ ଶକୁନିର ମୁଖ
ଆଜି ଜଗନ୍ନାଥ ମୁଖ ପ୍ରସନ୍ନତା ଦେଖ ।
ତାରଣ ମାରଣ ନାଥ ଜାଣେ ସର୍ବବୁଦ୍ଧି
କୁଟ ହଳୀ ପୁରୁଷ ସେ କରେ ସର୍ବସିଦ୍ଧି ।
ଆହୁରି କଥାଏ ତୁମ୍ଭେ ଶୁଣ ମହୀବର
ବେନିପଡ଼ା ଦେବୁ ବୋଲି କଲୁ ଅଙ୍ଗୀକାର ।
ଶକୁନି ବୋଇଲା ସର୍ବେ ହେଲ ଏକମତ
ଚକ୍ରକୁଟ ବୁଦ୍ଧି ତାର ଅଟଇ ଅନନ୍ତ ।
ଦୁଇଖଣ୍ଡ ପଡ଼ାରେ କି ସନ୍ତୋଷ ହୋଇବ
ଉପାୟ କରଣ ସେହୁ ଘର ନବାରିବ ।
ଏହିକ୍ଷଣି ଶୁଣିବା ନା ମଧ୍ୟପାତ୍ର ବାଣୀ
କେଉଁ ପଡ଼ା ମାଗନ୍ତି ସେ ଦେବ ଚକ୍ରପାଣି ।
ଆଉ ବିଳମ୍ବ ନୋହିବ ସନ୍ଦେହର କଥା
ଏକ୍ଷଣି ଶୁଣିବ ସର୍ବେ ପଡ଼ାର ବାରତା ।
ଏହି ବିଚାର କରନ୍ତି ସଭରେ ସକଳେ
ଦେବବ୍ରତେ ପ୍ରବେଶିଲେ ଆସ୍ଥାନର ତଳେ ।
ନାରଦଙ୍କ ସଙ୍ଗରେ ଛନ୍ତି ଋଷିଗଣ
ପୂର୍ଣ୍ଣ ସଭାରେ ପ୍ରବେଶ ହୋଇଲେ ଆପଣ ।
ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ ଶୁଣ ବାସୁଦେବ
କିମ୍ପା ତ କାର୍ଯ୍ୟ ଆଗତ କହ ଆମ୍ଭ ଠାବ ।
ମଧ୍ୟସ୍ଥପଣେ ଆସିଛ ଘେନି ଯେଉଁ କଥା
ସ୍ୱରୂପ କରଣ କହ ନ କର ଅନ୍ୟଥା ।
ଗୋବିନ୍ଦ ବୋଇଲେ ଶୁଣ ହେ ମାନଗୋବିନ୍ଦ
ସମସ୍ତେ ବ୍ୟାକୁଳ ଆମ୍ଭେ ଯେହ୍ନେ ନୋହୁ ଦ୍ୱନ୍ଦ୍ୱ
ଉଭୟକୁଳ ବିରୋଧୀ ମଧ୍ୟପାତ୍ର କାହିଁ
ପ୍ରୀତି କରାଇଲେ ପୁଣ୍ୟଠାରୁ ପୁଣ୍ୟନାହିଁ ।
ମୁହିଁ ମଧ୍ୟସ୍ଥ ମୋହର କି ଅଛି ଉପାୟ
ଯାହା ମୋତେ ବୋଲଛନ୍ତି ଧର୍ମ ଦେବରାୟ ।
ବାବୁ ସୋମବଂଶର ସେ ଜ୍ୟେଷ୍ଠ ମହାରାଜ
ସେ ପଞ୍ଚଭ୍ରାତ ଅଟନ୍ତି ଏକଇ ଆତ୍ମଜ ।
ତୁମ୍ଭେ ମଧ୍ୟ ଶତଭ୍ରାତା ଅଟ ସେହିମତ
ଯୁକତେ ସୋଦର ତୋର ସେ ଜ୍ୟେଷ୍ଠ ଅଟନ୍ତି
ମୂର୍ଦ୍ଧାପଯାକ ଭୋଗ ହେଉଛି ତୁମ୍ଭଙ୍କୁ
ପଡ଼ା ପାଞ୍ଚଖଣ୍ଡି ମାତ୍ର ଦିଅ ଯୁଧିଷ୍ଠିଙ୍କୁ ।

ଲକ୍ଷେଯୁଣ ଆଯୁତନ ପଞ୍ଚରାଜ୍ୟ ସ୍ଥଳୀ
କୋଣେ ଦେଲେ ସହୋଦର ରହିବେ ସମ୍ଭାଳି
ଋଷିମାନେ ସାକ୍ଷୀ ଥାଅ ମୁହିଁ ପଡ଼ା ମାଗେ
ପାଣ୍ଡବେ ସୋଦର ତୋର ନଷ୍ଟେଁ ଯାଗଲାଗେ
ଆକ୍ଷୋହିଣି ବଚନମାନ କହୁଁ ବନମାଳୀ
ଶୁଣି ମାନଗୋବିନ୍ଦର ମୁଖ କର୍ମେ ଚଳ ।
ମାନଗୋବିନ୍ଦ ବୋଲଇ ଶୁଣ ବାସୁଦେବ
ମଧ୍ୟପାତ୍ର ହୋଇ କପାଁ କହୁନ୍ତୁ ଅଭାବ ।
ପାଣ୍ଡବେ ମୋହର ପୁଣି କେଉଁପର ଭ୍ରାତ
ଯୁଧିଷ୍ଠି ଯାହାକୁ ବୋଲ ଧର୍ମଠାରୁ ଜାତ ।
ଭୀମସେନ ତ ହୋଇଲା ପବନର ସୁତ
ହେ ଶ୍ରୀହରି ଏ କଥା ତ ନୁହଇ ଉଚିତ ।
ହେ କେଶବ ବାସବର ପୁତ୍ର ଧନଞ୍ଜୟ
କେମନ୍ତ ଭାଗ ଘେନିବ କହ ଦେବରାୟ ।
ଅଶ୍ୱିନୀକୁମାରଙ୍କର ନକୁଳ ସନ୍ତତି
ସହଦେବ ଏକା କୁରୁବଂଶ ଉତପତ୍ତି ।
ପାଞ୍ଚପିତାଙ୍କ ବୀର୍ଯ୍ୟରୁ ପାଞ୍ଚପୁତ୍ର ଜାତ
ସଭାରେ କହ କପରି ସେ ମୋହର ଭ୍ରାତ ।
ପଣ୍ଡୁରାଜାଙ୍କର ପୁତ୍ର ଏକଗୋଟି ମାତ୍ର
ଛଦ୍ମପଣରେ ହରି କହୁଛ ଏମନ୍ତ ।
ପଣ୍ଡୁ ବୀର୍ଯ୍ୟ ସେହି ଯେବେ ହୋଇଥାନ୍ତେ ଜାତ
ଯୁକତେ ଭାଗ ତାହାଙ୍କୁ ଦିଅନ୍ତି ଜଗନ୍ନାଥ ।
ଜାର ସଂଯୋଗରେ ଜାତ କରିଲା କୋଇନ୍ତା
ଦୋଗୁଣ୍ଡି ନାମରେ ସେହୁ ଅଟଇ ଗଣିତା ।
ସର୍ବଜ୍ଞନାଥ ହୋଇଣ କର୍ପା ଏହା କହୁ
ବନ୍ଧୁପଣେ ମଧ୍ୟପାତ୍ର ହୋଇବୁ ତୁ କାହୁଁ ।
ଦୁର୍ଯ୍ୟୋଧନର ମୁଖରୁ ଏହି କଥା ଶୁଣି
ଦରହସିତେ କହନ୍ତି ତହୁଁ ଚକ୍ରପାଣି ।
ଆହେ ଦୁର୍ଯ୍ୟୋଧନ ତୋର ବାଳଭାବ ମତ
ଏହି ମହାସଭାରେ ତୁ କହିଲୁ ଅମାତ ।
ତୁହି ଯାହା କହିଗଲୁ ନିରର୍ଥ ବଚନ
ଶୁଣ ତୁମ୍ଭ ପୂର୍ବବଂଶ ଯେଉଁ କଥାମାନ ।
ଆଦ୍ୟ ବୃହସ୍ପତି ଭାର୍ଯ୍ୟା ନାମ ତାରାବତୀ
ଶିଶୁବୁଦ୍ଧ ଚନ୍ଦ୍ର ସଙ୍ଗେ ବଢ଼ାଇଲେ ପ୍ରୀତି ।
ସତ୍ୟଯୁଗେ ତାରା କଲା ଯେ ଅମାତ କଥା
ନିଜ ସ୍ୱାମୀ ତେଜିକରି ହେଲା ପରରତା ।

ତାରାଗର୍ଭେ ଚନ୍ଦ୍ରଙ୍କର ରହିବାରୁ ବୀର୍ଯ୍ୟ
ତହିଁ ଜାତ ହେଲା ବୁଧ ନାମରେ ଆତ୍ମଜ ।
ବୁଧଙ୍କର ପୁତ୍ର ହେଲା ନାମ ପୁରୂରବା
ତାହାଙ୍କ ପୁତ୍ର ଆୟୁର ହେଲା ନୃପଦେବା ।
ଆୟୁର ପୁତ୍ର ଜନ୍ମିଲା ନହୁଷ ନୃପତି
ନହୁଷର ପୁତ୍ରନାମ ହୋଇଲା ଯଯାତି ।
ଯଯାତି ନନ୍ଦନ ପୁରୁ ନାମେ ହେଲା ଖ୍ୟାତ
ପୁରୁ ନନ୍ଦନ ପ୍ରବୀର ହେଲା ମହାରଥୀ ।
ପ୍ରବୀର ନନ୍ଦନ ମନୁସାନନ୍ଦ ଯେ ବୀର
ମନୁସାନନ୍ଦର ପୁତ୍ର ହେଲା ଇଲ୍ଲିବୀର ।
ଇଲ୍ଲିବୀରର ନନ୍ଦନ ନାମ ଅନୁପମ
ଦୁଷ୍ମନ୍ତ ବୋଲିଣ ଅଟେ ଏହା ଅନ୍ୟନାମ
ଦୁଷ୍ମନ୍ତ ପୁତ୍ରର ନାମ ଅଟଇ ଦୁବନ୍ତ
ଦୁବନ୍ତର ସୁତ ନାମ ହୋଇଲା ଭରତ ।
ଭରତ ରାଜା ସ୍ୱନାମେ ରାଜ୍ୟ କଲେ ଖ୍ୟାତ
ଭୂମନ୍ୟୁ ବୋଲି ଏହାଙ୍କଠାରୁ ହେଲା ଜାତ ।
ଭବତପୁ ବୋଲିକରି ଏହାଙ୍କ ସନ୍ତତି
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ହେଲେ ମହାରଥୀ ।
ଭବତପୁର ସନ୍ତତି ତମ୍ଭୂ ମହାରାଜା
ବାହାହୋଇଲା ତପତି ଆଦିତ୍ୟ ଆତ୍ମଜା ।
ତପତି ଗର୍ଭରୁ ଜାତ ହେଲା ଏକପୁତ୍ର
କୁରୁ ନାମରେ ନୃପତି ହୋଇଲା ସମ୍ଭୂତ ।
କୁରୁରାଜାଙ୍କ ନନ୍ଦନ ପାର୍ଥିବ ନୃପତି
ଯାଙ୍କ ନନ୍ଦନ ଶାନ୍ତନୁ ନୃପ ମହାପତି ।
ତନ ହେତସ୍ୱାର୍ଯ୍ୟ ଯେ ଭୀଷ୍ମ ତନପୁତ୍ର
ଗଙ୍ଗାଙ୍କ ଉଦରୁ ଭୀଷ୍ମ ହୋଇଲେ ସମ୍ଭୂତ ।
ପିତା ପାଇଁ ଭୀଷ୍ମ କଲେ ଦାର ସହରଣ
ସତ୍ୟବତୀ ଗର୍ଭେ ବ୍ୟାସ ଜନ୍ମିଲେ ଆପଣ ।
ତନ ଦତରବର୍ଯ୍ୟ ଯେ ଗଙ୍ଗା ଶାପେ ମଲେ
ସେହି ଦୁଇଭାଇ କାଳେ ଅପୁତ୍ରିକ ଥିଲେ
ଆହେ ଦୁର୍ଯ୍ୟୋଧନ କହା ଜନ୍ମ ହେ ଅମିତ
ଆଦ ଜାର ପୁରୁଷରେ ବୁଧ ଉତପତ୍ତି ।
ବ୍ରହ୍ମାଙ୍କ ରେତ ସ୍ଖଳିତ ମୋହମର କୂଳେ
ସେ ବେତ୍ୟେଗର୍ଭେ ବଶିଷ୍ଠ ଜନମ ଲଭିଲେ ।
ହରଣୀ ନାମରେ ଥିଲା ଏକଇ ଚଣ୍ଡାଳୀ
ତା ସଙ୍ଗେ ମାତି ବଶିଷ୍ଠ ହେଲେ କୁତୂହଳୀ ।

ବଶିଷ୍ଠ ରେତେ ଚଣ୍ଡାଳୀ ହେଲା ଗର୍ଭବାସ
ସେ ଗର୍ଭରୁ ଶକ୍ତିଋଷି ହୋଇଲେ ପ୍ରକାଶ ।
ଶକ୍ତିଋଷି ଆକାଶକୁ ଗଙ୍ଗାସ୍ନାନେ ଗଲେ
ଜନଚନ୍ଦ୍ର ଅପସରା ବାଟରେ ଭେଟିଲେ ।
ଭୋଜପୁର ନଗରରେ ନୃତ୍ୟ କରୁଥିଲା
ଆମନ୍ତ ମହାତ୍ମାକୁ ସେ ବାଟରେ ଭେଟିଲା ।
ନବଯୌବନୀ ଭୂଷଣଭୂଷିତା କେଳୁଣୀ
ପକ୍ଷୀମାଳା ଚନ୍ଦ୍ର ତାର ସୁନ୍ଦର ଗାଏଣୀ ।
ସର୍ବ ଆଭରଣ ହୋଇ ଏକାକୀ ଆସୁନ୍ତି
ଦେଖିଣ ମହାତ୍ମା ତାକୁ ନ ପାରଲେ ମୂର୍ଚ୍ଛି ।
ପରାଶର ନାମେ ଏକ ପର୍ବତର ତଳେ
କ୍ରୀଡ଼ା ରଙ୍ଗରେ ମଜ୍ଜିଲେ ଅଜବାଣୀ କୂଳେ ।
ଅମୋଘ ରେତ ଛାଡ଼ିଲେ ଶକ୍ତି ମୁନିବର
ତହିଁରୁ ଜାତ ହୋଇଲେ ମୁନି ପରାଶର ।
ପରାଶର ମହାମୁନି ଗଙ୍ଗାକୂଳେ ଗଲେ
ଦାସରାଜାର କନ୍ୟାକୁ ନାବରେ ଦେଖିଲେ ।
ସତ୍ୟବତୀ ନାମେ ତାର ଜାତି କେଉଟୁଣୀ
ନଉକାରେ ପାରକରେ ସବୁଙ୍କୁ ରମଣୀ ।
ପରାଶର ମହାମୁନି ତାକୁ କଲେ ଶ୍ରଦ୍ଧା
ମତ୍ସ୍ୟଗନ୍ଧ ଛାଡ଼ି ହେଲା ସେ ଯୋଜନଗନ୍ଧା ।
ତାର କୂଳେ ପରାଶର କଲେ ଅଭିଳାଷ
କଇବର୍ତ୍ତୀଠାରୁ ଜାତ ହେଲେ ମୁନିବ୍ୟାସ ।
ଭୀଷ୍ମଦେବ କଲେ ଯତ୍ନ ଦାର ସହରଣ
ତନୟ ଦୁହେଁ ମଲେ ଯେ ଅପୁତ୍ରି ହୋଇଣ ।
ସୋମବଂଶ ନାଶଯିବା ଦେଖି ସତ୍ୟବତୀ
ବ୍ୟାସକୁ ବୋଇଲେ ବଂଶ ରକ୍ଷାକର ଯତି ।
ଅମ୍ବା ଅମ୍ବାଳିକା ଚନ୍ଦ୍ର ବଚନ ଭୟା
ସତ୍ୟବତୀ ବୋଲେ ଯାଇ ପୀରତି ବଢ଼ା ଯା
ବ୍ୟାସ ବୋଇଲେ ମାତା ତୁ ନିନ୍ଦାକଥା କହୁ
କନିଷ୍ଠ ଭାଇ ଭାର୍ଯ୍ୟା ମୋର ଝିଅବୋହୂ ।
ଗୁରୁ ହୋଇ ଶିଷ୍ୟପତ୍ନୀ ହରିବି କେମନ୍ତେ
ଗୁରୁ ପରଂଗୁରୁ ମୁହିଁ ଅଟଇ ଯୁକତେ ।
ମାତାବୋଲେ ତୋ ଔରସୁ ଯେ ପୁତ୍ର ହୋଇବ
ଏହି ବଂଶ ରଖିବାକୁ ସମର୍ଥ ସେ ହେବ ।
ଝିଅବୋହୂକୁ ହରିଲେ ବ୍ୟାସ ମୁନିବର
ତହିଁ ଅନ୍ଧ ପାଣ୍ଡୁ ପୁଣି ହୋଇଲେ ବିଦୁର ।

ହେ ଦୁର୍ଯ୍ୟୋଧନ ବହୁତ ହୋଇଅଛୁ ପୂର୍ବେ
ଅକାରଣ କଥା କହି ଗର୍ବେ ବାହୁ ଏବେ ।
ପରମା ସାଧ୍ୱୀ ସିନା ଅଟଇ ଯେ କୁନ୍ତୀ
ଦିଗପାଳ ପୁତ୍ର ସେହି କରିଛୁ ଉତ୍ପତ୍ତି ।
ପୁତ୍ର ଜାତ କଲା ସେହି ଦେବ ସେବାକରି
ସମ୍ମୁଖେ ଭେଟିଲେ ଭୋଜରାଜାର କୁମାରୀ ।
ଅନାଦି ଅପର୍ଣ୍ଣା ସେହି ଅଟେ ମହାଦେବୀ
ତାକୁ ନିନ୍ଦାକରୁ ମୁହିଁ କାହାକୁ କହିବି ।
ତୋ ଅଜା ଅଟେ ଗାନ୍ଧାରସେନ ନରପତି
ଜ୍ୟେଷ୍ଠ ଅମାବାସ୍ୟା ଦିନ ଗାନ୍ଧାରୀ ଉତ୍ପତ୍ତି ।
କୃତ୍ତିକା ବୃଷରାଶି ତା ସେ ବ୍ରହ୍ମଅଂଶୀ
ଆବର ଉଆଁସୀ କନ୍ୟା ଅତି ଅନାଗୃଷୀ ।
ନିକଟେ ରାଜାଏ ବିଭା ନ ହୋଇଲେ ଡରେ
ବାଇଶି ବରଷ ଥିଲା ପିତାଙ୍କର ଘରେ
ନିକଟେ ରାଜାଏ ବିଭା ନ ହୁଅନ୍ତେ ତାରେ
ଗାନ୍ଧାରସେନ ବରିଲା ବହୁତ ଦୂରରେ ।
ମାଳା ଦେଇକରି ଯେଉଁ ରାଜାକୁ ବରିଲେ
ଗାନ୍ଧାରୀ ବରଣ କରୁ ବାଇଶଟି ମଲେ ।
ଏମନ୍ତେ ବିବାହ ତାକୁ ନ ହୁଅନ୍ତେ ଡରେ
ଏଥିପାଇଁ ବହୁକାଳ ରହେ ପିତାଘରେ ।
ପିତୃଗୃହେ ଅବିବାହୀ କନ୍ୟା ରଜ ହେଲେ
ସ୍ୱର୍ଗ ସଭାରେ ତା ପିତା ନ ବସଇ ଭଲେ ।
ପ୍ରଥମରେ ବ୍ୟାସମୁନି ଏ ଭିଆଣ କଲେ
ଗୋଲକ ବୃଷକୁ ବର ବିଭା କରାଇଲେ ।
ଗାନ୍ଧାରୀ ସାହାଡ଼ାବୃକ୍ଷ ବରିବାର କାଳେ
ସେ ବୃକ୍ଷହିଁ ନାଶଗଲା ହାତଗଣ୍ଠି ବେଳେ ।
ଜାଣି ଶୁଣି ବିଭା ତାକୁ ନ ହୋଇଲେ କେହି
ପିତାଘରେ ପଞ୍ଚାଶୋଇ ବର୍ଷ ଥିଲା ରହି ।
ଆହେ ଦୁର୍ଯ୍ୟୋଧନ ଶୁଣ ତୋ ପିତାର କଥା
ସଭାଜନ ଶୁଣ ସର୍ବେ ତହିଁର ବାରତା ।
କାର୍ତ୍ତିକ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ରାତି
ରବିଙ୍କବାର କୃତ୍ତିକା ନକ୍ଷତ୍ର ପାହାନ୍ତି ।
ବିଷ୍ଟି ନାମରେ କରଣ ଗଣ୍ଡ ନାମେ ଯୋଗ
ଲଗ୍ନକୁ ଚତୁର୍ଥ ଘରେ ଶନୈଶ୍ଚର ଭୋଗ ।
ସେହି ଦିନରେ ଜନମ ଧୃତରାଷ୍ଟ୍ର ହେଲେ
ଗଣନାରେ ସେହି ଜାତି ଅନ୍ଧର ହୋଇଲେ ।
ନ ହେଲେ ତାହାଙ୍କୁ କେହି କନିଆଁ ଦିଅନ୍ତା
ନାମ ଧରିବାରୁ ମଲେ ଶତେକ ବନିତା ।
ଏହି ବ୍ୟାସ ଆଇ ଏକ ଉପାୟ ଦିହଲେ
ଗାନ୍ଧାରୀଙ୍କ ତୋର ପିତା ସଂଯୋଗ କରିଲେ
ଯୁକତରେ ଧୃତରାଷ୍ଟ୍ର ବିବାହି ନୁହଇ
ପ୍ରକୃତରେ ଗାନ୍ଧାରୀ ଯେ ବିଧବା ଅଟଇ ।
ଯେଣୁ ସେ ଗୋଲକବୃଷ ବିଭା ହେଉଁ ମଲା
ତେଣୁ ତ ସେହି ଗାନ୍ଧାରୀ ବିଧବା ହୋଇଲା ।
ତୁମ୍ଭଙ୍କୁ ଜାତ କଲା ସେ ଯେମନ୍ତ ନ ଜାଣୁ
ଆପଣା କଳଙ୍କ ଥାଉଁ ପରକୁ ବଖାଣୁ ।
ଅସାର୍ଥକ ବଚନ ଯେ ତୋର କୁରୁରାଜ
ମୋ ବିଗୃରେ ପାଣ୍ଡବଙ୍କୁ ଯୋଗାଏ ଏ ରାଜ୍ୟ
ସଭା ମଧ୍ୟରେ କେଶବ କହୁଁ ଏହି ବାଣୀ
ଦୁର୍ଯ୍ୟୋଧନ କୋପ କଲା କୁଳନିନ୍ଦା ଶୁଣି ।
କୋପେ ପ୍ରଜ୍ୱଳିତ ହୋଇ ମାନଚକ୍ରବର୍ତ୍ତୀ
ବୋଲେ ଏହି ମଧ୍ୟପଣ ତୋହର ଶ୍ରୀପତି ।
ଏ ସଭା ମଧ୍ୟରେ ତୁହି ଯେତେ କଥା କହୁ
ଶରୀରରେ ପ୍ରାଣଥିଲେ ସହିବ ବା କେହୁ ।
ଯଦ୍ୟପି ତୁ ଦିଗପାଳ ଅଟୁ ଜଗନ୍ନାଥ
ନନ୍ଦ ଗଉଡ଼ ଅଟଇ ତୋହର ତ ତାତ ।
ଗୋପାଳଙ୍କ ମେଳରେ ତୁ ଥିଲୁ ବାଳକାଳୁ
ଲାଜ ସଂକୋଚ କଥାକୁ ମନରେ ନ ଘେନୁ ।
କହୁ କହୁ କର୍ଣ୍ଣ ଉଠେ ସେ ମଧୁପିଙ୍ଗଳ
କୁରୁବଂଶକୁ ଅଟଇ ସେହି କ୍ଷୟକାଳ ।
କାଳଚକ୍ର ପରାୟେକ ବୁଲାଇଲା ଆଖି
ଜଗନ୍ନାଥ ଠାକୁରଙ୍କୁ ଶତ୍ରୁ ପ୍ରାୟ ଦେଖି ।
ବାହାସ୍ଫୋଟ ମାରି ସେହୁ ନିଶେ ହାତ ଭରି
ଅଧରରେ ଦନ୍ତ ଚାପି ଭୂଜେ ଗଦାଧରି ।
ଡାକେ ଆରେ ଦୁଃଶାସନ ଦୁର୍ଜ୍ଜୟ ଦୁର୍ବିନ୍ଧ
ମାର ଆରେ ଗଉଡ଼କୁ କୂଟକାରୀ ମନ୍ଦ ।
ରାଜାର କୋପ ବଢ଼ିଲା କୃଷ୍ଣକଥା ଶୁଣି
ଯଷ୍ଟି ପ୍ରହାରନ୍ତେ ସେହେ ଗର୍ଜ୍ଜେ କାଳଫଣି
କୋପଭରେ ଯୋଦ୍ଧାମାନେ ଅସ୍ତ୍ରାଦି ଧରିଣ
ମାର ମାର ଧର ଧର କଲେ ଉଚ୍ଚାରଣ ।
ଗଦା ମୁଦ୍‌ଗର ଘେନି ଛେଲ ଚନ୍ଦ୍ରକାନ୍ତି
ବଜୁଳି ତେଜକୁ କଳ ଆସି ଝଲକାନ୍ତି ।

ନିପଣ୍ଡ୍ର ଗଳନ୍ତ ରାଜା ଉତ୍ତବାଚ ବାକ୍ୟେ
ପଚଘ ହେନ ଧାଇଁଲେ ଦୁଷ୍ଟ ଦୁଷ୍ଟଲୋକେ ।
ଗୋବର୍ଦ୍ଧନଙ୍କର ସହିତେ ଯେତେ ରଥୀ ଥିଲେ
ଦୁଷ୍ଟଙ୍କର ମୂର୍ତ୍ତି ଦେଖି ସର୍ବେ ଘୁଞ୍ଚିଗଲେ ।
ଦୁର୍ଯ୍ୟୋଧନର ଏମନ୍ତ ଅମାନ୍ତକୁ ଦେଖି
ରକ୍ତ ଲୋମ୍ଭକୁ ଚିଣି ହରି କଲେ ଆଖି ।
କୋପକରି ଶାନ୍ତ ପୁଣି ହେଲେ ବାସୁଦେବ
ଚିନ୍ତିଲେ ମୁଁ ନ ସହିଲେ କିଏ ବା ସହିବ ।
ଏ ଦୁଷ୍ଟେ ଜାଣନ୍ତି ନାହିଁ କିଛି ହାନିଲାଭ
ଏ ଗଜମୂର୍ଖେ ଦେଖାନ୍ତି ମୋତେ ମହାଗର୍ବ ।
ଏହାଙ୍କୁ ଏକ୍ଷଣି ଶାସ୍ତି ଦେବି ମୁଁ ପାରଇ
କେବଳ ଯୁଧିଷ୍ଠିରଙ୍କ କୋପକୁ ଡରଇ ।
ବୋଲିବେ ହରି ମଧ୍ୟସ୍ଥ ପଣେ ଯୁଦ୍ଧ ଗଲୁ
ଅନିମିତ୍ତେ ମୋ ଭାଇଙ୍କୁ ଜପାଇଁ ନାଶିଲୁ ।
ଗୋପାଳ ପରମ୍ପେ ମୋତେ ମଣିଛନ୍ତି ଦୁଷ୍ଟ
ପାମରେ ଚିହ୍ନନ୍ତି ନାହିଁ ହୋଇ ଜ୍ଞାନଭ୍ରଷ୍ଟ ।
କର୍କଶ ମଧୁପିଙ୍ଗଳ ମାନଚକ୍ରବର୍ତ୍ତୀ
ହୃଦଗତରେ ଭାଳିଲେ ଦେବ ଶ୍ରୀପତି ।
ଏ ଦୁଷ୍ଟଙ୍କୁ ଡରାଇବା ଆନମୂର୍ତ୍ତି ଧରି
ମୋ ଅନନ୍ତମୂର୍ତ୍ତି ଦେଖି ଯିବେ ଅପସରି ।
ଏମନ୍ତ ବିଚାର କରି ଦେବ ଶ୍ରୀବତ୍ସ
ସଭାମଧ୍ୟେ ଦେଖୁ ଦେଖୁ ହେଲେ ମହାମତ୍ସ୍ୟ ।
ଦେଖିକରି ଆଶ୍ଚର୍ଯ୍ୟ ଯେ ହେଲେ କଉରବ
ବୋଇଲେ ଏ କଉରବ ଅଟଇ ସୁଗବ ।
ଅଦଭୁତେ ମତ୍ସ୍ୟରୂପ କାହୁଁ ପ୍ରକାଶିଛି
ବ୍ୟାଘ୍ର ମୀନ ସର୍ପ ବଧେ ଦୋଷନାହିଁ କିଛି
ଏହା କହି ଗଦା ଧରି ଦୁଃଶା ଗଲା ବେଗେ
ଆଚମ୍ବିତେ ପିଟିଲା ନେଇ ଗୋବିନ୍ଦଙ୍କ ଅଙ୍ଗେ ।
ଦୁଷ୍ଟଙ୍କ ପ୍ରକୋପ ଦେଖି ପ୍ରଭୁ ଚକ୍ରପାଣି
ଧାଡ଼କାରେ କୂର୍ମରୂପ ପ୍ରକାଶିଲେ ଆଣି ।
ତତକ୍ଷଣେ କେଶବ ଉର୍ଦ୍ଧେ ହେଲେ କୂର୍ମକାୟ
ଆକାଶେ ଥାଇ ଦେଖନ୍ତି ସର୍ବ ଦେବତାଏ ।
ପୁଣି ଦୁଃଶାସନ ପିଠେ ଗଦା ଗଳଗାଜି
ଶତଖଣ୍ଡ ହୋଇ ଉର୍ଦ୍ଧେ ଉଡ଼ିଗଲା ଗାଜି ।
ଗଦା ମୁଦ୍‌ଗର ଚେଲି ଚକ୍ର କାତି ଯଷ୍ଟି
କୁଣ୍ଠିଲେ ପ୍ରହାରନ୍ତି କୂର୍ମଙ୍କ ପିଠି ।

କୂର୍ମରୂପ ଦେଖି ରାଜା ମାନଚକ୍ରବର୍ତ୍ତୀ
ଆଜ୍ଞା କରିଲା ସକଳ ଯୋଦ୍ଧାଙ୍କର ପ୍ରତି ।
ମାରିବୋଲି ସମସ୍ତଙ୍କୁ ଦେଲା ଆଜ୍ଞାଦାନ
ଦୁଷ୍ଟଯୋଦ୍ଧା ଦଉଡ଼ିଲେ ଶୁଣିଣ ବଚନ ।
କୂର୍ମ ପିଠିରେ ପିଟିଲେ ଅସ୍ତ୍ର ଗଳଗାଜି
ଖଣ୍ଡ ଖଣ୍ଡ ହୋଇ ଅସ୍ତ୍ରସବୁ ଗଲା ଭାଜି ।
ଦୁର୍ଯ୍ୟୋଧନ ବୋଲେ ଦେଖ ଗଉଡ଼ ଚରିତ
ଅସ୍ତ୍ରଭୟେ କୂର୍ମରୂପ ପ୍ରକାଶିଲା ଗାନ୍ଧ ।
ହୃଦୟରେ ଚିନ୍ତିଲେ ଦେବ ଶ୍ରୀବତ୍ସ
ଅଜ୍ଞାନ କୌରବମାନେ ନ ଜାଣିଲେ କିଛି ।
ତେଣୁ କୁରୁମ ରୂପକୁ ତେଜି ଜଗନ୍ନାଥ
ଦେଖୁ ଦେଖୁ ତତକ୍ଷଣେ ହୋଇଲେ ବରାହ
ଅତି ବିସ୍ତାର ହୋଇଲା ବରାହଙ୍କ କାୟେ
ବୋଇଲେ ଦେଖ ହୋ ବଡ଼ ଶୂକର ଗୋଟିଏ
ଦେଖିଣ ସମସ୍ତେ ଯହୁଁ କଲେ ଉପହାସ
ବାମନ ରୂପକୁ ତହୁଁ କଲେ ପରକାଶ ।
ଅତି ସାମାନ୍ୟ ଅଟଇ ବାମନ ରୂପଟି
ସର୍ବେ ହସିଲେ ନାସାରେ ଦେଇଣ ଅଙ୍ଗୁଷ୍ଠି
ମୁଣ୍ଡୁ ଉପରେ ବାମନ ରୂପ ଅଛି ଧରି
ଏହା କହି କଟାଳିଲେ ଦୁଷ୍ଟେ କୋପକରି ।
ବିସ୍ମରନ୍ତି କେଶବ ଏ ଅତି ମୂର୍ଖମେଳା
ଦେଖି ନ ଚିହ୍ନନ୍ତି ଏହୁ ମୋର କୌଟିକଳା ।
ଦୁଷ୍ଟଜନ ବ୍ୟବହାର ଦେଖି ନାରାୟଣ
ବିଶ୍ୱରୂପୀ ନରସିଂହ ହୋଇଲେ ଆପଣ ।
ମହାପ୍ରଭୁଙ୍କର ତହୁଁ ବିଶ୍ୱରୂପ ଦେଖି
କୌରବେ ପଳାଇ ଗଲେ ସମର ଉପେକ୍ଷି
କାଳଚକ୍ର ପରାୟେକ ବୁଲେ ବେକଡୋଳ
ଅଗ୍ନିପ୍ରାୟ ତେଜ ପଳାଏ କ୍ରୂର ମହୀପାଳ ।
ଯେ ଯାହା ମନ୍ଦିରେ ଯାଇ ଲୁଚିଲେ ଝଟତି
ରହି ନ ପାରିଲେ ଦେଖି ନରସିଂହ ମୂର୍ତ୍ତି ।
ଆଦିତ୍ୟ ଅସ୍ତ ହୋଇଲେ ମେରୁର ପଶ୍ଚିମ
ଶାନ୍ତିରୂପ ପ୍ରକାଶିଲେ ଶ୍ରୀପୁରୁଷୋତ୍ତମ ।
ବିଜୟ କରିଲେ ତହୁଁ ବିଦୁର ମନ୍ଦିରେ
ଋଷିମାନେ ପ୍ରବେଶିଲେ ଆସି ସନ୍ନିଧିରେ ।
ବ୍ୟାସ ବୋଇଲେ ଶୁଣିବା ହେଉ ଶ୍ରୀପତି
ରୂପ ଦେଖି ପଳାଇଲେ କରି ମହାଭୀତି ।

ସାଧୁ ସାଧୁ ରେ କୌରବ ତୁମ୍ଭର ଜୀବନ
କେତେ ବାଟେ ମଣାଇଲ ତୁମ୍ଭେ ଭଗବାନ ।
ଯେବଣ ଅବତାରକୁ ଶାସ୍ତ୍ରେ ଶୁଣିଥିଲେ
ସେ ରୂପ ଦେଖି ପରମଗତି ସେ ପାଇଲେ ।
ଯେବଣ ଅବତାରକୁ ସ୍ତୁତି କରେ ବ୍ରହ୍ମା
ସେହି ରୂପକୁ ଦେଖିଲେ କୌରବ ମହାତ୍ମା ।
ଜନ୍ମ ହୋଇଲେ ମରଣ ହୁଅଇ ଅବଶ୍ୟ
କ୍ଷତ୍ରତାପଣେ ଅର୍ଜିଲ ତୁମ୍ଭେ ସ୍ୱର୍ଗବାସ
ସହସ୍ର ଜନ୍ମ ତପରେ ନ ଦେଖନ୍ତି ଯାହା
ଅଭକ୍ତିରେ କଉରବ ପ୍ରାପ୍ତହେଲେ ତାହା ।
ଅଥବା ମୃତ୍ୟୁ ତୁମ୍ଭଙ୍କୁ ପ୍ରାପ୍ତହେଉ କନା
ଅନନ୍ତ ରୂପ ଦେଖିଲେ ପ୍ରଭୁ ଜଗନ୍ନିଶା ।
ଅନୁଗ୍ରହ ନାଥ ଦୟାକଲେ ଦ୍ୟନ୍ତ ଗତି
ଦର୍ଶନେ ଗତି ଲଭିଲେ ପ୍ରସନ୍ନେ ମୁକତି ।
ଅନନ୍ତ ନାଥ ଅଗତିଜନେ ଗତିଦ୍ୟନ୍ତା
ତୁ ପରମ ଗତିଦାତା ନିୟନ୍ତା ବହନ୍ତା ।
ଜଳ ସ୍ଥଳ ଅନଳ ଯେ ବାୟୁବ୍ୟ ଆକାଶ
ଚରାଚର ସବୁଠାରେ ଅଛେ ତୋର ବାସ ।
ଦେଖିବାକୁ ଅଗୋଚର ଯେଉଁ ଦେବସ୍ୱାମୀ
ସକଳ ସମ୍ପଦ ନାଥ ତୁହି ଅନ୍ତର୍ଯାମୀ
ନ ସାଧିଲି ଯୋଗମନ୍ତ୍ର ନ ଗମିଲି ତୀର୍ଥ
ନ ପାଇଲି ଗୁରୁଦୀକ୍ଷା ନ ପଢ଼ିଲି ଗ୍ରନ୍ଥ ।
ପଦ୍ମଲୋଚନ ଅଭୟ ଦେବ ନରାକୂଳ
ନ ଦେଖିଲି ଦେବତା ମୋ କର୍ମର ଅବଳ ।
ପାଇଲି ପରମ ଗତି ନୃସିଂହ ସ୍ମରନ୍ତେ
ଅଥବା ମୂର୍ତ୍ତି ଏ ରୂପ ପ୍ରାପ୍ତହେଉ ମୋତେ ।
ଯେଉଁ ଦେବ ମୀନରୂପ ନୃସିଂହ ବରେହା
ମୁହିଁ ସେ ରୂପ ପ୍ରାପତ ହୁଏ ଜଗନ୍ନାହା ।
ସାରଙ୍ଗର ବଲ୍ଲଭ ତୁ ଅଟୁ ବାସୁଦେବ
ଜନ୍ମେ ଜନ୍ମେ ହୃଦଗତେ ରହ ପଦ୍ମନାଭ ।
ସର୍ବମଙ୍ଗଳ ନାଥ ତୁ ସର୍ବଜନ ଚିନ୍ତା
ଆପଦେ ବିପଦେ ସ୍ୱାମୀ ହେବୁ ଉଦ୍ଧାରନ୍ତା ।
ଶ୍ରୀପୁରୁଷୋତ୍ତମଙ୍କର ପାଦେ ସେବା ଆଶ
କହେ କବି ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

---

## କୌରବ ସଭାକୁ ଶ୍ରୀକୃଷ୍ଣଙ୍କର ତୃତୀୟଥର ଗମନ ଓ ଅପମାନ ଏବଂ ମହାଲକ୍ଷ୍ମୀଙ୍କ ସହେ ଦ୍ୱାରକା ଗମନ

ବିଲଙ୍କା ରାଜା ପୁଚ୍ଛିଲେ ଶୁଣ ହେ ଅଗସ୍ତି
ସଭାରେ ଯାହା କରିଲେ ଦେବ ଶିରୀପତି ।
ଦେବଗଣଙ୍କୁ ଦୁର୍ଲ୍ଲଭ ନର କେଉଁ ସ୍ଥିର
ଧର୍ମରୁ ପ୍ରାଣ ପାଇଲେ କୌରବ ପାମର ।
ତଦପରେ ଯେଉଁ କଥା କଲେ ନାରାୟଣ
ସେହିକଥା କହ ମୋତେ କରିବି ଶ୍ରବଣ ।
କହନ୍ତି ଅଗସ୍ତି ମୁନି କୁମ୍ଭଋଷି ସୁତ
ମନ ନିବେଶି ଶ୍ରବଣ କର ଏ ଚରିତ ।
ସ୍ନାନ ଦେବାର୍ଚ୍ଚନ ସାରି ରାଜା ଦୁର୍ଯ୍ୟୋଧନ
ଭୋଜନାନ୍ତେ ମିଳି ପୁଣି ସଭାର ଆସ୍ଥାନ ।
ଭୀଷ୍ମ ଭୂରିଶ୍ରବା ଦ୍ରୋଣ କର୍ଣ୍ଣ ସୋମଦତ୍ତ
ରାଜାର ସମୀପେ ଯାଇ ମିଳିଲେ ତ୍ୱରିତ ।
ରାଜାର ଅଗ୍ରତେ ଯାଇ କହନ୍ତି ସେ ବାଣୀ
ବଡ଼ ନିସ୍ତୁରତା କଲେ ଦେବ ଚକ୍ରପାଣି ।
ମଧ୍ୟସ୍ଥପଣ ସ୍ୱାଙ୍କର ବୋଲିବା କେମନ୍ତେ
ନିଜେ ପାଣ୍ଡବ ପରାୟେ ବଇରୀରୂପେ ଚିତ୍ତେ ।
ଯେତେକକାଳ ପାଣ୍ଡବେ ଆମ୍ଭର ସେ ଥିଲେ
ବନସ୍ତେ ବୁଲି ଯୁଧିଷ୍ଠି ସମସ୍ତ ସହିଲେ ।
ଖିଲ ଖରଙ୍କର ଯତ୍ନ ନ ଚଳିଲା ବୋଲି
ଅତି କଷ୍ଟେ ଦୂତ କଲେ ନନ୍ଦର ଦୁଲାଳ ।
ଦୂତପଣେ ଯା କହିଲେ ଦେବ ନାରାୟଣ
ପାଣ୍ଡବଙ୍କଠାରୁ ହେଲେ ସହସ୍ରେକ ଗୁଣ ।
ସଭାରେ କହିଲେ ଯେତେ କଥା ଜଗନ୍ନାଥ
ପାଣ୍ଡବେ କହନ୍ତେ ନାହିଁ ଏହା କଦାଚିତ ।
ପୁଣ ଚରିତ ଦେଖିଲୁ ଦେବ ଭୟଙ୍କର
ଏକା ଶରୀରରୁ ହେଲେ ପାଞ୍ଚୋଟି ଆକାର
ଯେଉଁରୂପ ପ୍ରକାଶିଲେ ହରି ଏଥେ ତମେ
ପ୍ରାଣ ରହିଲା କେବଳ ପୂର୍ବ ପୁଣ୍ୟ କର୍ମେ ।
ଏହା ବିଚାର ନ କରୁ କପଟ କୁରୁବର
ବେନପଣ୍ଡା ଦେଇ ଭକ୍ତି କରିବାକ ପୁଣ ।
ସବୁ ଅବତାରେ ଲକ୍ଷ୍ମୀ ଯାହାର ଭାରିଯା
କୃଷ୍ଣଙ୍କ ବିନାତୋତେନଷ୍ଟେ କରିବେ ସେ ତେଜ୍ୟା

ଲକ୍ଷ୍ମୀର ଅଭାବେ ତୋର ସରିବ ସମ୍ପଦ
ବିପଦ ଉପୁଜି ହେବ ବହୁତ ପ୍ରମାଦ ।
ଲକ୍ଷେ ରାଜାର ତୁ ଅଟୁ ମଣ୍ଡଳର ମଣି
କୋଟିପାଦେ ଅନୁବ୍ରତେ ବିଜେ କମଳିନୀ ।
ତୁ ଅତ୍ୟନ୍ତ ବିଚକ୍ଷଣ ଲକ୍ଷ୍ମୀର ପ୍ରସାଦେ
କୁସ୍ୱଭାବେ ଲକ୍ଷ୍ମୀ ତୋତେ ଛାଡ଼ିଯିବେ ହାଦେ
ଲୋଭ ମୋହ ଅହଙ୍କାର କେବଳ ଗଞ୍ଜନ
କୁସ୍ୱ ଅଭାବେ ମନୁଷ୍ୟ ନୁହଇ ଗଣନ ।
ସର୍ବଦା ଦାତବ୍ୟ ଥିବ ନୋହିବ କୃପଣ
ଦୁଃଖୀଙ୍କୁ ଦୟା କରିବ ମନେ ଅନୁକ୍ଷଣ ।
ପରର ପ୍ରତି ନିର୍ଦ୍ଦୟ କଦାଚ ନୋହିବ
ଜଗତଜନବତ୍ସଳ ସର୍ବଦା ହୋଇବ ।
ରୋଗୀଜନ ପାଇଁ ଚିନ୍ତା କରିବ ଔଷଧ
ମୂର୍ଖ ଜନଙ୍କୁ ସତତ ଶିଖାଇବ ବୁଦ୍ଧି ।
ଦରିଦ୍ର ଦୀନ କଷ୍ଟିଙ୍କୁ କରିଥିବ ଦୟା
ଗୁରୁଜନେ ଭକ୍ତି ମିଥ୍ୟେ ନ କରିବ ମାୟା ।
କଳହେ ମଧ୍ୟସ୍ଥ ନୋହି ସବେ ହେବ ବଶ
ନାରୀଙ୍କୁ କଦାଚ ମନେ ନ କର ବିଶ୍ୱାସ ।
ଅସୁର ଭୋଗ ଭୂମିରେ ନ କର ଆଶ୍ରମ
ଗୋଦାଣ୍ଡକୁ ରକ୍ଷ କଲେ ସରେ ସର୍ବ ଧର୍ମ ।
ଗୁରୁ ଦ୍ୱିଜେ ଅବିଶ୍ୱାସୀ ନ ହୁଅଇ ଯେହୁ
ସଭାରେ ଯେ ସତ୍ୟ କହେ ଧର୍ମୀଲୋକ ସେହୁ ।
ଏତେ କର୍ମ ଯେ ମହାତ୍ମା ପାରିବଟି ସାଧି
ଇହ ପରଲୋକେ ତାର ନ ଥାଏ କେ ବାଧି
ଲକ୍ଷ୍ମୀ ସର୍ବଦା ତାହାର ହୋଇଥାନ୍ତି ବଶ
ଜୀବନ୍ତେ ବିପୁଳ ଭୋଗ ମଲେ ସ୍ୱର୍ଗବାସ ।
ବାବୁ କୃଷ୍ଣେ ଭକ୍ତି କର ସୋଦର ପୀରତ
ଦୁଇକୁଳ ରକ୍ଷା ହେଉ ରହୁ ତୋ ଭାରତ ।
ଭୀଷ୍ମଙ୍କ ବଚନ ଶୁଣି ରାଜା ଧାର୍ତ୍ତରାଷ୍ଟ୍ରି
ସମସ୍ୟା ନ ଦେଇ ତହୁଁ ରାଗେ ଗଲେ ଉଠି
ବିଜୟ ମାନଗୋବିନ୍ଦ ଅବକାଶ ପୁରେ
ଧୃତରାଷ୍ଟ୍ର ଗାନ୍ଧାରୀ ଯେ ମିଳିଲେ ସେଠାରେ
ରାଜାଙ୍କର ଅନ୍ତରରେ ଜଣାଏ ସଞ୍ଜୟ
ଅସ୍ଥାନେ ଅଛଲେ ତୁମ୍ଭ ପିତା ମାତା ଦ୍ୱୟ ।
ଅମ୍ବିକା ନନ୍ଦନ ପୁଚ୍ଛା କରଇ ସମୀରେ
ଜଗନ୍ନାଥଙ୍କୁ ତୁ କୋପ କରୁ କି ହେତୁରେ ।

ଦୁର୍ଯ୍ୟୋଧନ ବୋଲେ ହରି ମଧ୍ୟପାନେ ଆସି
ବହୁ ରାଜା ନିମନ୍ତ ମୋତେ ଝିଙ୍ଗାସିଲେ ବସି ।
ସହି ନ ପାରିଲି ମୁହିଁ ତାହାଙ୍କର ବାଣୀ
ରାଗେ ବୋଇଲି ଏହାକୁ ପକାଅରେ ହାଣି ।
ନଟକାର ବହୁରୂପ ଯେସନେ ପରକାଶି
ସେହିରୂପେ ନାନାରୂପ ହେଲା ଶିଖିବହି ।
ମତ୍ସ୍ୟ କୂର୍ମ ବରାହ ନୃସିଂହ ବାମନ
ଅନେକ ମାୟା ରୂପେ ଧରେ ଭଗବାନ ।
ମୋ ତାତ ମଧ୍ୟପାନ କି କରେ ଏହି କଥା
ପାଣ୍ଡବେ ପ୍ରୀତି ଅଉ କି ହୋଇବ ସର୍ବଥା ।
ଧୃତରାଷ୍ଟ୍ର ବୋଲେ ବାବୁ ନ ବୁଝିଲୁ ତାହା
ପାଣ୍ଡବ ସିନା ଅଟନ୍ତି ଜଗତର ନାହା ।
ବାବୁ ହରି ଅର୍ଜୁନ ଯେ ଅଭେଦ ଆତ୍ମାଏ
ପାଣ୍ଡବେ ଅପ୍ରୀତି ତୁହି ନ ହୁଅ କେବେହେଁ
କଠୋର ବାକ୍ୟ କହିଲ ସହୁଁ ଧୃତରାଷ୍ଟ୍ର
କୋପେ ଦୁର୍ଯ୍ୟୋଧନ କଲା ଅଧରକୁ ପୁଷ୍ଟ ।
ରାଗେ ରକତ କୁମୁଦ ପ୍ରାୟେ କଲା ଦୃଷ୍ଟି
ପୁଣିହିଁ ସେହି ସ୍ଥାନରୁ ବେଗେ ଗଲା ଉଠି ।
ରାଜ ସାତଘଡ଼ି ବେଳ ମନୋହର ପରେ
ନଅବକାଶରେ ବିଜେ ଦ୍ରବ୍ୟ ଅବତାରେ ।
ଶ୍ରୀକରରେ ଅର୍ଘ୍ୟ ଘେନ ରାଣୀ ଭାନୁମତୀ
ବିଜେକଲା ମାହେଶ୍ୱରୀ ଦୁର୍ଯ୍ୟୋଧନ କତି ।
ଅର୍ଘ୍ୟ ବନ୍ଦାନ୍ତେ ଭୂମନ୍ୟୁ ରାଜାର ଦୁଲଳୀ
ଶ୍ରୀ ହସ୍ତୁ ଖସିପଡ଼ିଲା ତାର ଅର୍ଘ୍ୟସ୍ଥାଳୀ
ଦେଖି କୋପଭର ହେଲା ମାନଚକ୍ରବର୍ତ୍ତୀ
ବୋଇଲା କମର୍ଥେ ତୋର ବିଚଳିତ ମତି ।
ଦୂରରୁ ସେ ମାହେଶ୍ୱରୀ ହୋଇ ପରଣାମି
ବୋଇଲା ଅରିଷ୍ଟ ଆସି ପଡ଼ିଲାକ ସ୍ୱାମି ।
ସ୍ୱାମି ରଣକାଳେ ଯେବେ ହୁଏ ଗୁଣଛେଦ
ଝମକାଳେ ଖଣ୍ଡା ଯେବେ ହୁଅଇ ବିରୋଧ ।
ଅନୁକୂଳେ ହସ୍ତୁ ଖସେ ଝଞ୍ଜର ଗୋଟାଳି
ଅଦଭୁତେ ହସ୍ତୁ ପଡ଼େ ଯେବେ ଅର୍ଘ୍ୟସ୍ଥାଳୀ
ଭୋଜନକାଳେ ଖସଇ ଯେବେ ଆଗ ଗୁଣ୍ଡା
ସମରକାଳେ ହସ୍ତରୁ ପଡ଼ିଯାଏ ଖଣ୍ଡା ।
ମଙ୍ଗଳକାଳେ ଶିରରୁ ମୁକୁଟ ପଡ଼ଇ
ବନ୍ଦାପନାକାଳେ ଥାଳୀ ହସ୍ତରୁ ଝଡ଼ଇ ।

ଅଦଭୁତରେ ଗର୍ଜ୍ଜନ ଶୁଭଇ ନିର୍ଘାତ
ଅଦଭୁତରେ ବୃକ୍ଷରୁ ବହିଲେ ଶୋଣିତ ।
ଅଦ୍ଭୁତରେ ନୟନରୁ ବହେ ଅଶ୍ରୁଜଳ
ଅଦଭୁତରେ ଝଡ଼ାର ଯେବେ ଖଣ୍ଡଶୈଳ ।
ଏତେ ଅବଗୁଣ ହୋଇଲେ ଶୁଣ କୁରୁସାଇଁ
ତେବେ ଅଦଭୁତ ଘଣେ ନୃପତି ମରଇ ।
ରାଜାର ପାଶେ ଜଣାଏ ଭାନୁମତୀ ରାଣୀ
ଏତେ ଏତେ ଉତପାତେ ନାଶଯାନ୍ତି ପ୍ରାଣୀ ।
ସ୍ୱାମି ଏବେ ଅଶୁଭରେ ହୁଏ ଏତେ କଥା
ପଣ୍ଡିତମାନେ ଜାଣନ୍ତି ଏଥିର ବ୍ୟବସ୍ଥା ।
ଜଗନ୍ନାଥଙ୍କୁ ଭକତି କଲେ ଏକମନେ
ଉତପାତ କ୍ଷୟ ଯାଏ ତାହାଙ୍କର ଧ୍ୟାନେ ।
ଅପ୍ରୀତି ଅଭକ୍ତି କଲ ଦେବ ନାରାୟଣେ
ସ୍ୱାମି ତେଣୁ ଉତପାତ ହେଉଅଛି ଏଣେ ।
ଏତେ ଅସଙ୍ଗତେ ଅବା ବର୍ତ୍ତିବ ସେ ଜନ
କୋଡ଼ିଏ ବର୍ଷ ମଧ୍ୟରେ ହେବ ସେ ନିଧନ ।
ଏବେ ଯେବେ ଏ ବଂଶକୁ ରଖିବାକୁ ଇଚ୍ଛା
ଭକ୍ତିଭାବେ ନାରାୟଣ ମନେ କର ବାଞ୍ଛା ।
ଭକତ ବତ୍ସଳନାଥ ଦୟା ପ୍ରକାଶିବେ
ବଂଶ ରହିଯିବ ପୁଣି ସର୍ବେ ସୁସ୍ଥ ହେବେ ।
ନାରାୟଣ ଅଭକତ ହିରଣ୍ୟାକ୍ଷ ହେଲ
ନରସିଂହ ରୂପେ ହରି ତାକୁ ସଂହାରିଲ ।
ନାରାୟଣେ ଭକ୍ତିକଲା ପ୍ରହଲଦ ବୀର
ଲଭିଲା ଅକ୍ଷୟ ପଦ ହୋଇଲା ଅମର ।
ସ୍ୱାମି ଅଭକ୍ତି କରିଲା ଲଙ୍କାର ରାବଣ
ସବଂଶେ ମାଇଲେ ତାକୁ ଦେବ ନାରାୟଣ ।
ନାରାୟଣଙ୍କୁ ଭକତି କଲା ବିଭୀଷଣ
ଲଙ୍କା ଭୋଗକରି ରହେ ଅମର ହୋଇଣ ।
ନାରାୟଣଙ୍କୁ ଅଭକ୍ତି କଲା ରଯେ କଂସ
ଅଷ୍ଟମଲ୍ଲ ଭୁଲେ ନାଶଗଲା ତାର ବଂଶ ।
ନାରାୟଣଙ୍କୁ ଭକତି କରିଲା ଅକ୍ରୂର
ସକୁଟୁମ୍ବ ଘେନିଯାଇ ବସେ ସ୍ୱର୍ଗପୁର ।
ସ୍ୱାମି କୃଷ୍ଣ ଅଭକତ ହେଲା ଶିଶୁପାଳ
ଚକ୍ରରେ ଛେଦିଲେ ତାକୁ ମଦନ ଗୋପାଳ ।
କେତେ ପଟାନ୍ତର ମୁହିଁ ଦେବି ଆହେ ଈଶ
ଉପେକ୍ଷା କରିବ ଏବେ ମୋ କହିବା ଦୋଷ ।

ସ୍ୱାମି କୃଷ୍ଣ ଭକତରେ ବର୍ତ୍ତନ୍ତି ପାଣ୍ଡବେ
ଏକଛତ୍ରେ ପୃଥ୍ୱୀ ଭୋଗି ଶେଷେ ସ୍ୱର୍ଗ ଯିବେ
ନାରାୟଣ ଅଭକତି କରୁଅଛ ତୁମ୍ଭେ
ବଂଶ ବିନାଶି ମରିବ ସର୍ବେ ଏକଠାବେ ।
ଭାନୁମତୀର ମୁଖରୁ ଏ ବଚନ ଶୁଣି
ଆସନୁ ଉଠିଲା ରାଜା କୋପେ ଶିରଧୁଣି ।
ବୋଇଲା ଗୋ ଭାନୁମତୀ ଝିଙ୍ଗାସି ତୁ କହୁ
କ୍ଷତ୍ରିକୁଳେ ଜନମି କେବେଳେ ଏହା ସହୁ
ଶତ୍ରୁକୁ ପ୍ରଶଂସା କରି କହିଲୁ ତୋ ତୁଣ୍ଡ
ସ୍ତ୍ରୀଲିଙ୍ଗ ହୋଇ ନ ଥିଲେ କାଟନ୍ତି ତୋ ମୁଣ୍ଡ
ଭାନୁମତୀ ବୋଲେ ସ୍ୱାମି ଏମନ୍ତ ମୋ କର୍ମ
ବଂଶ ନାଶିବ ସକଳ ଶେଷ ହେବ ଧର୍ମ ।
ସଭାରେ କହିଲ ତାଙ୍କୁ ବହୁତ ଅମିତ
ଉତ୍ପାତ ପୁରୁଷ ଆଜ ଆସିଥିଲା ରାତି ।
ମୁହିଁ ଆଜ ନିଦ୍ରାଗତେ ଦେଖିଲି ସ୍ୱପନ
ତେତେବେଳେ ହୋଇଥିଲା ରାତ୍ର ଅର୍ଦ୍ଧମାନ ।
ତୃତୀୟ ପ୍ରହର ଆସି ହୋଇଅଛି ରାତି
ଅସ୍ଥି ଗଦାରେ ଶୋଇଛି ଉତ୍ତର ମୂରତି ।
ବାସୁଦେବ ଯେତେବେଳେ ଲଜ୍ଜା ପାଇଗଲା
କୌରବ ପାଣ୍ଡବଙ୍କର ସମର ହୋଇଲା ।
ପ୍ରଥମରେ ଭୀଷ୍ମ ଦଶଦିନ ରଣ କଲେ
ଶିଖଣ୍ଡୀକୁ ଦେଖି ଅସ୍ତ୍ର ପରିତ୍ୟାଗୀ ହେଲେ ।
ଦ୍ୱିତୀୟରେ ସେନାପତି ହେଲେ ଦ୍ରୋଣଗୁରୁ
ଭୂରିଶ୍ରବା ସୋମଦତ୍ତ ମରିଲେ ଆଗରୁ ।
ଅନେକ ଯୋଦ୍ଧା ଆମ୍ଭର ହେଲେ ବିନଶ୍ୟତି
ଧୃଷ୍ଟଦ୍ୟୁମ୍ନ ଶିରଚ୍ଛେଦ ହୋଇଲା ପାହାନ୍ତି ।
ଦ୍ରୋଣଙ୍କ ଅନ୍ତେ ମଇନ୍ଦ ମୁକୁଟ ବାନ୍ଧିଲେ
ପ୍ରଥମ ଯୁଦ୍ଧେ ବହୁତ ମହାରଥୀ ମଲେ ।
ନରସିଂହର ମୂରତି ଭୀମସେନ ଧରି
ତୁମ୍ଭ ସତାଶୋଇ ଭାଇ ପେଷେ ଯମପୁରୀ ।
ଆରକନ୍ଦନ ଭୀମର ହେଲା ମହାତେଜ
ଦ୍ରୌପଦୀ ଛଳେ ଉପାଡ଼େ ଦୁଃଶାସନ ଭୁଜ ।
ଦ୍ରୌପଦୀ କେଶ ପଖାଳେ ତାହାର ରୁଧିରେ
ମଇନ୍ଦଙ୍କ ଶିରଚ୍ଛେଦ ହେଲା ସେ ଦିନରେ ।
ଏତେକ କହିଣ ତହୁଁ ଭୂମନ୍ୟୁର ବାଳୀ
ହା ହା ଦଇବ ବୋଲିଣ ପଡ଼ିଲାକ ତଳ ।

ସୁବାସିତ ନୀର ଘେନି ରାଜା ଦୁର୍ଯ୍ୟୋଧନ
ଆପଣେ ସିଞ୍ଚିଲା ଭାନୁମତୀର ବଦନ ।
ନୀର ସିଞ୍ଚନେ ସେ ବାଳୀ ଚେତନା ଲଭିଣ
ଶୁଣିହିଁ କହିଲା ତହୁଁ ସ୍ୱପ୍ନ ବିବରଣ ।
ଆହେ ସ୍ୱାମି ଆରମ୍ଭିଲା ସମର ହୋଇଲା
ଶଲ୍ୟ ଶକୁନି ଲକ୍ଷ୍ମଣକୁମର ପଡ଼ିଲା ।
କହୁଁ କହୁଁ ନୟନରୁ ଲୋତକ ଗଳଇ
ଅଞ୍ଚଳ ଘେନିଣ ରାଣୀ ତାହାକୁ ପୋଛଇ ।
ରୁଧିର ନଦୀରେ ସ୍ୱାମି ତୁମ୍ଭେ ଲୁଚିଥିଲ
ପାଣ୍ଡବେ ଜୟ କରିଣ ଯାନ୍ତେ ବାହାରିଲ ।
ଲକ୍ଷ୍ମଣ କୁମର ପରେ ଭାର ଦେଇକରି
ସାତତାଳ ରକ୍ତନଦୀ ହୋଇଗଲ ପାରି ।
ସ୍ୱାମୀ ବ୍ୟାସ ସରୋବରରେ ଲୁଚିଲ ଯେ ଯାଇ
ଭୀମସେନ ସିଂହରଡ଼ି ନ ପାରିଲ ସହି ।
ସ୍ୱାମୀ ଗଦାଯୁଦ୍ଧ ହେଲା ଭୀମର ତୁମ୍ଭର
ଜାନୁଭଗ୍ନ ହୋଇ ତୁମ୍ଭେ ପଡ଼ିଲ ସେଠାର ।
ସୁବର୍ଣ୍ଣ ଚୂଡ଼ୀ ଭାଙ୍ଗିଲି ତୁମ୍ଭ ମସ୍ତକରେ
ଉଚ୍ଚସ୍ୱରରେ କାନ୍ଦିଲି ନାରୀଙ୍କ ମେଳରେ ।
ଯେବେ ପଞ୍ଚଗ୍ରାମ ତୁମ୍ଭେ ନ ଦେବ ହରିଙ୍କି
ତେବେ ଏ ସ୍ୱପ୍ନ ଗୋଟିକ ବ୍ୟର୍ଥ ହେବ କି ।
କାନ୍ଦି ଭାନୁମତୀ ବିଜେ କଲା ଅନ୍ତଃପୁର
ରଜନୀ ଶେଷ ହୋଇଲା ଉଦେ ଦିନକର ।
ଦୁର୍ଯ୍ୟୋଧନ ସମାର୍ଜ୍ଜିଲେ ଭାନୁମତୀ ରାଣୀ
ସ୍ୱପ୍ନକୁ ସତ ନ ମଣ ଆଗୋ ସର୍ବାଙ୍ଗୁଣି ।
ଶୁଭ ଅଶୁଭ ସ୍ୱପନ ଯେବେ ଅବା ଦେଖି
ସମସ୍ତଙ୍କୁ ଶୁଭ ବୋଲି ଆଗୋ ଶଶିମୁଖି ।
ଶୁଭ ସ୍ୱପନକୁ ଦେଖି ଅଶୁଭ ବୋଲଇଲେ
ଅବଶ୍ୟ ପ୍ରମାଦ ଆସି ପଡ଼ଇଟି ଭଲେ ।
ଭାନୁମତୀ ବୋଲେ ସ୍ୱାମି ହେଉ ସବୁ ଶୁଭ
ସମସ୍ତେ ସେବା କରିବା ଯାଇଁ ବାସୁଦେବ ।
ଦେବା ପଦ୍ମା ଦେଇ ସର୍ବେ ହେବା ଶରଣାମି
ପଡ଼ିଲା ଆପଦ ଏବେ କର ହେ ସ୍ୱାମି ।
ଏତେ କହି ରାଣୀ ତହୁଁ ଗଲା ଅନ୍ତଃପୁର
ବାହାର ଅବକାଶରେ ବିଜେ ନୃପବର ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଚଇତନ
ଭାନୁମତୀ କଥା ତଳେ ନ କଲା ରାଜନ ।

ସ୍ନାନ ଦେବାର୍ଚ୍ଚନ ସାରି ମାନଚକ୍ରବର୍ତ୍ତୀ
ଆସ୍ଥାନେ ବସିଲା ପାଶେ ଘେନି ମହାମନ୍ତ୍ରୀ ।
ଶକୁନି ବୋଇଲା ଦେବ ଶୁଣ କୁରୁରାୟ
ଚକ୍ରକୂଟର ବୁଦ୍ଧିକୁ ନ କରିବ ଭୟ ।
ନଟକାରଙ୍କର ସିନା ଏସନକ ଗତି
କ୍ଷଣ କ୍ଷଣକେ ହୁଅନ୍ତି ଆନ ଆନ ମୂର୍ତ୍ତି ।
ଅଧିକ କଣ୍ଠାଳ ଯେବେ କରେ ଜଗନ୍ନାଥ
କରିବା ସମର ସନ୍ଧି ନୁହଇ ଉଚିତ ।
ସମର କରିବା ଆମ୍ଭେ ପାଣ୍ଡବଙ୍କ ତୁଲେ
ଶ୍ରୀଲଭ କରେ କି କ୍ଷତ୍ରୀ କପଟ ହୋଇଲେ ।
କୁଳକ୍ଷୟ ମନ୍ତ୍ରୀ ଯହୁଁ କହେ କୂଟବାଣୀ
ଦୁର୍ଯ୍ୟୋଧନକୁ ରୁଚିଲା ସୁଧାପାନ ଜାଣି ।
ଋଷିଗଣଙ୍କ ସହିତ ଦେବ ଚକ୍ରପାଣି
ସମ୍ଭବେ ଆସ୍ଥାନେ ବିଜେ କଲେ ସେହିକ୍ଷଣି ।
ସମସ୍ତେହେଁ ହେଠମାଥ ନାହିଁ ସମ୍ଭାଷଣ
ଆପଣେ ଯେ ପ୍ରତିବାକ୍ୟ ଦେଲେ ନାରାୟଣ ।
ଆହେ ଦୁର୍ଯ୍ୟୋଧନ ମୋତେ ପେଷିଲେ ଯୁଧିଷ୍ଠି
ଦେବ କି ନ ଦେବ ତାକୁ ପଡ଼ା ପାଞ୍ଚଗୋଟି
ଦୁର୍ଯ୍ୟୋଧନ ବୋଲେ ହରି ଜାଣିଲୁ ଯୁକତେ
ଅନେକ ସ୍ୱରୂପ ଧରି ଡରାଇଲୁ ମୋତେ ।
ଯୁକତେ ଭଗାରି ମୋର ଅଟନ୍ତି ପାଣ୍ଡବ
ଘରେ ଆମ୍ଭ ଭାଗ ତୋତେ ଦେବୁ ବାସୁଦେବ ।
ମାଗ କେବଣ ପଡ଼ାରେ ହୋଇବୁ ତୃପତ
ଶରଧାରେ ମାଗ ଦେବ ମୋର ଯା ଶକତ ।
କୃଷ୍ଣ ବୋଇଲେ ଋଷିଏ ସାକ୍ଷ୍ୟ ମୁଁ କରୁଛୁ
ଏହା ସତ୍ୟବାକ୍ୟ ଜାଣ ଗ୍ରାମ ମୁଁ ମାଗୁଛୁ ।
ଭୀଷ୍ମ ଦ୍ରୋଣ ବାହ୍ଲିକ ଯେ କର୍ଣ୍ଣ ଭୂରିଶ୍ରବା
ରାଜା ଯୋଦ୍ଧାମାନେ ତୁମ୍ଭେ ସାକ୍ଷୀ ହୋଇଥିବା
ଆହେ ଦୁର୍ଯ୍ୟୋଧନ ଦେବୁ ମାଗୁଛୁ ମୁଁ ଗ୍ରାମ
ଯେ ମୋତେ କହିଅଛନ୍ତି ଯେଉଁ ଗ୍ରାମ ନାମ
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ଜଇନ୍ତା ବାରୁଣା
ଏହି ପଞ୍ଚଗ୍ରାମ ଦେବ ମିଶାଇ ହସ୍ତିନା ।
ଦୁର୍ଯ୍ୟୋଧନ ବୋଲେ କହ ପଡ଼ା ଆପୁତନ
ସମସ୍ତେ ଶୁଣନ୍ତୁ ଏହି ସଦସଦଜନ ।
ଶ୍ରୀକୃଷ୍ଣ ବୋଇଲେ ତେବେ ଶୁଣ ନୃପବର
ଯେଉଁ ପଡ଼ାମାନଙ୍କର ଯେତେକ ବିସ୍ତର ।

ଇନ୍ଦ୍ର ଯେତେ ଦୂରଯାଏ ବରଷା କରଇ
ଇନ୍ଦ୍ରପ୍ରସ୍ଥ ସୀମା ଜାଣ ସେତକ ଅଟଇ ।
ପବନର ଯେତେ ଦୂର ହୁଅଇ ସଞ୍ଚାର
ବାରୁଣା ଗ୍ରାମ ଅଟଇ ସେତକ ବିସ୍ତାର ।
ଯମଦଣ୍ଡ ରହିଅଛି ଯେତେ ଦୂର ଯାଏ
ଯମପ୍ରସ୍ଥ ସୀମା ସେହି ପର୍ଯ୍ୟନ୍ତ ବୋଲାଏ ।
ହସ୍ତୀ ସ୍ୱଚ୍ଛନ୍ଦରେ ଚାଲିପାରେ ଯେତେ ଦୂର
ହସ୍ତିନାର ଅଟେ ଏହି ସୀମା ନୃପବର ।
ଜନ ଆତଯାତ ଯେତେ ଦୂରକୁ ହୁଅନ୍ତି
ନିରୂପିତ ସୀମା ଅଟେ ଗ୍ରାମ ଯେ ଜୟନ୍ତୀ ।
ଏହି ପାଞ୍ଚ ଗ୍ରାମ ପାଞ୍ଚ ଭାଇଙ୍କୁ ଦେଇଣ
ନିଶ୍ଚିନ୍ତେ ରାଜତ୍ୱ କର ଆହେ କୁରୁରାଣ ।
ସଭାରେ କେଶବ ଯହୁଁ କହିଲେ ଏ ବାଣୀ
କରତାଳ ଦେଇ ହସେ ମନ୍ତ୍ରୀ ଚୂଡ଼ାମଣି ।
ଶକୁନି ବୋଇଲା ତୁମ୍ଭେ ଶୁଣ ଭୀଷ୍ମ ଦ୍ରୋଣ
ଦୁଇ ପଡ଼ା ଦେଇ ତୋଷୁଥିଲ ନାରାୟଣ ।
ଇନ୍ଦ୍ର ଅବା କେଉଁଠାରେ ନ କରଇ ବୃଷ୍ଟି
ଯମ କାଳପାଶ ଅବା ନାହିଁ କାହିଁ ଘୋଟି ।
କେବଣ ପୁରେ ପବନ ନୁହେ ଆତଯାତ
କେବଣ ରାଜ୍ୟରେ ହସ୍ତୀ ନୁହେ ଗତାଗତ ।
କାହିଁ ନରେ ନ କରନ୍ତି ଅବା ବିଚରଣ
ଏମନ୍ତ ସ୍ଥାନ ମହୀରେ କାହିଁ ଭୀଷ୍ମ ଦ୍ରୋଣ ।
ଏବେ କପାଁ କହୁନାହିଁ କଲ ମୌନବ୍ରତ
କେଉଁ ପଡ଼ା ଦେଇ ତୃପ୍ତ କରିବ ଅଚ୍ୟୁତ ।
ଶକୁନି ଚୁହିଁ ପ୍ରଶଂସା କରେ କୁରୁରାଣ
ସାଧୁ ସାଧୁ ମାତୁଳ ହେ ତୁମ୍ଭ ମନ୍ତ୍ରୀପଣ ।
ଶୂନ୍ୟ ଶବଦକୁ ଭେଦୁ ତିନି କାଳ ଜାଣୁ
ସମସ୍ତଙ୍କର ଚରିତ ତୁମ୍ଭ ପରମାଣୁ ।
ଧନ୍ୟ ଧନ୍ୟ ମାମୁଁ ତୋର ଜୀବ ଅଟେ ଧନ୍ୟ
ମୋର ମନକଥା ଜାଣି କହୁ ତୁ ବଚନ ।
ମୁଁ ଜାଣିପାରିଲି ଏବେ ତୋହର ମହିମା
ସୋମବଂଶ ରକ୍ଷିବାକୁ ପ୍ରତ୍ୟକ୍ଷ ତୁ ବ୍ରହ୍ମା ।
ଆହେ ଭୀଷ୍ମ ଦ୍ରୋଣ ତୁମ୍ଭେ କହୁଥିଲ ମୋତେ
ପଡ଼ା ଦେବନିମିତ୍ତେ ତାଙ୍କୁ ଦେବାର ନିମନ୍ତେ
ମଧୁପାତ୍ର ନୋହେ ଏହୁ ଅଟେ କାଳଦୂତ
ଯ୍ୟାକୁ ବଧକଲେ ଦୋଷ ନୋହିବ କିଞ୍ଚିତ ।

ଏହି ମଧୁପାତ୍ରମନ୍ତ୍ରୀ ଅଟଇ ତୋହର
ନନ୍ଦ ଗଉଡ଼ର ପୁଅ ତୁ ବଡ଼ ପାମର ।
ଏ ସଭାଟି ଅଟେ ମୋର ଅମର ସମାନ
ଏଥି ଉଠିବାକୁ ତୁହି ନୋହୁରେ ଭାଜନ ।
ଯାଦବ କୁଳରେ ଜନ୍ମି ଏଡ଼େ ଗର୍ବ ବହୁ
କେବଣ ସାହସେ ଏଥେ ଗର୍ବେ କଥାକହୁ ।
ଯୁକତେ ମଧୁପିଙ୍ଗଳ କଳକାଳ ମୂର୍ତ୍ତି
ସର୍ବଦା ହନ୍ତି ଯାହାର ଅଟଇ ପ୍ରକୃତ ।
ଯୁକତେ ମଧୁପିଙ୍ଗଳ ଆତ୍ମା ବଇରାଗୀ
ବୋଲେ ଆରେ ଦୁଃଶାସନ ଯ୍ୟାକୁ ମାର ବେଗି
ରାଜାର ଆଜ୍ଞା ପାଇଣ ଗଲେ ସର୍ବ ବୀରେ
ପରିଘ ତୋମର ଗଦାକୁ ଧରି କରକରେ ।
ବିକଟ ନାଦ ସହିତ ମୁଖ କରି ସୃଷ୍ଟ
ଦେହ ନେତ୍ର ରଙ୍ଗ କରି ହେଲେ ଅତି ରୁଷ୍ଟ ।
ଗଉଡ଼ଙ୍କୁ ମାର ବୋଲି ସର୍ବେ ଗଲେ ଉଠି
କେ ଗଦା ପିଟି ମେଲଉଇ କେ ଉଞ୍ଚାଏ ଯଷ୍ଟି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା କୃଷ୍ଣଙ୍କୁ ଆବୋରି
ରହ ବୋଲିଣ କୃଷ୍ଣଙ୍କୁ ନିବର୍ତ୍ତାନ୍ତି ଧରି ।
ଆରେ କାରେ ଏ ପ୍ରମାଦ ହୁଅ ଦୁଷ୍ଟମତି
ଜାଣ ନାହିଁ କି ପାମରେ ଏ ଜଗତପତି ।
ଭୀଷ୍ମଙ୍କର ବଚନକୁ ମେଣ୍ଟିଲେ ସେ ଯୋଦ୍ଧୀ
କୃଷ୍ଣଙ୍କୁ ମାରିବା ପାଇଁ ସମସ୍ତଙ୍କ ବୁଦ୍ଧି ।
ବ୍ରହ୍ମର୍ଷିମାନେ ଥିଲେ ନାରାୟଣ ଭୁଲେ
ମହାଗୋଳ ଦେଖି ଭୟେ ଦୂରେ ପଳାଇଲେ
ଦୁର୍ବାର ଗୋଳ ଦେଖିଣ ଦେବ ନାରାୟଣ
ସୁମରିଲେ କୌମୋଦକୀ ଗଦା ସୁଦର୍ଶନ ।
ଗଦାଚକ୍ର ସୁମରିଲେ ଯହୁଁ ଗୋପୀନାଥ
ଶ୍ରୀକୃଷ୍ଣଙ୍କ ହାତେ ଆସି ହେଲେ ଉପଗତ ।
କୋଟିଏ ସୂର୍ଯ୍ୟକିରଣ ଯେଉଁ ସୁଦର୍ଶନ
କୋପ କରିଣ ଧଇଲେ ତାହା ନାରାୟଣ ।
ନିଦାଘ ମୂରତି ପର୍ଶୁରାମ ତେଜ ଜାଣି
ବିଶ୍ୱରୂପ ପ୍ରକାଶିଲେ ଦେବ ଚକ୍ରପାଣି ।
କୃଷ୍ଣଙ୍କର କାଳାନଳ ତେଜମୂର୍ତ୍ତି ଦେଖି
ଡୋଇଲେକ କଉରବେ ଆସ୍ଥାନ ଉପେକ୍ଷି ।
ଭୀଷ୍ମଦେବ ବୋଇଲେ ଯେ ଭାରତର ଯୁଦ୍ଧେ
ଅର୍ଜୁନ ବଧ କରିବ ଜାଣୁ ରଣ ମଧ୍ୟେ ।

ହରି ତୋ ଚରଣେ ପଡ଼ିବା ସର୍ବେ ରଣଭୂଇଁ
ବୈକୁଣ୍ଠପୁରକୁ ଯିବା ତୋର ମୁଖ ଚାହିଁ ।
ଏହା କୃପା ସବୁ ମନେ କରିଅଛୁ ଆଶ
ଶ୍ରୀକରରେ ଚକ୍ର ଘେନି ଛେଦ ହୃଷୀକେଶ ।
ଭୀଷ୍ମ ବୋଇଲେ ହରି ହେ ଏହା ଅପରାଧେ
ଶିରଚ୍ଛେଦ ବୈକୁଣ୍ଠକୁ ଯିବା ତୋ ପ୍ରସାଦେ ।
ଏହା କହି ସର୍ବେ ଶିର ସମର୍ପିଲେ ଆଣି
ଭକତବତ୍ସଳ ନାଥ ଦୟା କଲେ ଶୁଣି ।
ବୋଇଲେ ଦୁର୍ଯ୍ୟୋଧନ ଯେ କରିଲା ଅନୀତି
ଏବେ ପାଣ୍ଡବଙ୍କ ତୁଲେ କର ଯାଇ ପ୍ରୀତି ।
ଇହଲୋକେ ପରଲୋକେ ଜଣିବ ସମସ୍ତ
ବଂଶକୁ ରଖିବ ଯେବେ ଦେଉ ପଡ଼ା ମାନ ।
ଦୁର୍ଯ୍ୟୋଧନ ବୋଲେ ତୁମ୍ଭେ ଶୁଣ ବାସୁଦେବ
ଯେବେ ପାରନ୍ତି ସଂଗ୍ରାମ କରନ୍ତୁ ପାଣ୍ଡବ ।
ମୋହର ପ୍ରତିଜ୍ଞା ଏବେ ଶୁଣ ନାରାୟଣ
ବିନାଯୁଦ୍ଧେ ନ ଦେବି ମୁଁ ଭୂମି ସୂଚ୍ୟଗ୍ରେଣ ।
ପାଣ୍ଡବ ଅଗ୍ରତେ ହରି ଏବେ କହ ଯାଇ
ପାରିଲେ କରନ୍ତୁ ରଣ ସେହି ପାଞ୍ଚଭାଇ ।
ଗୋବିନ୍ଦ ବୋଇଲେ ରାଜା ଛାଡ଼ି ଏହି ଭାତ
ଭାଇ ଭାଗ ନ ଦେଇ ତୁ ନାଶୁ ଏ ବିଭୂତ ।
ବଂଶ ନାଶିବାକୁ ତୁହି ଇଚ୍ଛୁ କୁରୁସାଇଁ
ମୋ ଦୂତପଣେ ଏ କଥା ଶୋଭା ପାଉ ନାହିଁ
ଆହେ ଭୀଷ୍ମ ଦ୍ରୋଣ ତୁମ୍ଭେ ସାକ୍ଷୀ ହୋଇଥାଅ
ନିଜ ଦୋଷେ ମରେ ମୋତେ ଦୋଷୀ ନ କରିଅ
ପାଣ୍ଡବେ ବୋଇଲେ ପାଞ୍ଚଗ୍ରାମ ଦେବାପାଇଁ
ପଡ଼ା ଗୃହ ଖଣ୍ଡି ଏବେ ଦିଅ କୁରୁସାଇଁ ।
ଦୁର୍ଯ୍ୟୋଧନ ବୋଲେ ହରି ସଂଗ୍ରାମ ନ କଲେ
ମୁହିଁ ଖଣ୍ଡେ ପଡ଼ା ଦେଇ ନ ପାରଇ ଭଲେ
ଗୋବିନ୍ଦ ବୋଇଲେ ମୋର କଥା କର ବାବୁ
ଦୁଇକୁଳ ରକ୍ଷା ହେଉ ତିନି ଖଣ୍ଡି ଦେବୁ
ଦୁର୍ଯ୍ୟୋଧନ ବୋଲେ ଯେବେ ନ କଲେ ସଂଗ୍ରାମ
କଦାଚ ମୁଁ ଦେବି ନାହିଁ ଏକଖଣ୍ଡ ଗ୍ରାମ
ଶ୍ରୀକୃଷ୍ଣ ବୋଇଲେ ମଧୁପିଙ୍ଗଳ ତୁ ଜାତ
ନିଜ ଦୋଷେ ନ ହରାଅ ଏଡ଼େକ ବିଭୂତ ।
ଆହେ ସର୍ବ ଯୋଦ୍ଧାମାନେ ତୁମ୍ଭେ ସାକ୍ଷୀ ଥାଅ
କୃଷ୍ଣ ନିନ୍ଦକଲେ ପଛେ ଦୋଷକୁ ନ ଦିଅ ।

ଦୂତବିଧି ପଣ୍ଡିତମାନେ ବିଚାରନ୍ତି ହୃଦେ
ଖଣ୍ଡି ଏ ଗ୍ରାମ ପଞ୍ଚକେ ଦିଅ ତାଙ୍କୁ ହାତେ ।
ଦୁର୍ଯ୍ୟୋଧନ ବୋଲେ ତୁହି ଜଗତର ସ୍ୱାମି
ବିନା ସଂଗ୍ରାମେ ନ ଦେବି ସୂଚ୍ୟଗ୍ରରେ ଭୂମି ।
ତାହା ଶୁଣିଣ କହିଲେ କୋପେ ବାସୁଦେବ
କପାଳ ଲିଖନ କାହିଁ ଅନ୍ୟଥା ହୋଇବ ।
ଏତେକ ବୋଲିଣ ଦେବ ଆସ୍ଥାନୁ ଓହ୍ଲାଇ
ତିନି ପାବଚ୍ଛର ତଳେ ଉଭା ହେଲେ ଯାଇଁ ।
ଅତିଶୟ ଅପମାନ ପାଇ ନାରାୟଣ
ହୃଦରେ ମହାଲକ୍ଷ୍ମୀଙ୍କୁ କଲେକ ସ୍ମରଣ ।
ଜୟ ତୁ ପରମା ଦେବୀ ଅଟୁ ମାହେଶ୍ୱରୀ
ମହା ସମୁଦ୍ରରୁ ତୁହି ଅଟୁ ଅବତରି ।
ମୋହଠାରେ ଇଚ୍ଛା ଯେବେ ଅଛୁ ଗୋ କମଳେ
ଦୁର୍ଯ୍ୟୋଧନ କକ୍ଷ ଛାଡ଼ି ଆସ ଏତେବେଳେ
ମୋର ଅପମାନ କେଭେ ସହ୍ୟ ନୁହେଁ ତୋର
ତୁ ଭାର୍ଯ୍ୟା ମୋହର ଯେବେ ମୁଁ ତୋର ଠାକୁର
ଯେବେ ଆଗୋ ମହାସତୀ ମୋ 'ତ ଅଛୁ ଆଶ
ମାନଗୋବିନ୍ଦର ଠାରୁ ବେଗେ ଛାଡ଼ି ଆସ ।
ନାରାୟଣଙ୍କ ମୁଖରୁ ଏହି ବାକ୍ୟ ଶୁଣି
ଦୁର୍ଯ୍ୟୋଧନ କକ୍ଷ ତେଜ୍ୟା କଲେ କମଳିନୀ
ବିଜେ ହେଲେ ମହାଲକ୍ଷ୍ମୀ ନାରାୟଣ ଅଙ୍ଗେ
ତାଙ୍କୁ ଘେନି ବାସୁଦେବ ବିଜେ କଲେ ଏବେ
ପଥେ ଶ୍ରୀକୃଷ୍ଣ ବୋଇଲେ କର୍ଣ୍ଣମୁଖ ଚାହିଁ
ଆସିବା କାଳେ କୋଇନ୍ତୀ ମୋତେ ଥିଲେ କହି
ତୁ ପୁଣି ପାଣ୍ଡବଙ୍କର ଭାଇ ଅଟୁ କର୍ଣ୍ଣ
କମର୍ଥେ ତାହାଙ୍କଠାରୁ ହୋଇଲୁ ତୁ ଭିନ୍ନ ।
ବହୁତ କର କୋଇନ୍ତୀ କହିଛନ୍ତି ମୋତେ
ପାଣ୍ଡବେ ତହିଁକ ତୋତେ ନେବାର ନିମନ୍ତେ
ଏବେ ପାଣ୍ଡବମାନଙ୍କୁ ଅନୁଗ୍ରହ କର
ଆହେ କର୍ଣ୍ଣ ଆସ ଯିବା ପାଣ୍ଡବଙ୍କ ଘର ।
କର୍ଣ୍ଣ ବୋଇଲେ ଶୁଣିମା ହେଉ ହେ ଅଚ୍ୟୁତ
ବାଳକାଳୁ ଦୁର୍ଯ୍ୟୋଧନ ଅଟେ ମୋ ମଇତ୍ର ।
ଗୋବିନ୍ଦ ବୋଇଲେ ମୂର୍ଖ ତୁହି ଅଟୁ ବାବୁ
ପାଣ୍ଡବେ ଅଧିକ ହେଲେ ନିଷ୍ଟେ ମରିବୁ ।
କୋଇନ୍ତୀ ଏ ଦୃଢ଼କରି କହିଥିଲେ ବାଣୀ
ବଧିର ପରାୟେ ତୁହି ସେ କଥା ନ ଶୁଣି

ମୂର୍ଦ୍ଧ୍ନ ଯାହା ସମାର୍ଜନା କଲ ତୋର ଆଗେ
ଏଡ଼େ ସୁଲଭ ଉପେକ୍ଷା କରୁ କେଉଁ ବାଗେ
କର୍ଣ୍ଣ ବୋଇଲା ହରି ହେ ଚଳ ଇନ୍ଦ୍ରପ୍ରସ୍ଥେ
ମହାଭାରତର ଯୁଦ୍ଧ କରାଅ ଯେମନ୍ତେ ।
ଅର୍ଜ୍ଜୁନ ହସ୍ତରେ ମୋର ବଧ ଅଛି ଜାଣି
ତୁମ୍ଭେ ନନ୍ଦଘୋଷ ରଥେ ଥିବ ଚକ୍ରପାଣି ।
ଭାରତରକୁ ଉଶ୍ୱାସ କର ଦେବରାୟ
ଯେତେ ଯେତେ କଥାସବୁ ତୁମ୍ଭର ଉପାୟ ।
କର୍ଣ୍ଣ ମୁଖରୁ ଏମନ୍ତ ବାକ୍ୟମାନ ଶୁଣି
କମ୍ବୁ ଶବଦ କରିଲେ ତହୁଁ ଚକ୍ରପାଣି ।
ଜୟ ଜୟ ଶବଦ ଯେ ଶୁଭିଲ ଆକାଶେ
ଅବନୀ ଦେବୀ ହରଷ ହୋଇଲେ ଉଶ୍ୱାସେ ।
ଶୁଣ ଚଇତନ ଏବେ କହେ ବ୍ରହ୍ମବେଣି
ଏହି ଯେ ମହାଭାରତ ଉଦଯୋଗ କଥା
ତହୁଁ ବାହୁଡ଼ିଣ ଗଲେ ଦେବ ନାରାୟଣ
ମାନଗୋବିନ୍ଦ ନିରାଶ ବଚନ ଶୁଣିଣ ।
ଗୋଡ଼ାଇଛି ପଛକତ ଲକ୍ଷ୍ମଣକୁମର
ପଛକୁ ଅନାଇଦେଲେ ଦେବ ଚକ୍ରଧର ।
ଗୋବିନ୍ଦ ବୋଇଲେ ବାବୁ କି ଅର୍ଥେ ଗମନ
ଲକ୍ଷ୍ମଣକୁମର ବୋଲେ ଶୁଣ ଜନାର୍ଦ୍ଦନ ।
ଭାରତ ଯୁଦ୍ଧ ଯେ ଭାଇ ଭାଇରେ କରିବେ
ଭୀମ ଠାକୁରଙ୍କ ହସ୍ତେ ସମସ୍ତେ ମରିବେ ।
ମୋହର ପିତା ତୁମ୍ଭଙ୍କୁ କହିଛନ୍ତି ବାଣୀ
ଲୋତକ ଧାରା ଅଞ୍ଚଳେ ପୋଛି ପୋଛି ପୁଣି
ବ୍ୟାକୁଳେ ଜଗନ୍ନାଥଙ୍କ ଚରଣେ ଲମ୍ବଇ
ଆହେ ଜଗତର ନାଥ ମୋତେ କର ତ୍ରାହି ।
କୃଷ୍ଣ ବୋଇଲେ ଆକୁଳ କପାଁରେ ଲକ୍ଷ୍ମଣ
ବର ତୁ ମାଗ ତୋହରେ ହୋଇଲି ପ୍ରସନ୍ନ ।
ଲକ୍ଷ୍ମଣ ବୋଇଲା ସ୍ୱାମି ଯେବେ ଦେବ ବର
ଏ ମୋହର ଶିର ଛିଡ଼ୁ ଚକ୍ରରେ ତୋହର ।
ଗୋବିନ୍ଦ ବୋଇଲେ ବାବୁ ଏହା ଆଶା କଲୁ
ରାଜପଦକୁ ମାଗିବୁ ମନେ କରିଥିଲୁଁ ।
ଲକ୍ଷ୍ମଣ ବୋଇଲା ଦେବ ତେଣେ କାର୍ଯ୍ୟନାହିଁ
ସୁଦର୍ଶନ ଚକ୍ର ଯେହ୍ନେ ପାଇବଇଁ ମୁହିଁ ।
ଅସ୍ତୁ ହେଉ ବୋଲିଣ ଯେ କହି ଚକ୍ରପାଣି
ସାନନ୍ଦେ ଶଙ୍ଖ ଶବଦ କଲେ ଦେବ ପୁଣି ।

ବର ପାଇଣ କୁମର ଆସିଲ ଆନନ୍ଦେ
ପାସୋରିଣ ସର୍ବଦୁଃଖ ରୁନ୍ଧିଲାକ ହୃଦେ ।
ମହାଲକ୍ଷ୍ମୀଙ୍କୁ ଘେନିଣ ଦେବ ଜନାର୍ଦ୍ଦନ
ଦ୍ୱାରକା ଯିବା ଇଚ୍ଛିଲେ ପାଇ ଅପମାନ ।
କମଳାଙ୍କୁ ଘେନି ସଙ୍ଗେ ଦେବ ଯଦୁସାଇଁ
ଋଷିମାନଙ୍କ ନିକଟେ ପ୍ରବେଶିଲେ ଯାଇ ।
ବ୍ୟାସ ମହାଋଷିଙ୍କୁ ଯେ କହନ୍ତି ଅଚ୍ୟୁତ
ଯୁଧିଷ୍ଠିରଙ୍କୁ କହ ଯାଇ ସମସ୍ତ ଚରିତ ।
ଏହା କହି ଗରୁଡ଼କୁ ସ୍ମରିଲେ ହରି
ଛାମୁରେ ମିଳିଲା ବେଗେ ସେହି ଆସିକରି
ଲକ୍ଷ୍ମୀଙ୍କୁ ସଙ୍ଗରେ ଘେନି ଦେବ ଜନାର୍ଦ୍ଦନ
ଦ୍ୱାରକାରେ ପ୍ରବେଶିଲେ ପାଇ ଅପମାନ ।
ବିଦୁର ପ୍ରବେଶ ହେଲେ ଯୁଧିଷ୍ଠିର ପାଶ
କୁଶଳ ବାର୍ତ୍ତା ପୁଚ୍ଛନ୍ତି ଧର୍ମଙ୍କର ଶିଷ୍ୟ ।
ବୋଇଲେ ଗୋବିନ୍ଦ ବିଜେ କଲେ ହସ୍ତିନାକୁ
କିସ ଉତ୍ତର କରିଲେ କୌରବ ମାନଙ୍କୁ ।
କିସ ପ୍ରତ୍ୟୁତ୍ତର ଦେଲା ମାନଚକ୍ରବର୍ତ୍ତୀ
ବିଦୁର କହିଲେ ତାକୁ କରି ପ୍ରତି ପ୍ରତି ।
ବହୁ ଅପମାନ ପାଇ ପ୍ରଭୁ ଦେବରାଜେ
ବାହାରେ ବାହାରେ ଗଲେ ଦ୍ୱାରକାକୁ ବିଜେ
ଏମନ୍ତ କାଳରେ ଅଠାଅଶୀସହସ୍ର ଋଷି
ଯୁଧିଷ୍ଠିରଙ୍କ ନିକଟେ ପ୍ରବେଶିଲେ ଆସି ।
ଦେଖି ଆସ୍ଥାନକୁ ତେଜ୍ୟାକରି ଧର୍ମରାଜା
ଋଷିମାନଙ୍କର ଯାଇ କଲେ ପାଦପୂଜା ।
ଋଷିଙ୍କ କଲ୍ୟାଣ ପାଇ ବସିଲେ ଯୁଧିଷ୍ଠି
ସୁବର୍ଣ୍ଣ ପଇତା ଦେଲେ ସର୍ବ ତପୋନିଷ୍ଠୀ
ବିନୟରେ ପଚାରନ୍ତେ କୁଶଳ ବାରତା
ଯୁଧିଷ୍ଠି କହିଲେ ଶୁଣ ତୁମ୍ଭେ ଆଗ କଥା ।
ତୁମ୍ଭେ ଏବେ ସାକ୍ଷୀଥାଅ ସର୍ବ ଋଷିମାନେ
ମୋ ରାଜ୍ୟ ମାଡ଼ି ବସିଲେ ଅନ୍ଧର ସନ୍ତାନେ
ମଧ୍ୟପାନ୍ଥେ ଗଲେ ଧୌମ୍ୟ ଆବର ବିଦୁର
ଭୃଙ୍ଗୀପୁରେ ବିଜେକଲେ ଦେବ ଚକ୍ରଧର ।
ଏ ସକଳ ବ୍ରହ୍ମାଣ୍ଡର ଯେହୁ ଅଧିକାରୀ
ତାହାଙ୍କୁ ଝିଙ୍ଗାସ କଲେ ଦୁଷ୍ଟବୁଦ୍ଧି ଧରି ।
ତାହାଙ୍କର ଅପମାନେ ଦେବ ଦଇତ୍ୟାରି
ବାହାରେ ବାହାରେ ଗଲେ ଦ୍ୱାରବତୀ ପୁରୀ ।

ଯୁଧିଷ୍ଠି ବାକ୍ୟ ଶୁଣିଣ ବ୍ୟାସ ମହାସତ
ବୋଇଲେ ସେ ଆମ୍ଭେ ଥିଲୁଁ ଶାନ୍ତମ୍ଭଙ୍କ କତ ।
ପ୍ରକୃତ କଥା କହିଲେ ଯହୁଁ ଜଗନ୍ନାଥ
ତାହା ଶୁଣି କୋପ କଲ ଅନ୍ଧ ଜ୍ୟେଷ୍ଠସୁତ
ମାର୍କଣ୍ଡ ବୋଇଲେ ତୁମ୍ଭେ ଶୁଣ ଧର୍ମଶିଷ୍ୟ
ବେଳ ନିକଟ କଲର ହୋଇଲ ପ୍ରବେଶ ।
ଏ ମହାଭାରା ଉଶ୍ୱାସ କରିବେ ଯେ ହରି
ଉପାସ୍ୟେ କୌରବବଂଶ ସମୂଳେ ନବାରି ।
ତୁମ୍ଭେ ପାଣ୍ଡବ ଶାନ୍ତମ୍ଭ ତହିଁପାଇଁ ଜାତ
ମହାଭାରତ ସମରେ କରିବେ ନିପାତ ।
ସମର ଶେଷେ ରହିବେ ତେରଜଣ ମାତ୍ର
ଏକାଙ୍ଗ ରାଜ୍ୟ କରିବ ତୁମ୍ଭେ ପଞ୍ଚଭ୍ରାତ
ଏହା ଶୁଣି ରଷିଙ୍କୁ ସେ ଦେଲେ ଚରୁ ଫଳ
ଜଣ ଜଣଙ୍କୁ ଚର୍ଚ୍ଚିଲେ ପଣ୍ଡୁଙ୍କ ଦୁଲଳ ।
ଭୋଜନାନ୍ତେ ସବୁ ତୃପ୍ତି ହୋଇ ତୋଷମନ
କଲ୍ୟାଣ କର ଆଶ୍ରମେ କଲେ ଗମନ ।
ଆହେ ନୀଳାଚଳ ନାଥ ବଉଦ୍ଧାବତାର
ତୋ ପାଦେ ରହୁ ଶାରଳା ଦାସର ସେ ଶିର ।

---

## ମହାଲକ୍ଷ୍ମୀଙ୍କୁ ଆଣିବା ନିମନ୍ତେ ଦୁର୍ଯ୍ୟୋଧନ ଓ ଶକୁନିର ଦ୍ୱାରକା ଗମନ ଏବଂ କୃଷ୍ଣଙ୍କୁ ଆଣିବା ନିମନ୍ତେ ଅର୍ଜ୍ଜୁନର ଦ୍ୱାରକା ଯାତ୍ରା

ପଚାରିଲେ ବୈବସ୍ୱତ ମନୁ ନୃପବର
ହେ ଅଗସ୍ତ୍ୟ ମୁନି ଦେନ ନିବେଦନ ମୋର ।
ଅପମାନ ପାଇ କୃଷ୍ଣ ଗଲେ ଦ୍ୱାରବତୀ
ତଦପରେ କିସ କଲ କୁରୁ ନରପତି ।
ଯେ କଥା ବିସ୍ତାରରୂପେ କହ ସରକାର
ଶୁଣିବାକୁ ତୁମ୍ଭ ମୁଖୁଁ ବଡ଼ ଅଭିଳାଷୀ
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ମହାଲକ୍ଷ୍ମୀ ଘେନିଗଲେ ଯହୁଁ ଶ୍ରୀପତି ।
ଅନେକ ଉତ୍ପାତ ହେଲ ହସ୍ତିନା ରାଜ୍ୟରେ
କାଳାଗ୍ନି ଉଠେ ହୋଇବ ପୁଣ୍ୟମଯ୍ୟ ଘରେ
ଅଦ୍ଭୁତେ ରାଜ୍ୟ ମଧ୍ୟେ ହେଲ ଟିକାବୃଷ୍ଟି
ଛନା ବାତରେ କଟଣ ପଡ଼ିଲାକ ଛୁଟି ।
ନାଗଚକୁ ବନ୍ଦ ବନ୍ଦ ଛିଣ୍ଡିଗଲା ଗୁଣ
ଏମନ୍ତେ ଉତ୍ପାତ ହେଲା ରାଜ୍ୟରେ ଆସିଣ ।
ଦୁର୍ଯ୍ୟୋଧନ ବୋଲେ ଶୁଣ ମାତୁଳ ଶକୁନି
ଅଦଭୁତେ ଶୁଭେ ରାଜ୍ୟେ ଉତ୍ପାତର ଧ୍ୱନି ।
ମାନଗୋବିନ୍ଦ ବଚନେ ଶକୁନି ବୋଇଲା
ସମ୍ପଦ ବିପଦ ସବୁ ଦଇବର କଲା ।
ଭୀଷ୍ମ ବୋଇଲେକ ଶୁଣ କୁରୁରାଜଦେବ
କୌଣସି କାଳେ ନ ଥିଲା ଏମନ୍ତ ସମ୍ଭବ ।
ବହୁ ଅପମାନ ପାଇ ଗଲେ ଜଗନ୍ନାଥ
ମହାଲକ୍ଷ୍ମୀ ଘେନିଗଲେ ତାହାଙ୍କ ସହିତ ।
ଏସନକ ବାକ୍ୟ କହୁଁ ଭୀଷ୍ମ ମହାରଥି
ରାଜାଶିରରୁ ମୁକୁଟ ପଡ଼େ ତତକ୍ଷଣାନ୍ତି ।
ଅନର୍ଘ୍ୟମଣି ମୁକୁଟ ପଡ଼ି ହେଲା ଚୂର
ଦେଖି ଦୁର୍ଯ୍ୟୋଧନ ହେଲା ବିରସ ଅପାର ।
କହେ ବଡ଼ ଅସୂଲଭ ଅଟଇ ଏ କଥା
ନିଜ ଜଳକର୍ମ କେବେ ନୁହଇ ଅନ୍ୟଥା ।
ପୁଣି ବୋଇଲ ତୁ ଶୁଣ ମନ୍ତ୍ରି ଚୂଡ଼ାମଣି
ଅଳ୍ପଦୋଷେ ହରାଇବ ଏ ସମ୍ପଦ ଜାଣି
ଦ୍ରୋଣ ବୋଇଲେ ବାବୁରେ ବୁଦ୍ଧି ଏକ ଅଛୁ
ଭକତଜନ ବତ୍ସଳ ଦେବ ଶ୍ରୀବତ୍ସ ।
ଶକୁନି ସହ ଦ୍ୱାରକା କର ତୁ ପ୍ରୟାଣ
ଆମ୍ଭ ସପକ୍ଷ ଅଛନ୍ତି ଦେବ ସଙ୍କର୍ଷଣ ।
ତାଙ୍କୁ ଭକ୍ତିକରି ତୁଷ୍ଟି ପାଇଣ କହନ୍ତେ
ତାଙ୍କ ଅନୁରୋଧେ ଲକ୍ଷ୍ମୀ ଦେବେ ଜଗନ୍ନାଥେ
ଦ୍ରୋଣଙ୍କ ବଚନ ଶୁଣି ସେ ମାନଗୋବିନ୍ଦ
ଶକୁନି ସହ ଯିବାକୁ ହୋଇଲେ ଆନନ୍ଦ ।
ଦ୍ୱାରକାକୁ ଯିବା ସଜହୋଇ ଚକ୍ରବର୍ତ୍ତୀ
ଶକୁନି ସହ ପ୍ରବେଶ ହେଲ ଦ୍ୱାରବତୀ ।
ମଣୋହି ଇତ୍ୟାଦି କାର୍ଯ୍ୟକରି ସମାପତ
ଶଙ୍ଖାବତୀ ପୁରେ ବଜେ ଦେବ ଜଗନ୍ନାଥ ।
ଦିବ୍ୟ ପଲଙ୍କରେ ଶେଯ ସଜାଇ ମୃଦୁତ
ଶୟନ ଜଗମୋହନ ଅଳସ ପ୍ରକୃତ ।
ଏସନକାଳେ ଶକୁନି ସେ ମାନଗୋବିନ୍ଦ
ପ୍ରବେଶିଲେ ଯାଇ ଯହିଁ ଛନ୍ତି ଜଗଇନ୍ଦ୍ର ।
ସମ୍ଭାଷା ନ ଦେଇ କଷ୍ଟ କୌରବ ରାଜନ
ବସିଲ ଯାଇଣ ବାସୁଦେବ ଶିରସ୍ଥାନ ।

ପଲଙ୍କ ମାଡ଼ି ବସିଲ ନୃପ କୁରୁସାଇଁ
ନିଦ୍ରା ଯାଇଛନ୍ତି ପ୍ରଭୁ ଅସାବ୍ଧାନ ହୋଇ ।
ଯୁଧିଷ୍ଠିର ପଠାଇଲେ ଅନାଇଁ ମନ୍ତ୍ରୀଙ୍କ
ଗୋବିନ୍ଦ ନଇଲେ କପଁ । ଆମ୍ଭର ତହିଁକ ।
ଦୁର୍ଯ୍ୟୋଧନ ଅପମାନେ ମୋତେ କଲେ ରାଗ
ତେଣୁ ମୋହର ପାଶକୁ ନଇଲେ ଶ୍ରୀରଙ୍ଗ ।
ସହଦେବ ବୋଲେ ଶୁଣ କୃଷ୍ଣଙ୍କ ମହିମା
ଅଭିମାନେ ନ ମାଡ଼ିଲେ ତୁମ୍ଭର ଏ ସୀମା ।
ପୁଣି ସହଦେବ ବୋଲେ ଶୁଣ ନୃପବର
ମାନଗୋବିନ୍ଦ ଗଲଣି ଦ୍ୱାରବତୀ ପୁର ।
ଶକୁନି ମନ୍ତ୍ରୀ ତାହାର ସଙ୍ଗେ ଅଛି ଯାଇ
ନିମନ୍ତ୍ରି ଆଣିବ ରାମ କୃଷ୍ଣ ବେନିଭାଇ ।
ସହଦେବର ମୁଖରୁ ଏହି ବାକ୍ୟ ଶୁଣି
ଅର୍ଜୁନକୁ ଆଜ୍ଞାଦେଲେ ଯାଅ ତୁ ଏକ୍ଷଣି ।
ବଳରାମ ଗଦାଗୁରୁ କଉରବଙ୍କର
ତାଙ୍କ ବୋଲେ ଛାଡ଼ିଦେବେ ଆମ୍ଭଙ୍କୁ ଶ୍ରୀଧର
ଏମନ୍ତ ଶୁଣି ବ୍ୟାକୁଳ ହେଲ ଧନଞ୍ଜୟ
ଦ୍ୱାରବତୀକୁ ଯିବାର କରିଲ ଉପାୟ ।
ଯେଉଁ ପାଦୁକା ମନ୍ତ୍ରକୁ ବନେ ପାଇଥିଲ
ସହସ୍ର ପାଞ୍ଚଯୋଜନ ନିମିଷକେ ଗଲ ।
ଦେଖି ଛାଡ଼ିଦେଲେ ତାଙ୍କୁ ଦ୍ୱାରପାଳମାନେ
ତହୁଁ ପ୍ରବେଶିଲେ ସତ୍ୟଭାମାଙ୍କ ଭବନେ ।
ଦକ୍ଷିଣକୁ ମଥାକରି ଦେବ ଜନାର୍ଦ୍ଦନ
ଦେଖିଲେ ଯୋଗନିଦ୍ରାରେ ଅଛନ୍ତି ମଗନ ।
ସୀମସ୍ଥାନେ ଦୁର୍ଯ୍ୟୋଧନ ବସିଅଛି ଯାଇ
ଶକୁନି ମନ୍ତ୍ରୀ ତାହାର ସଙ୍ଗରେ ଅଛଇ ।
ଏସନକ ପରକାରେ ପ୍ରତ୍ୟକ୍ଷେ ଦେଖିଲ
ତହୁଁ ପାର୍ଥ କୃଷ୍ଣ ପାଦତଳରେ ବସିଲ ।
ଶକୁନି ଜଣାଏ ହଳୀ ଅଗ୍ରତରେ ଯାଇ
ମାନଗୋବିନ୍ଦ ଆସିଛି ଶୁଣିବା ଗୋସାଇଁ ।
ବଳରାମ ବଚନ ଶୁଣି ଉଠି ବନମାଳୀ
ଅର୍ଜୁନକୁ ଚାହିଁଦେଲେ ଆଖି ମଳମଳ ।
ପାଦପଦ୍ମ ତଳେ ବସିଅଛି ଫାଲଗୁନ
ଉଠି କେଶବ ଧରିଲେ ତାର ହସ୍ତବେନି ।
ବୋଇଲେ ଆସ ଅର୍ଜୁନ ମୋ ପ୍ରାଣସଙ୍ଗାତ
ଏହା କହି ବେନିଭୁଜେ କଲେ କୋଳାଗତ ।
ବାବୁ ଏଡ଼େ ଅନୁଗ୍ରହ କରିଲୁ ତୁ ମୋତେ
ଠାକୁରଙ୍କ କାର୍ଯ୍ୟ କିବା ଦେଖିବା ନିମନ୍ତେ ।
ହଳୀ ବୋଇଲେ ରେ ହରି ଚାହାଁ ତୁ ଲେଉଟି
ପଛକତି ବସିଛନ୍ତି ରାଜା ଧାର୍ତ୍ତରାଷ୍ଟ୍ରି ।
ବଳରାମ ବାକ୍ୟ ଶୁଣି ଦୁର୍ଯ୍ୟୋଧନ ଦେଖି
ଉଚ୍ଚହାସ ପରାୟେକ ଚାହିଁଲେ ନିରୀକ୍ଷି ।
କହିଲେ ହେ ଦୁର୍ଯ୍ୟୋଧନ ଗୌଡ଼ିଆ ମୋରାଜ୍ୟ
ଅମୋକ୍ଷ ଭୂମିରେ ଅଛି ତୁମ୍ଭର କି କାର୍ଯ୍ୟ ।
ଗୋ ବ୍ରାହ୍ମଣ ସ୍ତ୍ରି ଶି ହତ୍ୟା କରିଅଛି ମୁହିଁ
ଗୋବତ୍ସା ମାଇଲ ପୁଣି ଗୋରସର ପାଇଁ
ଏତେକ ପାତକ ଅଛି ଜାଣିଛ ମୋ ଅଙ୍ଗେ
ମୋର ଭୁବନକୁ ବିଜେକଲ କେଉଁ ବାଗେ ।
କୃଷ୍ଣ ବାକ୍ୟେ ଦୁର୍ଯ୍ୟୋଧନ ସ୍ତମ୍ଭୀଭୂତ ହୋଇ
ବୋଇଲା କଟାଳ କଲ ପାଣ୍ଡବଙ୍କ ପାଇଁ ।
ପାଣ୍ଡବ ଜାରଜାତକା ସେମାନେ କି କ୍ଷମ
କାହାର ବଳେ ସେମାନେ କରିବେ ସଂଗ୍ରାମ ।
ବଳରାମ ବୋଇଲେ ଯେ କୋପ ଛାଡ଼ ବାବୁ
ଭକ୍ତବତ୍ସଳ ଉପେକ୍ଷା କରିବୁ ନା ସବୁ ।
ଦୋଷ କରିଣ ଯଦ୍ୟପି ଅଇଲା ଗୃହକୁ
ଉଚିତ ନୁହଇ ଆଉ ତାହା ଧରିବାକୁ ।
ଧାର୍ତ୍ତରାଷ୍ଟ୍ର ବୋଲେ ଦୁଇକୁଳେ ହେବ ଯୁଦ୍ଧ
ତୁମ୍ଭଙ୍କୁ ନିମନ୍ତ୍ରି ନେଲେ କାର୍ଯ୍ୟ ହେବ ସିଦ୍ଧ
ମୋହର ପକ୍ଷକୁ ତୁମ୍ଭେ ଯିବ ବେନିଭ୍ରାତେ
ମୁହିଁ ଅଇଲା ତୁମ୍ଭଙ୍କୁ ନେବାର ନିମନ୍ତେ ।
ଗୋବିନ୍ଦ ବୋଇଲେ ଶୁଣ ଆରେ ବାବୁ ପାର୍ଥ
ମୋପୁରେ ଅଇଲୁ ତୁହି କେବଣ ନିମିତ୍ତ ।
ଅର୍ଜୁନ ବୋଇଲା କୁରୁ ପାଣ୍ଡବ ସମର
ତୁମ୍ଭେ ବେଗ ହୋଇ ବିଜେ କର ଚକ୍ରଧର ।
ତୁମ୍ଭଙ୍କୁ ନେବ ଠାକୁର ଆଜ୍ଞା ଅଛି ମୋତେ
ଉଠ ଚାଲ ଦେବ ସ୍ୱାମି ଯିବାକ ଇଚ୍ଛତେ ।
ଗୋବିନ୍ଦ ବୋଇଲେ ତହୁଁ ଶୁଣ ଆହେ ଭ୍ରାତ
ଉଭୟ ସଙ୍କଟ ସ୍ଥଳେ କି କରି ଉଚିତ ।
ହଳୀ ବୋଇଲେ ଆଗେ ଯେ କରିଛି ବରଣ
ଆଗେ ଦୃଷ୍ଟି ପଡ଼ିଅଛି ଯା ଉପରେ ପୁଣ ।
ସର୍ବଜ୍ଞ ପୁରୁଷ ନାଥ ତୁ ପୁରୁଷୋତ୍ତମ
ଆଗ ନିମନ୍ତ୍ରଣେ ଗଲେ ମିଳଇ ଯେ ଧର୍ମ ।

ଗୋବିନ୍ଦ ବୋଇଲେ ଆଗ [illegible]
ଆଗକର ଅର୍ଜ୍ଜୁନର ମୁଖ ମୁଁ ଚାହିଁଲି ।
ଦୁର୍ଯ୍ୟୋଧନ ବୋଲେ ସ୍ୱାମି ଶୁଣ ରାମଚନ୍ଦ୍ର
ଦୟା ନ କରନ୍ତୁ ମୋତେ ସର୍ବଦା ଗୋବିନ୍ଦ ।
ମାନଗୋବିନ୍ଦଙ୍କୁ ଘେନି ଚଳେ ନୀଳାମ୍ବର
ପ୍ରବେଶ ହୋଇଲେ ଯାଇ ଆପଣା ମନ୍ଦିର ।
ସ୍ନାନ ଭୋଜନ କରାଇ ତର୍ପିଲେ ତାହାଙ୍କୁ
ଅନେକ ଅକ୍ଷତ ଦେଲେ ମାନଗୋବିନ୍ଦଙ୍କୁ ।
ଚନ୍ଦ୍ରଶାଳା ଭବନରେ ଚଳେ କୁରୁପତି
ସାତ୍ୟକଙ୍କୁ ଧାଇ ଆଜ୍ଞାଦେଲେ ହଳପତି ।
ଯାଅ ଯାଅ ସାତ୍ୟକ ହେ ଆଣ ଶିଘ୍ରପତି
ଦୁର୍ଯ୍ୟୋଧନ ଅର୍ଜ୍ଜୁନଙ୍କୁ କରାଇବା ପ୍ରୀତି ।
ସ୍ୱାମୀଙ୍କ ବଚନ ଘେନି ଚଳଇ ସାତ୍ୟକ
ସତ୍ୟଭାମା ପୁରେ ହରି ଅର୍ଜ୍ଜୁନଙ୍କୁ ଦେଖି ।
ଅର୍ଜ୍ଜୁନଙ୍କୁ ଘେନି ଶୋଇଛନ୍ତି ବନମାଳୀ
ପାଦତଳେ ବସିଛନ୍ତି ଶଙ୍କାକୃତ ବାଳୀ ।
ତ୍ରୈଲୋକ୍ୟଙ୍କୁ ମୋହୁଛନ୍ତି ନାରାୟଣ ବାମା
ଦୁହିଙ୍କ ପାଦ ଘଷନ୍ତି ତହିଁ ସତ୍ୟଭାମା ।
ଡାହାଣ ଜାନୁରେ ଅଛି କୃଷ୍ଣ ପାଦଗୋଟି
ବାମ ଜାନୁରେ ପାଦକୁ ଦେଇଛି କଷ୍ଟି ।
କୃଷ୍ଣପାଦ ମନ୍ଥାଳଇ ଦକ୍ଷିଣର ହସ୍ତେ
ଅର୍ଜ୍ଜୁନ ପାଦ ମନ୍ଥାଳେ ବାମକର ପାତେ ।
ଏସନ ସ୍ୱରୂପ ତହିଁ ଦେଖିଲ ସାତ୍ୟକ
ଟିବ ଶିବ ବୋଲି ଫେରେ ହଳୀଙ୍କ କଟକ ।
ବଳରାମ ଦେଖି ତାଙ୍କୁ ପୁଚ୍ଛିଲେ ସରଣି
ତୁମ୍ଭେ ଅଇଲ ନଇଲେ କପାଇଁ କ୍ଷୀପତି ।
ସାତ୍ୟକ ବୋଇଲେ ଦେବ ଶୁଣ ବସୁବାସ
ଧୃତରାଷ୍ଟ୍ରର ପୁଅଙ୍କୁ ନାହିଁ ଆଉ ଆଶ ।
ଯେମନ୍ତ ସ୍ୱରୂପ ଆଜ ଅଇଲି ମୁଁ ଦେଖି
ସହସ୍ରେ ହଳୀ ଦୁର୍ଯ୍ୟୋଧନେ ନ ପାରିବେ ରକ୍ଷି
ହରି ଅର୍ଜ୍ଜୁନ ନିଦ୍ରି ତଛନ୍ତି ଏକମେଳେ
ତହାବଶଙ୍କୁ ଦେଖିଲି ତାଙ୍କ ପାଦତଳେ ।
ଦୁହିଙ୍କ ପାଦ ମନ୍ଥାଳେ ସତ୍ୟା ଗୁଣବତୀ
କୃଷ୍ଣାଠାରୁ ଶତଗୁଣେ ଶ୍ରେଷ୍ଠ ସେହି ସତୀ ।
ଏହି ପରକାରେ ଦୟା ହୋଇଛି ଯାହାଙ୍କୁ
ବ୍ରହ୍ମା ଇନ୍ଦ୍ର ନ ପାରିବେ ରକ୍ଷି କୌରବଙ୍କୁ ।

ଏମନ୍ତ ଶୁଣି [illegible] ହେଲେ ଦେବହଳୀ
କାଲି ଜାଣିବା କି କହେ ଆସି ବନମାଳୀ ।
ଏହିରୂପେ ଭାବୁଁ ଭାବୁଁ ହୋଇଲା ପ୍ରଭାତ
ଦୁର୍ଯ୍ୟୋଧନ ଘେନି ଚଳେକଲେ ହଳହସ୍ତ ।
ସ୍ନାନ ଦେବାର୍ଚ୍ଚନ ଆଦି ସାରି ଦେବ ହରି
ଅର୍ଜ୍ଜୁନର ତୁଲେ ଛନ୍ତି ପ୍ରଭୁ ଚଳେକରି ।
ଦୁର୍ଯ୍ୟୋଧନଙ୍କୁ ଘେନିଣ ଚଳେ ବଳରାମ
ଦେଖି ପ୍ରଣିପାତ ହେଲେ ପାର୍ଥ ଘନଶ୍ୟାମ ।
ଶ୍ରୀ ବଳଦେବ ବୋଇଲେ ଶୁଣ ନାରାୟଣ
କୁରୁପାଣ୍ଡବ ଅନ୍ୟୋନ୍ୟେ କମ୍ପୁତ କାରଣ ।
ଅଥବା ପ୍ରୀତି ହୋଇବେ ସେହି ବେନିଭାଇ
ତୋର ଆମ୍ଭର ତହିଁକି ଯିବା ନ ଯୋଗାଇ ।
ଗୋବିନ୍ଦ ବୋଇଲେ ଦେବ ଶୁଣ ଶଙ୍କର୍ଷଣ
ରାବଣ ବଧ କଲି ମୁଁ ତ୍ରେତୟା ଯୁଗେଣ ।
ସ୍ୱର୍ଗେ ଅପଖ୍ୟାତ ମୋତେ ଦେଲେ ବେଦପିତା
ବୋଇଲେ ରାବଣ ମାରି କଲୁ ବ୍ରହ୍ମହତ୍ୟା ।
କହ୍ନା ଅବତାରେ ମାରେ ପୁତନା ଦୈତୁଣୀ
ଷଣ୍ଢା ଯାମଳା ଦୈତ୍ୟଙ୍କୁ ମାଇଲଇଁ ପୁଣି ।
ସେହି ହତ୍ୟାଦୋଷ ଅଙ୍ଗେ ଅଛି ବିଦ୍ୟମାନ
ଭାରତ ଯୁଦ୍ଧ ଦେଖିଲେ ହୋଇବ ଖଣ୍ଡନ ।
ସ୍ୱାମି ଅର୍ଜ୍ଜୁନ ରଥରେ ହୋଇବି ସାରଥି
ଉଭୟ କୁଳଙ୍କୁ ସାକ୍ଷୀ ହୋଇଥିବି ତଥି ।
ରଣେ ଅସ୍ତ୍ର ନ ଧରିବି ଶୁଣ ହଳଧର
ସତ୍ୟ ସତ୍ୟ ସତ୍ୟ ଅଟେ ତ୍ରିବାର ମୋହର ।
ସ୍ୱାମି ସତ୍ୟକଲ ରଣେ ଅସ୍ତ୍ର ଯେବେ ଧରେ
ହେ କାମପାଳ ତୁମ୍ଭର ପାଦେ ଦ୍ରୋହ କରେ
ଅନେକ କଠୋର ବାକ୍ୟ କହି ନାରାୟଣ
ଶ୍ରୀକରେ ଛୁଇଁଲେ ବଳରାମଙ୍କ ଚରଣ ।
ଶ୍ରୀବଳରାମ ବୋଇଲେ ନିୟମ ଲଙ୍ଘିଲେ
ମୋତେ ସୁମରିବ କୃଷ୍ଣ ଅପ୍ରାଦ ଧଇଲେ ।
ରଣର ମଧ୍ୟକୁ ତହିଁ ମୁହିଁ ଯାଇକରି
ମାରିବି ପଞ୍ଚପାଣ୍ଡବ କୃଷ୍ଣ ଆଦିକରି ।
ଆହେ ଦୁର୍ଯ୍ୟୋଧନ କୃଷ୍ଣ ଅର୍ଜ୍ଜୁନ କି ହେଉ
ନ ମାଇଲେ ଭଗିଥାଲେ ବଡ ଆମ୍ଭେ ଦେଉ ।
ଶୁଣି ସାନନ୍ଦ ହୋଇଲ ମାନ ଚକ୍ରବର୍ତ୍ତୀ
ବୋଲେ ସ୍ୱାମି ଫିଟିଗଲ ଏବେ ମୋରଭ୍ରାନ୍ତି ।

ଶକୁନି ବୋଇଲା ହରି ପାଣ୍ଡବେ ନିର୍ଦ୍ଦୟ
ଏବେ କଉରବେ ଜାଣି ହୋଇଲେ ନିର୍ଭୟ ।
ରଣେ ଅସ୍ତ୍ର ନ ଧରିବେ ଯେବେ ଦେବ ହରି
ଲକ୍ଷେ ପାଣ୍ଡବ ହେଲେ କି କୌରବଙ୍କୁ ସରି ।
ଦୁର୍ଯ୍ୟୋଧନ ବୋଲେ ହରି ଯେବେ କଲୁ ଦୟା
ମୋହର ଲକ୍ଷ୍ମୀଙ୍କୁ ଦିଅ ନ କରିଣ ମାୟା ।
ଲକ୍ଷ୍ମୀଙ୍କ ଅଭାବେ ମୁହିଁ ଅଟଇ ନିର୍ମାଷୀ
ରାଜ୍ୟଶିରୀ ହାନି ହେଲା ମୁଁ କେବଣ ସୁଖୀ ।
ଚନ୍ଦ୍ରଶାଳାପୁରେ ନେଇ ଦେଖାଇଲେ ହରି
ରାଜା ମନ୍ତ୍ରୀ ଦୁହେଁ ସ୍ତୁତି କରିଲେ ଉଚ୍ଚାରି ।
ଜୟ ତୁ କମଳା ମାଗୋ ଜୟ ସିନ୍ଧୁସୁତା
ପରମ ହରିକୁଳ ଗୋ ସର୍ବଜନ ମାତା ।
ମାଳାଦେଇ ବରିଲୁ ତୁ ନାରାୟଣ ସ୍ୱାମୀ
ଚଞ୍ଚଳା ନାମ ବହିଲୁ ସର୍ବଥରେ ଭ୍ରମି ।
ନିଶ୍ଚଳ ହୋଇ ନ ରହୁ କଉଣସି ଠାବ
ସେ ନାମକୁ ଲୟ କଲେ ତେଣୁ ବାସୁଦେବ ।
ପରମ ହରିକୁଳ ସେ ବରୁଣ ନୃପତି
ତୋତେ ଦେଇ ପାରିହେଲା ମାଗୋ ଭଗବତୀ ।
ଅକ୍ଷୟା ଅଭୟା ମାତା ପରମ ସାଧବୀ
ସର୍ବ ଜୀବଙ୍କ ତାରିଣୀ ଅଟୁ ମହାଦେବୀ ।
ମାଗୋ ଆଦି ସତ୍ୟଯୁଗେ ତୋ ନାଁ ସତ୍ୟପ୍ରିୟା
ପଦ୍ମମାଳାରେ ଶୋଇଲୁ ନାରାୟଣ ହିୟା ।
ପଦ୍ମ ପାଖୁଡ଼ାରେ ଶତେ ବ୍ରହ୍ମାଣ୍ଡ ସମ୍ଭୂତ
ତୋର ଦିବସକେ ସେହୁ ହୁଅନ୍ତି ନିପାତ ।
ପ୍ରସନ୍ନେ ସମ୍ପଦ ଦେଉ ତୁହି ସଦାକାଳେ
ହୃଦରେ ଭଜିଲୁ ତୁହି ତୁମ୍ଭଙ୍କୁ କମଳେ ।
ଅନାଦି ପୁରୁଷ ଜାଣେ ତୋର ସର୍ବ କର୍ମ
ତୋତେ ଭାବିଲେ ମାତ ଗୋ ଉଦେ ହୁଏ ଧର୍ମ
ବ୍ରହ୍ମାଣ୍ଡ ତାରିଣୀ ମାଗୋ ସର୍ବଜନ ରକ୍ଷି
ସୁରବରସୁନ୍ଦରୀ ଗୋ ଜୟ କମଳାକ୍ଷି ।
ଖଟନ୍ତି ମାତଙ୍ଗିନୀ ଗୋ ଶ୍ୱେତ ମହାନାଗ
କୋଟି ତୀର୍ଥଜଳେ ସିକ୍ତ କରନ୍ତି ତୋ ଅଙ୍ଗ ।
ପାଦପଦ୍ମ ଲଲାଟରେ ଶୋହେ ପଦ୍ମଚିତା
ପଦ୍ମିନୀ ଦେଖି ଭାବିଲେ ଶ୍ରୀବତ୍ସ ଦେବତା ।
କେତେ ପୁଣ୍ୟେ ଦେଖିଲି ମୁଁ ପାଦପଦ୍ମ ଗୋଟି
ସେ [illegible] ମୋ ଶିରଟି ।
ସଦା ସମ୍ପଦଦାୟିନୀ ତୁ ମାତଃ କମଳେ
ଜନ୍ମେ ଜନ୍ମେ ସେବା ମୋର ତବ ପାଦତଳେ
ଅଜ୍ଞାନରେ ଅପରାଧ କରେ ଯେଉଁ ପ୍ରାଣୀ
ସମସ୍ତ ଉପେକ୍ଷା କରୁ ତୁହି ଠାକୁରାଣୀ
ଲଭିବ ପରମ ଗତି ତୋହର ପ୍ରସାଦେ
ଶାରଳା ଦାସ ସେବଇ ସଦା ତୋର ପାଦେ ।

---

## କୃଷ୍ଣଙ୍କର ଇନ୍ଦ୍ରପ୍ରସ୍ଥେ ଆଗମନ, କୁରୁକ୍ଷେତ୍ର ବଣ୍ଟନ ନିମନ୍ତେ ଶକୁନିର ଯୁଧିଷ୍ଠିର ନିକଟେ ପ୍ରବେଶ ଓ ଅଲସୁଆ ବିବରଣ

ଏଥୁଅନ୍ତେ ପଚାରିଲେ ମନୁ ନରପତି
ମାନଗୋବିନ୍ଦ ଲକ୍ଷ୍ମୀଙ୍କୁ କରୁଥିଲା ସ୍ତୁତି ।
ଶ୍ରୀଜଗମୋହନ ତାଙ୍କୁ ଦେଲେ କି ନ ଦେଲେ
କୌରବ ଈଶ୍ୱର ପୁଣି କେଉଁ କୃତ୍ୟ କଲେ ।
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ
କହ ହେ ଅଗସ୍ତି ମୁନି ଭାରତ ଚରିତ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ମାନଗୋବିନ୍ଦ ବିନୟେ ତୁଷ୍ଟ ଜନାର୍ଦ୍ଦନ ।
ବୋଇଲେ ମାନଗୋବିନ୍ଦ କଲାଣି ଭକତି
ସୁପ୍ରସନ୍ନ ହୁଅ ଦେବୀ ତାହାଙ୍କର ପ୍ରତି ।
ଯହୁଁ ଆଜ୍ଞା କଲେ କୃଷ୍ଣ ପରମ ଆନନ୍ଦେ
ଲକ୍ଷ୍ମୀ ବିଜେକଲେ ମାନଗୋବିନ୍ଦର କନ୍ଧେ ।
ଦେଖି ହରଷ ହୋଇଲେ ତହୁଁ କୁରୁବୀର
କନ୍ଧେ ବୋହି ନ ପାରିଲା ଦେବୀଙ୍କର ଭାର ।
ଦୁର୍ଯ୍ୟୋଧନ ବୋଲେ ଶୁଣ ମାତୁଳ ଶକୁନି
ଲକ୍ଷ୍ମୀଭାର ହେଲେ କନ୍ଧେ ନ ପାରଇ ଘେନି
ଶକୁନି ବୋଇଲା ବାବୁ ଘେନ ତାଙ୍କୁ ଶିରେ
ଶିରେ ବହି ଚଳେ ସେହୁ ହସ୍ତିନା ନଗରେ ।
ଦେଖିଣ ବିରସ ହେଲେ ପାଣ୍ଡବ ଅର୍ଜ୍ଜୁନ
ତୁଟିଲା ଲକ୍ଷ୍ମୀଙ୍କୁ ପୁଣି ଦେଲୁ ଜନାର୍ଦ୍ଦନ ।
ନିଶ୍ଚୟ ଦୟା ଛାଡ଼ିଲୁ ଆମ୍ଭଙ୍କୁ ଶ୍ରୀହରି
ମାନଗୋବିନ୍ଦକୁ ଆଉ କଏ ହେବ ସରି ।
କୃଷ୍ଣ ବୋଇଲେ ତୁ ବୁଝି ନାହୁଁ ଫାଲଗୁନି
ଶିରେଗତ ଲକ୍ଷ୍ମୀ ହେଲେ ହେଲା ତାର ହାନି ।

କନ୍ଦେ ଯେବେଯାଏଁ ତାର ଲକ୍ଷ୍ମୀ ହେଲେ ହତ
ଶକୁନକୁ ପଚାରିଲ ନେବ ମୁଁ କପଟ ।
ଶକୁନ ବୋଇଲା ତହୁଁ ତାହାର କଣ୍ଠରେ
ବନ୍ଧ ନ ପାରୁନ୍ତୁ ଯେବେ ମୁଣ୍ଡାଅ ମୁଣ୍ଡରେ ।
ତାର କନ୍ଦେ ଲକ୍ଷ୍ମୀ ଥିଲେ ଯେତେବେଳଯାଏ
ଅକୁଣ୍ଠ ଭବରେ ଥିଲ ଜାଣ ଧନଞ୍ଜୟେ ।
ଏବେ ଯହୁଁ ଲକ୍ଷ୍ମୀ ତାର ହେଲେ ଶିରୋଗତ
ନଷ୍ଟେ ଁ ଜାଣ ଅଳ୍ପଦିନେ ହେବ ସେହୁ ହତ
ଅର୍ଜ୍ଜୁନ ବୋଇଲେ ଦେବ ତୁହି ସର୍ବସାକ୍ଷୀ
ତୋ ଅଭାବେ ଆମ୍ଭେମାନେ ହୋଇବୁ ଦୁର୍ମାକ୍ଷୀ
ତହୁଁ ପ୍ରଣିପାତ ହୋଇ ବୋଲଇ ଜଗତି
ବହନରେ ବଜେକର ବୈନତେୟ ପିଠି ।
ଯୁଧିଷ୍ଠି ଠାକୁରଙ୍କର ଆଜ୍ଞା ପରମାଣେ
ଇନ୍ଦ୍ରପ୍ରସ୍ଥକୁ ବିଜୟ କରିବା ଏକ୍ଷଣେ ।
ଶୁଣି ଗରୁଡ ପିଠିରେ ବଜେ ଜଗନ୍ନାଥ
କୃଷ୍ଣଙ୍କ କୋଳେ ବସିଲ ବୀରବର ପାର୍ଥ ।
କୃଷ୍ଣାର୍ଜ୍ଜୁନ ଚଳଗଲେ ତହୁଁ ଅତି ବେଗେ
ବିଜୟ ଜଗମୋହନ ଇନ୍ଦ୍ରପ୍ରସ୍ଥେ ସ୍ୱର୍ଗେ ।
ବୃକ୍ଷର ତଳରେ ଦେବ ବିଜୟ ଯୁଧିଷ୍ଠି
କୃଷ୍ଣ ଆଗମନ ଦେଖି ଧାଇଁକାରେ ଉଠି ।
ଶ୍ରୀକୃଷ୍ଣ ଅର୍ଜ୍ଜୁନ ଖଗ ପିଠି କଲେ ତେଜ୍ୟା
ନଉଛୁଲ ପ୍ରଣିପାତ ହେଲେ ଦେବରଜା ।
ଯୁଧିଷ୍ଠିଦେବ ବୋଇଲେ ଉଠ ନାରାୟଣ
କର ପ୍ରସାରି ବାନ୍ଧିଲେ ତାହାଙ୍କୁ କଲ୍ୟାଣ ।
ପାଦରେ ପଡ଼ି କେଶବ କଲେ ନଉଛୁଳ
ଘ୍ରମୁରେ ଶୋଇଲେ ଗଡ଼ପାଲି ବନମାଳୀ ।
ଯୁଧିଷ୍ଠି ଭଣି ଆଚେଟ୍ୟ ହୁଅ ତୁ ବର୍ଦ୍ଧିତ
ଚିରାୟୁ ବିଜୟୀ ହୋଇ ହର ତୁହି ବର୍ତ୍ତି ।
ତହୁଁ ଆଜ୍ଞାଦେଲେ ବାବୁ ଶୁଣରେ ନକୁଳ
ପରମ କଲ୍ୟାଣ ହେଉ କୃଷ୍ଣଙ୍କୁ ତୁ ତୋଳ ।
ନକୁଳ କୋଳ କରିଣ ଉଠାଏ କୃଷ୍ଣଙ୍କୁ
ଭୁଜେ ଭିଡ଼ି ଯୁଧିଷ୍ଠିର ବସାଇଲେ ତାଙ୍କୁ ।
କୁଶଳ ବାର୍ତ୍ତା ପୁଚ୍ଛନ୍ତି ତହୁଁ ଧର୍ମରାୟେ
ଗୋବିନ୍ଦ ବୋଇଲେ ଆମ୍ଭେ ଅଛୁ କ୍ଷେମମୟେ
ପୁଣି ପୁଚ୍ଛିଲେ ପେଷିଲୁ ମଧ୍ୟପାଣ୍ଡପଣେ
ଶୁଭଶୁଭ ନ କହିଲ କେବଣ କାରଣେ ।
ଗୋବିନ୍ଦ ବୋଇଲେ ଦେବ ବିଦୁରଙ୍କୁ ଧନ୍ୟ
ଯେଉଁ ସାଧିବା ତାହାକୁ କଲା ଉତପନ୍ନ ।
ବହୁତ କହିଲା ମୋତେ ନ ଯା ଦେବରାଜ
ହସ୍ତିନା ସଭାକୁ ଗଲେ ପାଇବୁ ତୁ ଲାଜ ।
ଗୁରୁ ହେଉ ଶିଷ୍ୟ ହେଉ ହେଉ ଯେହୁ ସେହୁ
ନିଷେଧ ବାକ୍ୟ କରିଲେ ସିଦ୍ଧ ହେବ କାହୁଁ ।
ବହୁ ଜଣାଇ କହିଲ ତାଙ୍କୁ ପରମାର୍ଥ
ପଣ୍ଡିତ ହୋଇଥିଲେ ଯେ ହୁଅନ୍ତା ମୋ ଭୃତ୍ୟ
ସ୍ୱାମୀ ଯହୁଁ ନିନ୍ଦାକଲ ଦେଖା ନୋଇନ୍ତାକୁ
ତହୁଁ ବଡ଼ ଅପମାନ ହୋଇଲ ଆମ୍ଭଙ୍କୁ ।
ସଭା ମଧ୍ୟରେ କହିଲେ ନାନା କଟୁବାଣୀ
କୋପରେ ଖଡ଼ଗ ଧରି ଲେଉଟିଲେ ସେ ହାଣି ।
ତାଙ୍କ ଦୁଷ୍ଟପଣ ଦେଖି କୋପକଲ ମନେ
କରେ ଚକ୍ର ଧଇଲ ମୁଁ କରାଳ ନୟନେ ।
ଗାଙ୍ଗୋଦେବୀଙ୍କ ନନ୍ଦନ ଶ୍ରେଷ୍ଠ ମହାରଥୀ
ବହୁବିନୟେ କରାଇ ମୋର କୋପଶାନ୍ତି ।
ବହୁ ଉଚିତରେ ହେଲ ଅଭିମାନ ଘୋର
ବହାରେ ବାହାରେ ଗଲ ଦ୍ୱାରବତୀ ପୁର ।
ସ୍ୱାମୀ କଦାଚ ନୋହିଲ କାର୍ଯ୍ୟରେ ସୁଫଳ
ଶୁଣିଣ ଯୁଧିଷ୍ଠିଦେବ ହୋଇଲେ ବ୍ୟାକୁଳ ।
ବୋଇଲେ ଉଠରେ ଭୀମ ନକୁଳ ଅର୍ଜ୍ଜୁନ
କୃଷ୍ଣ ଅପମାନ ଧିକ ଅଟେ ଏ ଜୀବନ ।
ସ୍ୱାମି ଦୃଢ଼ବାକ୍ୟ ଶୁଣି ପବନର ବଳା
ଗଦାବରକୁ ଧରନ୍ତେ କମ୍ପେ ମହାଖଳା
ଯୁଧିଷ୍ଠି ବୋଇଲେ ମୋର ଏହି ଅନୁକୂଳ
ଧୌମ୍ୟ ପୁରୋଧା ବୋଇଲେ କୋପ ତୁ ସମ୍ଭାଳ
ପୁରୋଧା ବୋଇଲେ ଆଗେ ହସ୍ତେ ଯେ ପଶଇ
ହତ୍ୟା ଦୋଷମାନ ତାର କଣ୍ଠରେ ବସଇ ।
ବାବୁ ସେମାନଙ୍କ ପାଇଁ ହେଉଛୁ ଅନର୍ଥୀ
ତୋ ତହୁଁ ସଂଗ୍ରାମ ଶ୍ରଦ୍ଧା କରେ କୁରୁପତି ।
ଅତଏବ ସଂଗ୍ରାମକୁ ନୁହ ତୁ ଅଗ୍ରଣୀ
ମାନଗୋବିନ୍ଦର ଦୂତ ଆସିବ ଏକ୍ଷଣି ।
ଏମନ୍ତ ସମୟରେ ସେ ମାନଚକ୍ରବର୍ତ୍ତୀ
ସର୍ଲିଂକୁ ହକାରିଲ କୁଳକ୍ଷୟ ମନ୍ତ୍ରୀ ।
ବୋଇଲ ହେ ମମୁଁ ଯାଅ ପାଣ୍ଡବ ତହିଁକ
ଧାଇଁଯାଇ ଡାକଆଣ ସଂଗ୍ରାମ ଲଗିକ ।

ଯେତେ ସୁହୃଦ ଅଛନ୍ତି ଆସନ୍ତୁ ତା ସଙ୍ଗ
କୁରୁକ୍ଷେତ୍ରକୁ ବାଣ୍ଟିବା କରି ତିନିଭାଗ ।
କୁରୁ ରଜାଙ୍କର ଆଜ୍ଞା ମସ୍ତକରେ ଘେନି
ଇନ୍ଦ୍ରପ୍ରସ୍ଥରେ ମିଳିଲା ଯାଇଣ ଶକୁନି ।
ଯମୁନାନଦୀର କୂଳେ ପାଣ୍ଡବ ବିଜୟେ
ସନ୍ନିଧେ ଭେଟିଲା ଯାଇ ମନ୍ତ୍ରୀ କୁଳକ୍ଷୟେ ।
ତାହାଙ୍କର ଅଗ୍ରତରେ କହିଲା ଶକୁନି
ସମର ଭୂମିକି ଆସ ଅନୁକୂଳ ଘେନି ।
ଅଥବା ସନ୍ଧି କରାଇ କହୁଛି ତୁମ୍ଭଙ୍କୁ
ଭାଇଙ୍କୁ ଘେନି ସମୟେ ଯାଅ ଅରଣ୍ୟକୁ ।
ହେ ଯୁଧିଷ୍ଠିର ଦଶବର୍ଷ ବାଳବୁଦ୍ଧି ଥାଇ
ବିଂଶ ବରଷରେ ସ୍ତିରୀ ମେଳକୁ ଇଚ୍ଛଇ ।
ପଚିଶ ବରଷେ ସବୁ ସୁନ୍ଦରକୁ ଇଚ୍ଛା
ତିରିଶ ବରଷେ ହୁଏ ବିଚକ୍ଷଣ ବାଞ୍ଛା ।
ଚାଳିଶ ବର୍ଷେ ତରୁଣ ବୁଦ୍ଧି ବିକାଶଇ
ଦେବ ପିତୃଲୋକରେ ସେ ଭକତି କରଇ ।
ଧନ ସନ୍ତାନକୁ ସେହୁ କରେ ବହୁ ଚିନ୍ତା
ଦାତବ୍ୟ ପଣରେ ସେହୁ ହୁଅଇ ଶକତା ।
ପଞ୍ଚାଶ ବରଷ ହେଲେ ଖସଇ ତା ତନୁ
ଷାଠିଏ ବରଷ ହେଲେ ତରଳଇ ମନୁ ।
ସତୁରି ବରଷେ ସେହୁ ହୁଅଇ ଦୁର୍ବଳା
ଗୁରୁ ଗଉରବ ମନ କରଇ ମୁକୁଳା ।
ଭ୍ରମ ଜନ୍ମି ବିଚଳିତ ହୋଇଯାଏ ମନ
ଅଶୀ ବରଷେ ହୁଅଇ ସେହୁ ଦୃଷ୍ଟିହୀନ ।
ପରାପର ନ ଚିହ୍ନଇ ନବତି ବରଷେ
ବାଳୁତର ବୁଦ୍ଧି ପୁଣି ଆସିଣ ପ୍ରକାଶେ ।
ନମସ୍କାର କଲେ ପୁତ୍ର ତାକୁ ନ ଚିହ୍ନଇ
ବୋଲଇ କାହୁଁ ଅଇଲୁ ବାବୁ ଘର କାହିଁ ।
ଶଏ ବରଷରେ ତାର ଲଇଁଯାଏ କଟି
ଭୂମିରେ ଦୃଷ୍ଟି ଦେଇଣ ଚାଲେ ଧରି ଯଷ୍ଟି ।
ପୁତ୍ର ନାତି ଦେଖି ଶତ୍ରୁ ପରାୟେ ମଣଇ
ଦେବତା ବ୍ରାହ୍ମଣ ଆଦି କାରେ ନ ଗଣଇ ।
ଅତି ଦୁଃଖେ ବିଶାଶଏ ବରଷ ବଞ୍ଚନ୍ତି
ନାନା ପାପ କଲେ ମଧ୍ୟ ନାହିଁ ଯମ ଶାସ୍ତି ।
ମନ୍ତ୍ରୀ ବୋଲେ ବିପରୀତ ଦେଖଇ ସଂସାର
ପୁଣି ବୋଲୁ ତାରେ ଜଳ ସମାଚାର ।

ଆହେ ବାବୁ ରାଗ ମୋହ ଅହଙ୍କାର ବାଦେ
ଗତାଗତ ପାତକରେ ନ ଶଯାନ୍ତି ହାଦେ ।
ଯୁଧିଷ୍ଠିର ବୋଇଲେ କସ ସଂସାରକୁ ନିନ୍ଦା
ତୋହପରି ମନ୍ତ୍ରୀ ହୋଇ ଲଗାଇଲୁ ଧନ୍ଦା ।
ଶକୁନି ବୋଇଲା ବାବୁ ତୁ ନ ଚିହ୍ନୁ ମୋତେ
ସହଦେବ ଜାଣିଅଛୁ ମୋ ବିଷୟ ଯେତେ ।
ଯୁଧିଷ୍ଠିର ବୋଇଲେ ଶତେ ବରଷ ଆୟୁଷ
ଅଳପକେ ନାଶଯାନ୍ତି ତାଙ୍କର କି ଦୋଷ ।
ବାଳକ ଅଜ୍ଞାନ ପାପ ପୁଣ୍ୟ ତାଙ୍କ ନାହିଁ
ସେ କପାଇଁ ନାଶଯାନ୍ତି ଜ୍ଞାନହୀନ ହୋଇ ।
ଶକୁନି ବୋଇଲା ତେବେ ଶୁଣ ଧର୍ମ ରାୟେ
ତହିଁର ଚରିତ ତୋତେ କହିବା ଥୋକାଏ ।
କୃଷ୍ଣବେଣୀ ନଦୀତଟରେ କାମପୁର ଗ୍ରାମ
ତହିଁ ଏକ ଶୂଦ୍ର ଥାଏ ମେଳକ ତା ନାମ ।
ଅଜ୍ଞାନ ଅଳସୁଆ ସେ କରେ ଗ୍ରାମ ସେବା
ଏହା ଛଡ଼ା ନ ଜାଣଇ ଜଣେ ବନେ ଯିବା
ଗୋଟାଏ କାଠ ଭାଙ୍ଗିଣ ପକାଏ ସେ ଘରେ
ଭାରିଯା ବିକଇ ତାକୁ ନେଇଣ ହାଟରେ ।
ସବୁ ତାକୁ ଦେଇ ଅଳ୍ପ ଭୁଞ୍ଜଇ ଘରଣୀ
ପୁତ୍ରାଦି ନାହାନ୍ତି କେହି ଥାନ୍ତି ଦୁଇ ପ୍ରାଣୀ ।
ଏହିରୂପେ କିଛିକାଳ ତହିଁ ଗଲା ବହି
କାଠଭଙ୍ଗା ଛଡ଼ା ତାର କିଛି ବିଦ୍ୟା ନାହିଁ ।
ବିରୁଦ୍ଧ ବୋଲିଣ ଜାଣ ଶୁକ୍ଳ ସମ୍ବତ୍ସରେ
ଶରତ ଋତୁ ଅଟଇ ଆଶ୍ୱିନ ମାସରେ ।
ଦ୍ୱିତୀୟା ଭୃଗୁବାର ଯେ ସ୍ୱାତୀ ନକ୍ଷତ୍ରରେ
ବଡ଼ ଏକ ବୃଷ୍ଟି ହେଲା ସେ ଦିନ ସନ୍ଧିରେ ।
ଏକେ ଅଳସୁଆ ସେହୁ ବିଶେଷରେ ଝଡ଼
ଦିନଗୋଟିକ ଶୋଇଲା ଉପବାସେ ପଡ଼ ।
ଭାରିଯା ବୋଇଲା ବେଳ ଉଛୁର ହେଉଛି
ଦିନ ଗଲା ନ ଆଣିଲ ବନୁ କାଠ କିଛି ।
ଭାରିଯା ବଚନ ଶୁଣି କୁଠାରକୁ ଘେନି
ଘରୁ ବାହାରିଲା ବେଳ ଅଛି ଦଣ୍ଡ ତିନି ।
ନଗର ବାହାରେ ଅଛି ମଣ୍ଡପ ଗୋଟିଏ
କୁଠାରକୁ ଶିର ଦେଇ ଶୋଇଲା ସେଠାଏ ।
ଧଳରେ ଗଡ଼ ଶୁଅନ୍ତେ ବେଳ ଅସ୍ତଗଲା
ଦୁଷ୍ଟ ଶବଦ ହୁଅନ୍ତେ ଚିଆଁଇ ଉଠିଲା ।

ଭାଳଇ ସେ ଅଳସୁଆ କି ବୁଦ୍ଧି କରିବ
କାଠ ନ କାଟି କେମନ୍ତେ ଘରକୁ ମୁଁ ଯିବ ।
ଝଡ଼ ଯୋଗେ ନ ଆସନ୍ତି ପ୍ରାଣୀ ତହିଁ କେହି
କୁଠାର ଧେନି ଦେଉଳେ ପଶିଲାକ ଯାଇଁ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନୋଟି ମୂରତି
ଦାରୁମୂର୍ତ୍ତି ମଣ୍ଡପରେ ବିଜେ କରିଛନ୍ତି ।
ସାତହାତ ଉଚ୍ଚ ଆଉ ତିନିହାତ ମୋଟ
ବିଚାରଇ ଅଳସୁଆ ଏ ତ ଶୁଷ୍କକାଠ ।
ବିଷ୍ଣୁ ପ୍ରତିମା ଗୋଟିକି ପକାଇଲା ତଳେ
ଅସ୍ତ୍ର ଉଞ୍ଚାଏ ହାଣିବି ବୋଲେ ବକ୍ଷସ୍ଥଳେ ।
ପ୍ରତିମା ଭିତରୁ ବିଜେକଲେ ଜଗନ୍ନାଥ
ରହ ଅଳସୁଆ ବୋଲି ଧଇଲେ ତା ହସ୍ତ ।
ଆରେ ତୁହି ପାପ ପୁଣ୍ୟ ଟିକେ ନ ବିଚାରୁ
ଆମ୍ଭେ ଦେବତା ଆମ୍ଭଙ୍କୁ କଦର୍ଥନା କରୁ ।
ସଂସାରଯାକ ପୂଜନ୍ତି ଆମ୍ଭଙ୍କୁ ଆଦରି
ଦେଖିଦେଖି କରୁ ତୁହି ଏଡ଼େ ମନ୍ଦବୁଦ୍ଧି ।
ଅଳସୁଆ ବୋଲେ ମୂର୍ଖ ଦରିଦ୍ର ଅଟଇ
ଦେବତା ବ୍ରାହ୍ମଣ ବୋଲି ମୋର ଜ୍ଞାନ ନାହିଁ ।
ଛାଡ଼ ତୁ ମୋହର ହସ୍ତ ଚିରିବି ଏ କାଠ
ସୁସ୍ଥ ହେବୁ ଦୁଇପ୍ରାଣୀ ଯିବ ଅନ୍ନକଷ୍ଟ ।
ଏ ତିନମୂର୍ତ୍ତି ହୋଇବ ମୋର ଦିନାଗୁର
ଏତେକ ବରଷା କାଳ ମୋର ଯିବ ସରି
ଆରେ ମୂର୍ଖ ଆମ୍ଭେ ଅଟୁ ବିଷ୍ଣୁ ଦେବ କିନା
ଆମ୍ଭଙ୍କୁ ମାଇଲେ ହେବୁ ତୁହି ନାଶ ଯିନା ।
ଅଳସୁଆ ବୋଲେ ଯେବେ ତୁ କୃଷ୍ଣ ମୂରତି
ତେବେ ଖଣ୍ଡନ କରଅ ମୋର ଅନ୍ନ ଶାସ୍ତି ।
କୁଣ୍ଡଳ ପାଞ୍ଚମାଣ ସେ ପାଞ୍ଚବୋଡ଼ି କୌଡ଼ି
ଏତେକ ଦେଲେ ବଞ୍ଚିବି ଏ ମାସକ ଝଡ଼ି ।
କୃଷ୍ଣ ବୋଇଲେ ଗଣେଶ ଛନ୍ତି ଦକ୍ଷିଣରେ
କଉଡ଼ି କୁଣ୍ଡଳ ଥିବ ତାହାଙ୍କ ପଛରେ ।
ତହୁଁ ଦାରୁମୂର୍ତ୍ତି ନେଇ ବସାଇ ସ୍ୱସ୍ଥାନେ
ଚଳିଗଲା ଅଳସୁଆ ଆନନ୍ଦିତ ମନେ ।
ରଜନୀ ବଡ଼ଏ ଥାଉଁ ଉଠିଗଲା ବେଗେ
ଦେଖେ କଉଡ଼ି କୁଣ୍ଡଳ ଅଛି ପଛଭାଗେ
ସେ କଉଡ଼ି କୁଣ୍ଡଳକୁ ଆଣେ ବେଗେ ଘେନି
ଏମନ୍ତେ ବଞ୍ଚିଲା ବର୍ଷା ଝଡ଼ ଦିନ ତିନି ।

ଝଡ଼ ଛାଡ଼ିଲା ନ ଦେଲେ ଆଉ ନାରାୟଣ
ତହୁଁ ଚିରିବାକୁ ଗଲା ସେ ବରାହ ପୁଣ ।
ଚିରିବା ଉଦ୍ୟମ କରୁ କୃଷ୍ଣ ହେଲେ ବିଜେ
ରହ ରହ ବୋଲି ଆଜ୍ଞା କଲେ ଦେବରାଜେ
ବୋଇଲେ ଝଡ଼ର ଯୋଗେ ଚିରି ନେଉଥିଲୁ
ପୁଣି ଆସି କି ନିମନ୍ତେ କଟାଳି ତୁ କଲୁ ।
ଅଳସୁଆ ବୋଇଲା ମୁଁ ଭୋକିଲା ରହିଲି
କେବେ ହେଁ ସୁସ୍ଥରେ ମୁହିଁ ଅନ୍ନ ନ ପାଇଲି
ମୋତେ ଯେବେ ସୁପ୍ରସନ୍ନ ହେଲେ ଜଗନ୍ନାଥ
କଉଡ଼ି କୁଣ୍ଡଳ ଦେବ ବଞ୍ଚିବା ପର୍ଯ୍ୟନ୍ତ ।
ତଥ୍ୟେ ନାରାୟଣ ତହୁଁ କଲେ ସନମତ
ବୋଇଲେ ତୁ ନେଉଥିବୁ ଗଣପତି କତି ।
ବାହୁଡ଼ାଇ ନିଜସ୍ଥାନେ ବସାଇଲା ପୁଣ
ଚଳିଗଲା ଅଳସୁଆ ନିଜ ମନ୍ଦିରେଣ ।
ରଜନୀର ପାହାନ୍ତିଆ ଆସେ ତା ଘରଣୀ
କୁଣ୍ଡଳ କଉଡ଼ି ନିଏ ପ୍ରତିଦିନ ଗଣି ।
ସମସ୍ତେ ସେ ଅଳସୁଆ କଲା ଉପବାସ
ସେ ନଗର ଲୋକମାନେ ତାକୁ କଲେ ଆଶ ।
ଅନନ୍ତ ବୋଲି କରଣ ତା ଘର ପଡ଼ିଶା
ସେ ଗ୍ରାମ ଲୋକଙ୍କ କୃଷି କରଇ ସେ ଚଷା ।
ଲୀଳା ନାମକ ଅଟଇ ତାହାର ଘରଣୀ
ବାଳକାଳୁ ଅଳସୁଆ ପ୍ରିୟ ସଙ୍ଗାତୁଣୀ ।
ଅନନ୍ତକୁ ପଚାରିଲେ ତାହାର ଭାରିଯା
ଅଳସୁଆ କରେ ନାହିଁ ଏବେ ଘର ତେଜ୍ୟା ।
ଭଲକରି କରିଲାଣି ଚାରି ଘର ଗୋଟି
ଆମ୍ଭଙ୍କୁ ନ ଅଣ୍ଟେ କିପାଁ ଦିନରାତି ଖଟି ।
ଅନନ୍ତା ବୋଇଲା ବଡ଼ ଦୁର୍ଲ୍ଲଭ ଏ କଥା
ତାର ଭାର୍ଯ୍ୟାକୁ ପଚାର ଏଥିର ବାରତା ।
ଦିନେ ଅଳସୁଆ ଭାର୍ଯ୍ୟା ଏକା ଅଛି ବସି
ଅନନ୍ତା ଭାର୍ଯ୍ୟା ପୁଚ୍ଛଇ ହୋଇଣ ବିଶ୍ୱାସି ।
ଏବେ ତୋ ଗୃହସ୍ଥ ଦୁଃଖେ ନ ଯାଆନ୍ତି କାହିଁ
ଏତେ ସମ୍ପଦ ଅର୍ଜ୍ଜିଲୁ କେଉଁପରି ସହି ।
ବଢ଼ିତ ବିଶ୍ୱାସ କରି ପଚାରଇ ଭାବେ
ତହୁଁ କହି ବସିଲା ସେ ସଖୀଙ୍କ ସ୍ୱଭାବେ ।
ଶୁଣ ଗୋ ସଙ୍ଗାତ ବଡ଼ ଦୁର୍ଲ୍ଲଭ ଏ କଥା
ମୋର ସ୍ୱାମୀ ଚହୁଥିଲେ [illegible] ଦେବତା ।

ଚହ୍ନି ଡରେ ସତ୍ୟକଲେ ଦେବ ଜଗନ୍ନାଥ
ଶୃଙ୍ଖଳ କଉଡ଼ି ସେହି ଦେଉଛନ୍ତି ନିତ୍ୟ ।
ଦୁଇମାଣ ଦୁଇବୋଡ଼ି ହୁଅଇ ଆହାର
ତିନିମାଣ ତିନିବୋଡ଼ି ବଞ୍ଚଇ ଆମ୍ଭର ।
ତେଣୁକରି ସଙ୍ଗାତ ଗୋ ସ୍ୱଚ୍ଛେ ଅଛୁ ରହି
ଶୁଣି ଅନନ୍ତାର ଭାର୍ଯ୍ୟା ଉଠିଣ ଆସଇ ।
ଅନନ୍ତ ଶୂଦ୍ରର ଆଗେ କହେ ସର୍ବକଥା
ତାର ଲୋଡ଼ିଲେ ସମ୍ପଦ ଦିଅନ୍ତି ଦେବତା ।
ଚହ୍ନି ସେ ଅନନ୍ତା ବେଗେ କୁଠାରକୁ ଘେନି
ଦେଉଳ ଭିତରେ ଯାଇ ପଶିଲା ରଜନୀ ।
ଆକର୍ଷି ଧଇଲା ଯାଇ ରୁଦ୍ର ଦେବତାଙ୍କୁ
ତଳେ ପକାଇ କୁଠାର ଘେନି ହାଣିବାକୁ ।
ଲହଲହ ଜିହ୍ୱା କରି ଅତି ବିକଟାଳ
ପ୍ରତିମାରୁ ବାହାରିଲେ ଶ୍ରୀଦେବ ସୁଢ଼ାଳ ।
ବୋଇଲେ ନିଶ୍ଚେ ତରିବ ତୋହର ମୁଁ ବୁଝୁ
ତୁ କିପାଇଁ ତରିବାକୁ ଲୋଡ଼ୁଛୁ ଆମ୍ଭଙ୍କୁ ।
ବିକଟାଳ ରୂପ ଦେଖି ହାସିଲା ଅନନ୍ତା
ବୋଲେ ଅଳସୁଆ ପ୍ରତି ତୁମ୍ଭେ ହେଲ ଦାତା
ତାକୁ ଶୃଙ୍ଖଳ କଉଡ଼ି ଦେଉଅଛ ନିତି
ମୋତେ କିପାଁ ଦେଖାଉଛ ଭୟଙ୍କର ମୂର୍ତ୍ତି
ବଦସୂନ୍ତି ତ୍ରିପୁରାରି ଶୁଣରେ କୃଷକ
ଧର୍ମ କେମନ୍ତେ ଲଙ୍ଘିବ ତୋହପରି ଲୋକ ।
ଅଳସୁଆ ମୂର୍ଖ ପୁଣି ଆରେ ମନ୍ଦଜାତି
ଦୁଷ୍ଟଲୋକଙ୍କୁ ଦେଖିଲେ ଦେବତା ଡରନ୍ତି
ଦୁଃଖେ କଷ୍ଟେ ପଡ଼ି ମଧ୍ୟ ବୁଦ୍ଧି ଅଛି ତୋର
ସନ୍ଦ ବା ନ ଜାଣୁ ତୁହି ଶାସ୍ତ୍ର ବ୍ୟବହାର ।
ତୁହି ଅଟୁ ଦେବତୁଲ୍ୟ ସେ ଅଟେ ରାକ୍ଷସ
ରାକ୍ଷସଙ୍କୁ ଦେଖି ଭୟ କରନ୍ତି ଅବଶ୍ୟ ।
ଦୁଃଖେ କଷ୍ଟେ ପଡ଼ି ତୁହି ନାରାୟଣ ଭକ୍ତ
ଏପରି ଲୋକଙ୍କୁ ନୁହେ ଏ କାର୍ଯ୍ୟ ଉଚିତ ।
ଆମ୍ଭଙ୍କୁ ଡରାଇ ସେହୁ ଦେଉଅଛି କଷ୍ଟ
କଷ୍ଟ ପାଇବ ମରଣ ଅନ୍ତେ ସେହୁ ଦୁଷ୍ଟ ।
ପାପ ପୁଣ୍ୟକୁ ତୋହର ନଷ୍ଟେ ଅଛୁ ଡର
ଆର ଜନ୍ମକୁ ହୋଇବୁ ସାଧବ କୁମର ।
ସ୍ୱାମୀଙ୍କ ମୁଖରୁ ଏହି ବାକ୍ୟମାନ ଶୁଣି
ବାହୁଡ଼ି ସେ ଦାରୁରୂପ ବସାଇଲା ଆଣି ।

କୁଠାର ଘେନି ପ୍ରବେଶ ହେଲା ନିଜ ପୁରେ
ଭାରଯାକୁ ବୋଲେ ଭୟ ଜନ୍ମିଲା ମନରେ ।
ଦେଖୁ ଦେଖୁ ବସ୍ତୁଙ୍କୁ ମୁଁ ତରିବ କେମନ୍ତେ
ଅନାହାରେ ଯାଉ ପ୍ରାଣ ନୋହିବ ମୋ ହସ୍ତେ
ସେହି ଅଳସୁଆ ଚହ୍ନିଁ ଭୋଗ ଭୁଞ୍ଜୁଥିଲା
ସମସ୍ତ ଆସନ୍ତେ ତାକୁ କାଳ ଗ୍ରାସ କଲା ।
ଯମ କିଙ୍କର ତାହାକୁ ଧରି ନେଇ ଗଲେ
ଯମକୁ ଦିଅନ୍ତେ ଯମ ବହୁଦଣ୍ଡ ଦେଲେ ।
ଅନନ୍ତା ଶୂଦ୍ର ମରନ୍ତେ ଘଟିଲା ଦୁର୍ଗତି
କାଞ୍ଚନଗ୍ରେ ହୋଇଲା ସେ ରାଜଚକ୍ରବର୍ତ୍ତୀ ।
ଏହା କହିଣ ଶକୁନି ପୁଣି ବୋଲେ ଗିର
ଅଳସୁଆ ପ୍ରାୟ ଅଟେ ଅନ୍ଧର କୁମର ।
ତୁହି ଯେ ଅଟୁ ଦରିଦ୍ର ଅନନ୍ତା'ର ପରି
ପାରିବୁ ତୁ କାହିଁ ପାପ ଆଚରଣ କରି ।
ଭୋଗ ଭୁଞ୍ଜୁଥିଲା ବସି ଅଳସୁଆ ମଲା
ଯମ ଦେବତା ତାହାକୁ କି ଦୁଃଖ ନ ଦେଲା ।
ତୁହି ଏବେ ପାଉଅଛୁ ଯେଉଁପରି ଦୁଃଖ
ସେହି ପରିମାଣେ ହେବ ତୋ ପରମ ସୁଖ ।
ଛାଡ଼ ଆହେ ମହାରାଜା ଦୁଃଖ କର ତେଜ୍ୟା
ପୁଣି କଷ୍ଟଦନ ପାଇଁ ବନବାସ ଯା ଯା ।
ଶକୁନି ବଚନ ପୁଣି ବୋଲେ ଧର୍ମରାୟେ
ମୁହିଁ ବନବାସେ ଗଲି ହିମବନ୍ତ ଯାଏ ।
ମୋହର ଅଜଣା ନାହିଁ କଉଣସି ତୀର୍ଥ
ଏବେ ମାମୁଁ ଦେଖିବ ମୁଁ କଷ୍ଟ କଷଟି ବୃତ୍ତ ।
କେଉଡ଼େ ଶକତ ଅଟଇ ଧୃତରାଷ୍ଟ୍ର ବାଳ
ତାହାକୁ ଦେଖିବ ମାମୁଁ ଏଥର କେବଳ ।
ତୁ ପଣ୍ଡିତ ମହାମନ୍ତ୍ରୀ କହ ତୋର ବୁଦ୍ଧି
ଆଉ କଦାଚ ନୋହିବ ଜାଣିଥାଅ ସନ୍ଧି ।
ତୋର ହିତପଣ ମାମୁଁ ଜାଣିବା ନା ଭଲେ
ସମସ୍ତେ କୌରବେ ଯାନ୍ତୁ ବନବାସ ଭଲେ
ଆମ୍ଭେ ସମସ୍ତେକ ପାଞ୍ଚରାଜ୍ୟେ ହେଉଁ ରାଜା
ଏହି କଥା ଭଲରୂପେ ସ୍ଥିରକର ଯା ଯା ।
କଥା କହୁଁ କହୁଁ ରବି ଅସ୍ତାଚଳେ ଗଲେ
ବାସୁଦେବ ସହଦେବ ଶକୁନି ମିଳିଲେ ।
ଶକୁନି ବୋଇଲା ଦେବ ଶୁଣ ଜଗନ୍ନାଥ
କୁରୁପାଣ୍ଡବଙ୍କ ସନ୍ଧି ହେ.ଇବ କେମନ୍ତ ।

କୃଷ୍ଣ ବୋଇଲେ କେମନ୍ତ ତୁ ବିଚାରି କହୁ
ସନ୍ଧି ବିସନ୍ଧି ସକଳ ସବୁ କରିପାରୁ ।
ଶକୁନି ବୋଇଲା ହରି ତୋହର ପ୍ରସାଦେ
କୁରୁ ପାଣ୍ଡବଙ୍କୁ ଏକ କରିପାରେ ହାଦେ ।
ତୁହି ଯେଉଁରୂପେ ଆଜ୍ଞା ଦେବୁ ବାସୁଦେବ
ତୋହର ଆଜ୍ଞା ପ୍ରମାଣେ ବର୍ତ୍ତୁ ଆମ୍ଭେ ସବ ।
ଭାରାଭାର ନିବାରଣ କରିବା ନିମନ୍ତେ
ଭୀମ ଅରଜୁନ ଆଦି ଜନ୍ମ ଏତଦର୍ଥେ ।
ପଞ୍ଚଭ୍ରାତା ସହ ମୁହିଁ ଅଟେ ଏକଆତ୍ମା
ଯୁଧିଷ୍ଠିର ଦେବ ତହିଁ ପରମ ମହାତ୍ମା ।
ହରି ଅଭୟ ବୈକୁଣ୍ଠ ଅଟ ଦେବରାୟ
ଦ୍ୱାରପାଳ ମୁହିଁ ଭୀମ ମନ୍ତ୍ରୀ ଧନଞ୍ଜୟ ।
ଗଜେନ୍ଦ୍ରବୀର ନକୁଳ ତୋ ଆଜ୍ଞା ପ୍ରମାଣେ
ମହାଭାର ଉଶ୍ୱାସିବା ଆମ୍ଭେ ଷଡ଼ଜଣେ ।
ଅଥବା ଭାର ଉଶ୍ୱାସେ ନାହିଁ ଯେବେ ମତି
ଆଜ୍ଞା ଦିଅ ଦୁଇକୁଳେ କରାଇବି ପ୍ରୀତି ।
ମୁହିଁ ସହଦେବ ଆଉ ବାସୁଦେବ ତେନେ
ପାଣ୍ଡବଙ୍କ ହିତେ ଆମ୍ଭେ ବହିଥାଉଁ ଭିନେ ।
ଗୋବିନ୍ଦ ବୋଇଲେ ଭାର ନିବାରଣ ହେଉ
ଏ ସକଳ ଥିଲେ କଳି ଭୋଗ ଦେବ କାହୁଁ ।
ଶକୁନି ବୋଇଲା ହରି ହୁଅ ଅଗ୍ରସର
ସଂଗ୍ରାମ ଭୂମିକୁ ଏବେ ଅନୁକୂଳ କର ।
ସଂଶୟ ଫିଟାଇ ହରି କହୁଅଛୁ ତୋତେ
ପାଣ୍ଡବେ ପୂର୍ବବରକୁ ପାଆନ୍ତି ଯେମନ୍ତେ ।
ଭୀଷ୍ମ ନିମନ୍ତେ ଶିଖଣ୍ଡୀ କର ସେନାପତି
ଦ୍ରୋଣପାଇଁ ଧୃଷ୍ଟଦ୍ୟୁମ୍ନ ନିଷ୍ଟିନ୍ତ ଅଛନ୍ତି ।
କର୍ଣ୍ଣ ପାଇଁକି ଅଛନ୍ତି ବୀର ଧନଞ୍ଜୟ
ଯୁଧିଷ୍ଠିର ହାତେ ଶଲ୍ୟ ନିଶ୍ଚେ ହେବ କ୍ଷୟ ।
ଦୁର୍ଯ୍ୟୋଧନ ଶତଭାଇ ପାଇଁ ଅଛୁ ଭୀମ
ଭୂରିଶ୍ରବାକୁ ଅଛନ୍ତି ସାତ୍ୟକି ମହାତ୍ମା ।
କୌରବଙ୍କ ମୃତ୍ୟୁଚକ୍ର କହେ ମନ୍ତ୍ରୀବର
ତାହାଙ୍କୁ ବିଧ୍ୱଂସ କର ପୃଥ୍ୱୀଭାର ହର ।
ଆହେ ହରି ସହଦେବ ମୋତେହିଁ ବିନାଶିବ
ଏମନ୍ତ କଥା ପୂର୍ବରୁ ଲିଖିଛୁ ଦଇବ ।
ଗୋବିନ୍ଦ ବୋଇଲେ ମନ୍ତ୍ରୀ ଥିବୁ ନା ସମୟେ
ଆମ୍ଭର ଭଲେ ପଛକେ ଯିବୁ ସ୍ୱର୍ଗଯାଏ ।

ମନ୍ତ୍ରୀ ବୋଲେ ଦୁର୍ଯ୍ୟୋଧନ ଯେଉଁ ମହାରାଜା
ଗାନ୍ଧାରୀ ନନ୍ଦନ ସେହି ମୋହର ଭଣଜା ।
ମୋ ବଂଶଯାକ ପାଷାଣ ଗୃହ ମଧ୍ୟେ ଭରି
ଅଦୋଷେ ବଂଶ ମୋହର ପକାଇଲା ମାରି ।
ମୁଁ ପୁତ୍ର ପିତୃଲୋକଙ୍କୁ କାରଣ କରିବ
ଭଗ୍ନୀପୁତ୍ର ଭଣଜାର ବଂଶ ମରାଇବ ।
ମୋର ବଂଶ ମରାଇଛୁ ରାଜା ଦୁର୍ଯ୍ୟୋଧନ
କାହାର ବଳେ ସେ କଥା ନ ହୋଇଲା ଆନ
ମାମୁଁ ଯୋଗେ ଭଣଜାକୁ ପଡ଼ିଲେ ପ୍ରମାଦ
ଏ ଦୋଷ ସମ ଗୋ ଦ୍ୱିଜ କଲେ ଶିରଚ୍ଛେଦ
ଶତକୋଟି ଭଣଜାକୁ ମରାଇବି ମୁହିଁ
ଶତ ଗୋହତ୍ୟାର ଦୋଷ ନିଶ୍ଚେ ପାଇବଇଁ ।
ଅପାର ଦୋଷ ଯଦ୍ୟପି ହୋଇବ ହେ ମୋତେ
ଅଛି କାରଣ ପାଇବ ପାଣ୍ଡବଙ୍କ ହିତେ ।
ହରି ତୋର ମୁଖ ଗୁହିଁ ସମରେ ପଡ଼ିଲେ
ନାନା ପାତକ ଖଣ୍ଡିବ ରଣ ଯୋଗ କଲେ ।
ପ୍ରକୃତ କଥାକୁ ଯହୁଁ କହିଲା ଶକୁନି
ଶୁଣି ସନ୍ତୁଷ୍ଟ ହୋଇଲେ ଦେବ ଚକ୍ରପାଣି ।
ଚଳିଲା ଶକୁନି ମନ୍ତ୍ରୀ ଆପଣା ଆଳୟେ
ପୁରେ ଯେଉଁ କଥା ହେଲା ଶୁଣ ମନୁରାୟେ ।
ବାସୁଦେବ ସହଦେବ ଏକତ୍ର ବସିଣ
କଳିକାଳ ପୁରୁଷକୁ କଲେ ସୁମରଣ ।
ସେ ବେଳେ ଶ୍ରୀକୃଷ୍ଣ ପାଦେ ହୋଇ ପରଣାମି
ବୋଇଲେ କପାଁ ସ୍ମରଣ କଲ ଦେବସ୍ୱାମି ।
କୃଷ୍ଣ ବୋଇଲେ ଦ୍ୱାପରଯୁଗ ଶେଷ ହେଲା
କଳିଯୁଗ ବର୍ତ୍ତମାନ ଆସି ପ୍ରବେଶିଲା ।
କୁରୁ ପାଣ୍ଡବ ଥାଆନ୍ତେ ତୋତେ ଭୋଗ କାହିଁ
ଏମାନେ ନାଶ ହୋଇଲେ ରାଜା ହେବୁ ତୁହି
କାଲି କୁରୁକ୍ଷେତ୍ର ଦୁଇ ଭାଗ ଯେ ହୋଇବ
ବିଦୁର ମଧ୍ୟସ୍ଥ ହୋଇ ଗୁଳା ତହିଁ ଦେବ ।
ତୁମ୍ଭେ ଦୁହେଁ ଦୁଇଖଣ୍ଡେ ସ୍ୱର୍ଣ୍ଣକାଠି ହୋଇ
ପଡ଼ିଥିବ କୁରୁକ୍ଷେତ୍ର ମଧ୍ୟସ୍ଥଳ ଭୂଇଁ ।
ଯୁଧିଷ୍ଠିର ଦେବ ଯେଉଁ ଖଣ୍ଡିକି ନେବ
ସତନେ ପୂର୍ବଭାଗର ଈଶାନେ ପଡ଼ିବ ।
ପଶ୍ଚିମ ଭାଗେ ପଡ଼ିବ ଦୁର୍ଯ୍ୟୋଧନ କାଠି
ତେବେ ମୀମାଂସା ହୋଇବ ବିଭାଗ ଅଇଷ୍ଟି ।

ଅଜ୍ଞା ପାଇବା ମାତ୍ରକେ କଳିକାଳ ବେଦ
କୁରୁକ୍ଷେତ୍ରରେ ପଡ଼ିଲେ ଅନୁକୂଳ ଯେତ୍ର ।
କନ୍ୟା କୃଷ୍ଣ ଦ୍ୱାଦଶୀ ଯେ ସୋମବାର ଦିନ
ପୂର୍ବା ଫାଲ୍‌ଗୁନୀ ନକ୍ଷତ୍ର ଅଟେ ବିଦ୍ୟମାନ ।
ତୈତିଳ ନାମେ କରଣ ଶୁକ୍ଳ ନାମେ ଯୋଗ
ବୃଷ୍ଟି ସଂକ୍ରାନ୍ତି ଯାଇ ଚୌଦଦିନ ଭୋଗ ।
ସେହି ଦିନ ପାଞ୍ଚଘଡ଼ି ଥାଉଁ କଉରବେ
ସୈନ୍ୟ ଘେନିଣ ମିଳିଲେ ବଡ଼ାଇ ସମ୍ଭବେ ।
ରାଜାର ଜ୍ୟେଷ୍ଠା ନକ୍ଷତ୍ର ବୃଶ୍ଚିକ ଯେ ରାଶି
ପୂର୍ବାଫାଲ୍‌ଗୁନୀ ନକ୍ଷତ୍ର ବିପତ୍ତିର ବସି ।
ତ୍ରିଜାକୁ କୃତ୍ତିକା ପୁଣି ଅଟଇ ଯେ ତାର
ଯୁଧିଷ୍ଠିରଙ୍କୁ ଶୁଭତାର ଯୋଗ ସେ ଦିନର ।
ମାନଗୋବିନ୍ଦର ଭୁଲେ ସାତପଦ୍ମ ରଥୀ
ଦୁଇ ସାଗର ମୁକୁଟବନ୍ଧା ସେନାପତି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ ସେ ମଦତ୍ତ
ଏ ଷଡ଼ରଥୀଙ୍କ ଭୁଲେ ତିଂଶପଦ୍ମ ରଥ ।
ଲକ୍ଷେ ପାଟଛତ୍ର ବେନିଲକ୍ଷ ଯେ ଉଦଣ୍ଡ
ତିଲକ୍ଷ ମୟୂର ଝୁଲେ ଶୋଭଇ ଭୂଖଣ୍ଡ ।
ବାଦ୍ୟକାରମାନେ ଥିଲେ ତହିଁ ପାଞ୍ଚକୋଟି
ସୁନାବନ୍ଧା ଶଙ୍ଖ ତୂରେ ଦୁଇ ଲକ୍ଷ ଗୋଟି ।
ଏକାଦଶ କ୍ଷୌହିଣୀ ବଳ ନେଲେ କଉରବେ
ସାତଜଣ ମାତ୍ର ତହିଁ ଚଳିଲେ ପାଣ୍ଡବେ ।
ପାଞ୍ଚ ପାଣ୍ଡବ ସାତ୍ୟକି ଆଉ ଜଗନ୍ନାଥ
ଥାଟ ସୈନ୍ୟ କିଛି ନାହିଁ ହେଲେ ଉପସ୍ଥିତ ।
ଆଠସହସ୍ର ଚୌରାଶୀ ସଂଖ୍ୟକ ପହଣ୍ଡ
ଏଥିରେ ହୁଅଇ କ୍ରୋଶେ ଗଣିଲେ ମାର୍କଣ୍ଡ ।
ଚାରି କ୍ରୋଶରେ ଯୋଜନ ଶାସ୍ତ୍ରରେ ସଙ୍ଗତ
ପଞ୍ଚରାଜ୍ୟ ମଧ୍ୟେ ବାରଯୂଣ କୁରୁକ୍ଷେତ୍ର ।
ପୂର୍ବେ ହସ୍ତିନା ପଶ୍ଚିମେ ଜଇନ୍ତା ଯେ ଜାଣ
ଉତ୍ତର ଦକ୍ଷିଣେ ଯମ ବାରୁଣା ପ୍ରମାଣ ।
ଏ ପଞ୍ଚରାଜ୍ୟ ମଧ୍ୟରେ ବାରଯୂଣ ଭୁଇଁ
ଷଡ଼ ଷଡ଼ ଯୋଜନରେ କଲେ ଖଣ୍ଡ ଦୁଇ ।
ପୂର୍ବ ପଶ୍ଚିମ କରିଣ କଲେ ବେନି ଭାଗ
ଦୁଃଶାସନ ପୂର୍ବଦିଗ ଆବୋରିଲା ବେଗ ।
ଭୀମସେନ ବୋଲେ ପୂର୍ବ ଦିଗଟି ଆମ୍ଭର
ଅନ୍ୟୋଅନ୍ୟ ହୋଇଲେକ ସେ ବେନି ଭାଗର ।

ଯେବଣ ଭୂମିରେ ଯଶ ସର୍ବେ ଯାନ୍ତି ବର୍ତ୍ତି
ଅଯଶ ଭୂମିକୁ ସର୍ବେ ଯାଇଥାନ୍ତି ଛାଡ଼ି ।
ପୂର୍ବଭାଗ ଆବୋରିଲେ ତହିଁ ବଳେ ବେନି
ରହି ଭୀମ ଦୁଃଶାସନ ବୋଇଲା ଶକୁନି ।
ପ୍ରଥମ ଅନୁକୂଳରେ କପାଁ କର ଗୋଳ
ଦୁଇକୁଳ ଛାଡ଼ି ରହି ଦେବା ଧର୍ମଗୁଳ ।
ଶକୁନି ଡାକି ବୋଇଲେ ଆହେ ଜଗନ୍ନାଥ
ଆମ୍ଭେ ଜାଣୁନାହୁଁ ଗୁଳା ଅଟଇ କେମନ୍ତ ।
ଶକୁନି ବୋଇଲା ଭଲ ମଧ୍ୟପାତ୍ର ଜଣେ
ଦୂରହୁଁ ସେ ଗୃହିଁଥିବ ମୁହଁ କରି ତେଣେ ।
ଦୁଇରାଜାଏ ଘେନିଲେ କାଠି ଦୁଇଖଣ୍ଡ
ମଧ୍ୟପାତ୍ର ହସ୍ତେ ଦେବା କରି ଏକଚିତ୍ତ ।
ସେ ମଧ୍ୟସ୍ଥ ହସ୍ତେ କାଠି ବେନିଖଣ୍ଡ ଦେବ
ସେ କାଠ ପୂର୍ବେ ପଶ୍ଚିମେ ସେହୁ ପକାଇବ ।
ଯାହାର କାଠି ଯେବଣ ଦିଗରେ ପଡ଼ଇ
କର୍ମକୁ ଆଦରି ସେହି ଦିଗ ଆବୋରଇ ।
ବିଦୁରଙ୍କୁ ରାଇ ଆଜ୍ଞା କଲା କୁରୁପତି
ଭୁ ପିତା ଭୂଞ୍ଜ ବାରୁଣା ପର୍ବତର କତି
ରାଜା ଆଜ୍ଞାପାଇ ତହୁଁ ଚଳିଲେ ବିଦୁର
ପର୍ବତ ଉହାଡ଼େ ଗଲେ ପାଞ୍ଚଯୂଣ ଦୂର ।
କସ ଘେନିବ ବୋଲିଣ ଧାଇଲେ ଧାର୍ତ୍ତରାଷ୍ଟ୍ରି
ଦେଖିଲା ପଡ଼ିଛି ଦୁଇ ସୁବର୍ଣ୍ଣର କାଠି ।
ତାହା ଦେଖିଣ ଆଶ୍ଚର୍ଯ୍ୟ ହେଲା ଦୁର୍ଯ୍ୟୋଧନ
ବକ୍ଷରେ କିଏ ଥୋଇଲା କରିଣ ଯତନ ।
ବଡ଼ଖଣ୍ଡ ଦୁର୍ଯ୍ୟୋଧନ ଘେନିଲାକ ବେଗି
ଅଷ୍ଟରତ୍ନ ତା ଉପରେ ଯତ୍ନେ ଅଛି ଲାଗି ।
ଦୁର୍ଯ୍ୟୋଧନ କର ଧରି ବୋଲନ୍ତି ଶ୍ରୀନାଥ
କେ ଥୋଇଲା ଯତ୍ନକରି ଆଣି ସ୍ଥାନକୁ ଏଥ ।
ପନ୍ନଗ ନାରାୟଣ ତୁ ଅଟୁ ଯେ କାଳରେ
କସ ବା ଅପୂର୍ବ ତୋତେ ଦେବ ଘଟଣାରେ
କରେ ପଦ୍ମ ପାଦେ ପଦ୍ମ ଗୃଲନ୍ତେଣ ଫୁଟି
ଏ କସ ଅପୂର୍ବ ତୋତେ ସୁବର୍ଣ୍ଣର କାଠି ।
ଚନ୍ଦ୍ରକୁଟର ବୁଦ୍ଧିକୁ ନରେ ଜ୍ଞାନ କାହିଁ
ଉପାୟରେ ବୋଧି ଦେଲେ ତ୍ରିଦଶର ସାଇଁ ।
ଦ୍ୱାଦଶ ଅଙ୍ଗୁଳ ଖଣ୍ଡି ଘେନେ ଦୁର୍ଯ୍ୟୋଧନ
ଷଡ଼ାଙ୍ଗୁଳ ଖଣ୍ଡି ନେଲେ ଯୁଧିଷ୍ଠି ରାଜନ ।

ଦୁଇ ନରପତି ତହୁଁ ହେଲେ ଏକଚିତ୍ତ
ଦୁଇଖଣ୍ଡ ଦେଲେ ନେଇ ଜଗନ୍ନାଥ ହସ୍ତ ।
ତହୁଁ କୃଷ୍ଣ ଡାକଦେଲେ ଆସ ହେ ବିଦୁର
ଅମ୍ବିକାର ନନ୍ଦନ ମିଳିଲା ସତ୍ୱର ।
ସୁବର୍ଣ୍ଣରୁ ବେନକାଠି ଘେନ ଜଗନ୍ନାଥ
ଧର୍ମଙ୍କୁ ସୁମରି ଦେଲେ ବିଦୁରର ହସ୍ତ ।
କରେ ଧରି ବିଚାରଇ ବିଦୁର ମହାତ୍ମା
ମୋତେ ଅଜ୍ଞାନ ତୁ ଜାଣୁ ପୁରୁଷ ଉତ୍ତମା ।
କେଉଁ ଖଣ୍ଡ ଯେ କାହାର ମୋର ଜ୍ଞାନ ନାହିଁ
ପରମାନନ୍ଦ ପୁରୁଷ ତା ବିଚାରେ ତୁହି ।
ପୂର୍ବଭାଗକୁ ଯେମନ୍ତ ପାଆନ୍ତୁ ଯୁଧିଷ୍ଠି
ତେବେ ଯୁଧିଷ୍ଠିରଙ୍କର ଜିବ ଯେ ଅବସ୍ଥି ।
ଏମନ୍ତ କହି ନିର୍ଣ୍ଣୟ କରେ ବେନ କାଠି
ଯେଣୁ ଯୁଧିଷ୍ଠିର ବଡ଼ ନେବ ବଡ଼ଗୋଟି ।
ସାନଭାଇ ଦୁର୍ଯ୍ୟୋଧନ ସାନ ଖଣ୍ଡି ନେବ
ହୃଦଗତେ ବିଚାରଇ ବିଦୁର ଏ ଭାବ ।
ତହୁଁ ବଡ଼ରୁ ପକାଏ ନେଇ ପୂର୍ବଭାଗେ
ସାନଖଣ୍ଡି ପକାଇଲେ ପଶ୍ଚିମର ଦିଗେ ।
ଯତି ଦେଖି କଉରବେ କଲେ ଶଙ୍ଖଧ୍ୱନି
ପୂର୍ବଦିଗ ଆବୋରିଲେ କୌରବ ସଇନ ।
ଆନନ୍ଦ ହେଲେ କୌରବ ସଇନ ସରବେ
ମନ ମଧ୍ୟରେ ବିରସ ହୋଇଲେ ପାଣ୍ଡବେ ।
ଗୋବିନ୍ଦ ବୋଇଲେ ଚୋକ ନ କରି ହେ ଆଗ
ଧୀରେ ବୁଝିବା ହୋଇଲା କାର କେଉଁ ଭାଗ
ପୂର୍ବ ଖଣ୍ଡକୁ ଅଣିଲ ଶକୁନି ଚତୁର
ମାପନ୍ତେ ଷଡ଼ ଅଙ୍ଗୁଳ ହୋଇଲା ତାହାର ।
ପଶ୍ଚିମ ଖଣ୍ଡକୁ ଅଣି ମାପେ ମନ୍ତ୍ରିବର
ଦ୍ୱାଦଶ ଅଙ୍ଗୁଳ ହେଲା ମାନଗୋବିନ୍ଦର ।
ମାୟାଧର ପୁରୁଷଙ୍କ ଦେଖ ମାୟାକୂଟ
କଳିକାଳ ଦୁହେଁ ହେଲେ ଉଲଟ ପାଲଟ ।
ନାରାୟଣଙ୍କ ଆଗରେ ତକ୍ଷଣେ ଲେଉଟି
ବଡ଼ ହେଲା ସାନ ସାନ ହେଲା ବଡ଼କାଠି ।
ଜୟ ଜୟ ଶଙ୍ଖନାଦ କରିଲେ ପାଣ୍ଡବେ
ସାନନ୍ଦରେ ଆବୋରିଲେ ଯାଇ ଦୃଢ଼ଭାବେ
ଜୟ ଜୟ ମାୟାଧର ଜଗତମୋହନ
ଚଉଦ ବ୍ରହ୍ମାଣ୍ଡ ପ୍ରାଣୀମାନଙ୍କ ଜୀବନ ।
ଯାହାଙ୍କୁ ସପକ୍ଷ ତୁହି ହେଉ ଦେବରାୟେ
ସୁଖଧାରେ ଗତମୁକ୍ତି ସେହି ପ୍ରାଣୀ ପାଏ ।
ଜଗତତାରଣ ନାଥ ତବ ନାମଗୋଟି
ଶାରଳା ଦାସ ସେ ପାଦେ ସବୁବେଳେ ଲୋଟି ।

---

## କୁରୁକ୍ଷେତ୍ରରେ ଶୁଭସ୍ତମ୍ଭ ସ୍ଥାପନ ତହୁଁ ମଧ୍ୟସ୍ଥ ପୁରୁଷ ଏବଂ ପୂର୍ଣ୍ଣ ପ୍ରଳୟ ଓ ଦେବନାଶନ ବଟ ପ୍ରଭୃତିର ବିବରଣ

ଅଗସ୍ତି ବୋଇଲେ ଶୁଣ ହେ ମନୁରାଜନ
ବିଷ୍ଣୁକଥା ଶୁଣି ପାପ କରିଲ ଦହନ ।
କେଶବ ଯାହା କରିଲେ ଉଦଯୋଗ ପର୍ବେ
କୁଟ କପଟରେ ମହାଭାର ଉଶ୍ୱାସିବେ ।
ଯଥାର୍ଥ ଯୁଦ୍ଧେ ପାଣ୍ଡବେ ନ ହୋଇବେ ସରି
ସହସ୍ରେ ପାଣ୍ଡବେ ଏକ ଭୀଷ୍ମକୁ କି ପାରି ।
କୁରୁକ୍ଷେତ୍ର ଦୁଇଭାଗ ହେଲା କହି ହରି
ତାହା ମଧ୍ୟସ୍ଥକୁ ପାଦନଖେ ଦେଲେ ଚିରି ।
କୃଷ୍ଣ ବାମପାଦ ନଖେ ତହୁଁ ଚିରିଗଲା
ମଧ୍ୟସ୍ଥଳରେ ତାହାର ନଦୀଏ ବହିଲା ।
ତିନିତାଳ ତା ବିସ୍ତାର ଗମ୍ଭୀର ନତାଳ
ସେ ରୁଧିର ନଦୀ କଥା ଶୁଣ ମହୀପାଳ ।
କହନ୍ତି ଅଗସ୍ତି ମୁନି ମନୁରାଜା ଆଗ
କୁରୁକ୍ଷେତ୍ର ରଣଭୂମି ହେଲା ବେନିଭାଗ ।
ପୂର୍ବେ ପାଣ୍ଡବ ପଶ୍ଚିମ ଦିଗ କଉରବ,
ଦୁଇକୂଳର ମଧ୍ୟସ୍ଥ ହେଲେ ବାସୁଦେବ ।
ସମାନ ବେନି ଭାଗରେ ବାଣ୍ଟି କୁରୁକ୍ଷେତ୍ର
ବୋଇଲେ ମଧ୍ୟସ୍ଥଳରେ ଶୁଭସ୍ତମ୍ଭ ପୋତ ।
ଶୁଣି ଶକୁନି ବୋଇଲା କୃଷ୍ଣଙ୍କ ଅଗ୍ରତେ
ଚିହ୍ନି ନ ଥିଲେ ଭୂମିକି ବାରିବା କେମନ୍ତେ ।
କୃଷ୍ଣ ଆଜ୍ଞା କଲେ ଶୁଣି ଭୀମ ଦୁଃଶାସନ
କୁଣ୍ଡଳ ପରବତକୁ ଚଳ ହୋ ବହନ ।
ଅଗ୍ରୁ ବୃକ୍ଷରୁ ଅର୍ଦ୍ଧେ ଅଛି ସେ ପର୍ବତେ
ଦ୍ରୋଣ ଛେଦିଥିଲେ ବିଦ୍ୟା ପରୀକ୍ଷା ନିମନ୍ତେ ।
ସେ ବୃକ୍ଷକୁ ଘେନିଆସ ପର୍ବତ ଉପରୁ
ସହସ୍ରେକ ମାଲ ଦେଲେ ସଙ୍ଗେ ହସ୍ତିକାରୁ ।

କୃଷ୍ଣଙ୍କ ଆଗରେ ତହୁଁ ସର୍ବେ ଗଲେ ଚଳି
ଧରିଣ ସେହି ବୃକ୍ଷକୁ ଓଗାଳିଲେ ବଳୀ ।
ବୃକ୍ଷ ଉପାଡ଼ନ୍ତେ ଶୁଭେ ଅତି ଘୋରନାଦ
ଆକାଶେ ଦେବତା ଶୁଣି ହୋଇଲେ ସ୍ତବଧ ।
ଜଳଧର କମ୍ପିଲା ମହୀ ହେଲା ଟଳମଳ
ପବନ ସ୍ଥକିତ ହେଲା ସ୍ତମ୍ଭୀଭୂତ ଜଳ ।
ସତ୍ୟଯୁଗେ ଦେବାସୁର ହୋଇ ଏକମେଳ
ମନ୍ଦରକୁ ଉପାଡନ୍ତେ ଶୁଭେ ଯେହ୍ନେ ଗୋଳ
ସେପରି କୁରୁ ପାଣ୍ଡବ ମିଳି ବଳ ବେନି
ପର୍ବତ ଉପ୍ରୁ ବୃକ୍ଷ ଆଣନ୍ତେ ସେ ଧ୍ୱନି ।
ସହସ୍ରେ ବାଜଇ ଶଙ୍ଖ ଅଗ୍ରତରେ ମିଳି
ବୀରତୂରୀ ବଜ୍ରଘୋଷ ବଜାଇ କାହାଳି ।
ସହସ୍ରେକ ପାଟଛତ୍ର ସହସ୍ରେ ଚାମର
ସହସ୍ରେ ନେତ ଚଳାଇ ଉଡ଼େ ଫରହର ।
ସହସ୍ରେ ଉଦଣ୍ଡ ପୁଣି ସହସ୍ରେ ଆଲଟ
ସହସ୍ରେ ମୟୂର ଝାଲେ ଦିଶେ ଝଟ ଝଟ ।
ସହସ୍ରେକ ପରମାଣେ ବୀର ସେ ଦାଉଣ୍ଡି
ଅସ୍ତ୍ରରତନରେ ସେହୁ ହୋଇଅଛୁ ମଣ୍ଡି ।
ସହସ୍ରେ ସାଙ୍ଗୀରେ ତାକୁ ନେଲେ ମହାବୀର
ତା ଆଗେ କରନ୍ତି ନୃତ୍ୟ ସହସ୍ରେ ଅପସରା ।
ଆଗ ପଛ ପଟୁଆର କରିଣ ଆଣନ୍ତେ
ଶୂନ୍ୟେ ଦେବତାଏ ଦେଖି ଆନନ୍ଦ ସମସ୍ତେ ।
ତାହା ଦେଖିଣ ଉପତ ହୋଇଲାକ ମହୀ
ଶ୍ରୀକୃଷ୍ଣ ରଥ ଅଗ୍ରତେ ଥୋଇଲାକ ନେଇ ।
ଲୋହିତ ବର୍ଣ୍ଣକୁ ଜିଣି ଦିଶେ ତାର କାୟ
ତାକୁ ଦେଖିଣ ସମସ୍ୟା କଲେ ଦେବରାୟ ।
ଅମୃତ ଶୁଭ ଯୋଗରେ ଲଗ୍ନକୁ ବିଚାରି
ଗର୍ତ୍ତ ଖୋଳିଲେ ସକଳେ ଅନୁକୂଳ କରି ।
ଏମନ୍ତ ସମୟରେ ଯେ ଦେବଙ୍କର ବାଳ
ଦେଖିଲେକ ଭଦଳିଆ ପକ୍ଷୀ ଅନୁକୂଳ ।
ତହୁଁ ଖମ୍ବକୁ ଆପଣେ ଧରି ବାସୁଦେବ
କୁରୁକ୍ଷେତ୍ର ମଧ୍ୟସ୍ଥଳେ ତାକୁ ଦେଲେ ଠାବ ।
ନବତାଳ ପୋତାହେଲା ଉଚ୍ଚ ପାଞ୍ଚତାଳ
ବେନିତାଳ ଗଣ୍ଡି ବେଢ଼ ଅଟଇ କେବଳ ।
ଯେହ୍ନେ ପୃଥୀରେ ବସିଲା ଆସି ମେରୁକଳା
ତହୁଁ ଅଧିକରେ ଶୋଭା ସେ ଖମ୍ବ ଦିଶିଲା ।
ତାକୁ ଦେଖିଣ ପ୍ରଶଂସା କଲେ କଉରବେ
ବୋଇଲେ ସମର ଭୂଇଁ ପ୍ରାପ୍ତ ଦିଶେ ଏବେ ।
ସେହି ବୃକ୍ଷର ଗର୍ଭରେ ପୁରୁଷେକ ଥିଲା
ନାରାୟଣଙ୍କ ଦର୍ଶନେ ମୁକତ ହୋଇଲା ।
ସେହି ବଇକୁଣ୍ଠ ପୁରେ ଯାଇଣ ବିଶ୍ରାମି
ଦର୍ଶନ କରିଲା ତହିଁ ନିରାଲମ୍ବ ସ୍ୱାମୀ ।
ଏହି କଥା ଶୁଣିକରି ବାଲଙ୍କାଧିପତି
ପଚାରନ୍ତି ଅଗସ୍ତିଙ୍କୁ ସବିସ୍ମୟେ ଅତି ।
ହେ ମୁନି ଶୁଭ ଖମ୍ବକୁ କୃଷ୍ଣ ଦେଲେ ପୋତି
ତହୁଁ ପୁରୁଷେକ କାହୁଁ ହେଲା ଉତପତ୍ତି ।
କେବଣ ମହାତ୍ମା ସେହୁ କେଉଁ ଶାପେ ଥିଲା
କୁରୁକ୍ଷେତ୍ର ମଣ୍ଡଳରେ ମୁକ୍ତ ହୋଇଗଲା ।
ଅଗସ୍ତି ବୋଇଲେ ତାହା ବହୁକାଳ କଥା
ଶୁଣ ଏକମନ୍ୟେ ସତ୍ୟଯୁଗର ବାରତା ।
ପୃଥିବୀ ଜଳ ପ୍ରଳୟ ହେଲା ଯେତେବେଳେ
ସମସ୍ତେ ହେଁ ନାଶଗଲେ ଏ ମୃତ୍ୟୁମଣ୍ଡଳେ ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ବ୍ରହ୍ମଶରୀରରେ ଯାଇ ହୋଇଲେ ପ୍ରବେଶ ।
ସମସ୍ତ ବ୍ରହ୍ମଙ୍କୁ ବ୍ରହ୍ମା ଘେନି ହୃଦଗତେ
ହଂସପୃଷ୍ଠରେ ରହିଲେ କଳ୍ପେ ପରଯନ୍ତେ ।
ଆହାର ମୈଥୁନ କିବା ନିଦ୍ରା କିଛି ନାହିଁ
ଚୌଦକଳ୍ପ ହଂସପରେ ଉଡ଼ୁଥାନ୍ତି ରହି ।
ଉଡ଼ି ଉଡ଼ି କ୍ଲାନ୍ତ ହୋଇ ଗୃହାନ୍ତେ ଲେଉଟି
ବ୍ରହ୍ମା ଜାଣନ୍ତେ ମରିଲି ମୋତେ ଗୃହେଁ ଫୁଟି
ତହୁଁ ଧ୍ୟାନ କରନ୍ତି ସେ ହୃଦରେ ବିଷ୍ଣୁଙ୍କୁ
ସୁମରନ୍ତେ ନାରାୟଣ ଭେଟନ୍ତି ତାହାଙ୍କୁ ।
ବ୍ରହ୍ମା ବୋଲନ୍ତି ହୋଇଲା ଜନ୍ତୁର ପ୍ରଳୟ
ଚୌଦକଳ୍ପ ରହିଲି ମୁଁ ହୋଇ ଶୂନ୍ୟମୟ ।
ତାହା ଦେଖିଣ ବିଚାର କଲେ ଭଗବାନ
ତହୁଁ ସେ ବ୍ରହ୍ମାଙ୍କୁ ଦେଲେ ନିଜଗର୍ଭେ ସ୍ଥାନ
ଜଳ ପ୍ରଳୟେ ବ୍ରହ୍ମାଙ୍କୁ ରଖି ଗର୍ଭଗତେ
ଗରୁଡ଼ ଉଡ଼ନ୍ତି ଚୌଦକଳ୍ପ ପରଯନ୍ତେ ।
ତିନପୁରରେ ଦେଖନ୍ତି ଆଉ ନାହିଁ କିଛି
କେବଳ ନିରାକାରେ ସେ ଏକମାତ୍ର ଅଛି ।
ଉଡ଼ି ଉଡ଼ି କ୍ଲାନ୍ତହୋଇ ଗୃହାନ୍ତେ ଲେଉଟି
ବିଷ୍ଣୁ ଜାଣିଲେ ଗରୁଡ଼ ମୋତେ ଗୃହେଁ ଫୁଟି

ତହୁଁ ରୁଦ୍ର ନିକଟକୁ ଚଳିଲେ ତ୍ୱରିତେ
ଗରୁଡ଼ ବିଷ୍ଣୁଙ୍କୁ ଗର୍ଭେ ରଖି ବିଶ୍ୱନାଥେ ।
ବିଷ୍ଣୁ ପ୍ରଳୟ କରଣ ଦେବ କାଶୀବାସୀ
ଅଠାଅଶୀ କଳ୍ପଯାଏ ବୃଷଭରେ ବସି ।
ସେ ରୁଦ୍ରଦେବତା ମଧ୍ୟ ରହି ନ ପାରିଲେ
ଧର୍ମପୁରୁଷଙ୍କୁ ସେହି ସ୍ମରଣା କଲେ ।
ଧର୍ମଦେବତା ପ୍ରବେଶ ରୁଦ୍ରଙ୍କର ପାଶ
ବୋଲନ୍ତି କିମର୍ଥେ ଚିନ୍ତାକଲ ବିଶ୍ୱବାସ ।
ଧର୍ମଦେବତାଙ୍କୁ ରୁଦ୍ରଦେବତା ବୋଲନ୍ତି
ମୋ ଦେଖନ୍ତେ ବ୍ରହ୍ମା ବିଷ୍ଣୁ ହେଲେ ନାଶଯାନ୍ତି
ଅଠାଶୀ କଳ୍ପ ରହିଲୁ ଥାଇ ବୃଷପିଠି
ଏବେ ରହି ନ ପାରିବ ବୋଲନ୍ତି ଧୂର୍ଜ୍ଜଟି ।
ରୁଦ୍ରପ୍ରଳୟ ଜାଣିଣ ତହୁଁ ଧର୍ମଦେବ
ଏହା ବିଶ୍ୱର ରୁଦ୍ରଙ୍କୁ ଗର୍ଭେ ଦେଲେ ଠାବ ।
ଧର୍ମଙ୍କ ଉଦରେ ବିଜେ ଦେବ ଶୂଳପାଣି
ରୁଦ୍ର ପ୍ରଳୟ ହୋଇଲ ଶୁଣ ନୃପମଣି ।
ରୁଦ୍ର ଦେବତାଙ୍କୁ ଧର୍ମ ଗର୍ଭରେ ପୁରାଇ
ଚୌରାଶୀ କଳ୍ପ ବଞ୍ଚିଲେ ଧର୍ମ ପୁଣି ତହିଁ ।
ସେ ଧର୍ମଦେବତା ପୁଣି ରହି ନ ପାରିଲେ
ସ୍ଥୂଳ ପୁରୁଷଙ୍କୁ ପୁଣ ସ୍ମରଣା କଲେ ।
ସ୍ଥୂଳ ପୁରୁଷ ପୁଚ୍ଛିଲେ ଧର୍ମଦେବତାଙ୍କୁ
କେଉଣ କାରଣେ ଚିନ୍ତା କରିଲେ ଆମ୍ଭଙ୍କୁ ।
ସ୍ଥୂଳ ପୁରୁଷ ଚରଣେ ଧର୍ମ ପ୍ରଣାମି
ବୋଇଲେ ଅକ୍ଷମ ହେଲି ରଖ ଦେବସ୍ୱାମି ।
ସ୍ଥୂଳ ପୁରୁଷ ଧର୍ମଙ୍କୁ ଗର୍ଭରେ ଭରିଲେ
ଗର୍ଭରେ ଭରି ଷାଠିଏ କଳପ ବୁଲିଲେ ।
ସେହି ସ୍ଥୂଳପୁରୁଷ ସେ ନ ପାରିଲେ ରହି
ନିରଞ୍ଜନ ପୁରୁଷଙ୍କୁ ମନମଧ୍ୟେ ଧ୍ୟାୟି ।
ସେ ସ୍ଥୂଳ ରହିଲେ ନିରଞ୍ଜନଙ୍କ ଗର୍ଭରେ
ସତୁରି କଳପ ସେହୁ ରହି ନିର୍ଭୟରେ ।
ସେ ନିରଞ୍ଜନ ପୁରୁଷ ନ ପାରିଲେ ରହି
ନିଳାମ୍ବର ପୁରୁଷଙ୍କୁ ମନେ ମନେ ଧ୍ୟାୟି ।
ନିରଞ୍ଜନ ସ୍ମରନ୍ତେ ଦେବ ନିଳାମ୍ବରେ
କହିଲେ ଯେ ଦେବତାଙ୍କୁ ଶୂନ୍ୟ ଶବଦରେ
କଥାମାତ୍ରକେ ଶୁଭଇ ଦେହ ନ ଦିଶଇ
ସେହି ପୁରୁଷ ଆକାର କିଛିମାତ୍ର ନାହିଁ ।

ସତୁରି କଳପ ବଞ୍ଚି ଦେବ ନିରଞ୍ଜନ
ନିଳାମ୍ବର ପୁରୁଷଙ୍କ ଦେହେ ହେଲେ ଲୀନ ।
ମନୁରାଜା ଶୁଣ ହେଲା ଏ ମହାପ୍ରଳୟ
ନରଲୋକ ବିଷ୍ଣୁଲୋକ ସର୍ବେ ହେଲେ କ୍ଷୟ
ମରାଳ ବିନତାସୁତ ଆବର ବୃଷଭ
ମହାପ୍ରଳୟରେ ଗର୍ଭେ ରଖି ଆଦିଦେବ ।
ସେ ନିରାକାର ପୁରୁଷ କୋଟି କଳ୍ପଯାଏ
ସମସ୍ତଙ୍କୁ ଗର୍ଭେ ରଖି ରହିବେ ନିର୍ଭୟେ ।
କୋଟି କୋଟି କଳ୍ପ ଗଲ କିଛି ନ ଜାଣନ୍ତି
ଆହାର ମୈଥୁନ ନିଦ୍ରା ନାହିଁ ତାଙ୍କ ସ୍ଥିତ ।
ଜଳ ଅନଳ ପବନ କିଛିମାତ୍ର ନାହିଁ
ଶୂନ୍ୟପୁରୁଷ କେବଳ ଶୂନ୍ୟେ ଛନ୍ତି ରହି ।
ସେହି ଅଣାକାର ଶୂନ୍ୟ ଭୁବନ ରଚିଲେ
ଅଲେଖ ଲେଖ ବିଚିତ୍ର ପୁର ନିର୍ମାଣିଲେ ।
ନିର୍ମଳ ଭୁବନ ଅଟେ ସେ ଅଲେଖ ପୁର
ଷଠର କୋଟି ଯୋଜନ ତହିଁର ବିସ୍ତାର ।
ଲକ୍ଷ ଲକ୍ଷ ଯୋଜନରେ ଅଟେ ଗୃହଦ୍ୱାର
ଲକ୍ଷେକ ଯୋଜନ ଉଚ୍ଚ ତହିଁର ପ୍ରାକାର ।
ସୁବର୍ଣ୍ଣ ପାବଚ୍ଛ ପୁଣି ସୁବର୍ଣ୍ଣର ପୀଢ଼
ତହିଁରେ ମର୍କତ ଖଞ୍ଜା କରି ଗୃହବେଢ଼ ।
ମାଣିକର ଶ୍ରେଣୀ ପୁଣି ନୀଳା କୋଣକାଣ୍ଡ
ଉଦୟ ଗିରିରେ ଯେହ୍ନେ ଦିଶେ ମାର୍ତ୍ତଣ୍ଡ ।
ଯେମନ୍ତ ପରକାରରେ ଗୃହଯାକ ଦିଶି
ସ୍ୱୟଂ ନିର୍ମାଣ କରିଲେ ଯାହା ବ୍ରହ୍ମଋଷି ।
ସ୍ଫଟିକର ସ୍ତମ୍ଭ ତହିଁ ବୈଦୂର୍ଯ୍ୟର ଓସା
ଅଷ୍ଟରତନ ଖଞ୍ଜଣି ସର୍ବ ଦିଶେ ତୋରା ।
ଆପଣେ ସେ ଶୂନ୍ୟଗାମୀ ଶୂନ୍ୟ ପୁର ଖଞ୍ଜି
ନବସାଗର ଆଦିତ୍ୟ ପ୍ରଭା ତହିଁ ଗଞ୍ଜି ।
ସେହି ଅଲେଖ ଭୂମିରେ ସ୍ୱାମୀଙ୍କ ବିଶ୍ରାମ
ଶେଷ ମହୋଦଧି ତାର ବଇକୁଣ୍ଠ ନାମ ।
ସେ ସିଂହଦ୍ୱାର ବତିଶ ସସ୍ରଯୂଣ ସ୍ଥୂଳ
ଉଚ୍ଚ ଏଗାର ଯୂଣ ଦ୍ୱିହୋଶରୁ ବଳ ।
ଜୟ ବିଜୟ ସେ ଦ୍ୱାରେ ଦ୍ୱାରପାଳ ବେନି ।
ଲକ୍ଷେ ଲକ୍ଷେ ଭାର ଗଦା ସେହୁ ଥାନ୍ତି ଘେନି
ସେ ବୈକୁଣ୍ଠ ବେଢ଼ିଅଛି ମହାପଦ୍ମ ନାଗ
ନବଲକ୍ଷ ଯୂଣ ତାର ଫଣାର ଉତ୍ସର୍ଗ ।

ନାସାର ପବନ ତାର ମହାବିଷଜ୍ୱାଳା
ଆଠଗୋଟି ସୂର୍ଯ୍ୟତେଜ ତାର ବେନି ଡ଼େଣା
କୂର୍ମ୍ମକ ନାମରେ ତହିଁ ଗରୁଡ଼େକ ଅଛି
ଶ୍ୱେତ ଶ୍ୱେତ ଶଙ୍ଖ ତାର ଅଟେ ବେନିପକ୍ଷୀ ।
ସପ୍ତଶଙ୍ଖ ଯୋଜନରେ ଅଟେ ବେନିଗୋଡ଼
ଶତ ଯୋଜନ ଅଟଇ ତାହାର ଲାଙ୍ଗୁଡ଼ ।
ପିଠିର ମୋଟ ଅଟଇ ପୂର୍ଣ୍ଣ ଶଙ୍ଖ ଦଶ
ଦେବ ନାଶନ ବୃକ୍ଷର ଉପରେ ତା ବାସ ।
ସେହି ଦ୍ୱାରେ ଅଛି ଦେବନାଶନର ବୃକ୍ଷ
ଦ୍ୱିଲକ୍ଷ ପୂର୍ଣ୍ଣ ବିସ୍ତାର ଉଚ୍ଚ ଷଡ଼ଲକ୍ଷ ।
ସେହି ବୃକ୍ଷଗୋଟି ନାମ ଅଟେ ଦେବନାଶ
ବିଷ୍ଣୁନାଥଙ୍କ ଶରୀର ପ୍ରାୟେ ତାର ଆସ୍ୟ ।
ଅସଂଖ୍ୟ ଅସଂଖ୍ୟ ବିଷ୍ଣୁ ବିଜେ ସେହିସ୍ଥାନେ
ତହିଁ ଅବତୀର୍ଣ୍ଣ ଦଶ ଅବତାର ମାନେ ।
ମତ୍ସ୍ୟ କୁରୁମ ବରାହ ନୃସିଂହ ବାମନ
ପରଶୁଧର ଶ୍ରୀରାମ କାହ୍ନୁ ସଙ୍କର୍ଷଣ ।
ବଉଦ୍ଧ କଲକୀ ଆଦି ଦଶ ଅବତାର
ସେହି ସ୍ୱାମୀଙ୍କ ଅଙ୍ଗରୁ ହୁଅନ୍ତି ବାହାର ।
ବେଗ ତାଙ୍କର ସରିଲେ ଅଙ୍ଗେ ହୁଅନ୍ତି ଲୀନ
ପୁଣିହିଁ ଆଜ୍ଞା ହୋଇଲେ ହୁଅନ୍ତି ଉତପନ୍ନ ।
ସମସ୍ତଙ୍କୁ ଗର୍ଭେ ରଖି ସେହି ବିଶ୍ୱବାସୀ
ସତୁରି କଳ୍ପ ପର୍ଯ୍ୟନ୍ତେ ଥାଆନ୍ତି ସେ ବସି ।
ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ
ଜଳ ସ୍ଥଳ ଅନଳାଦି ସବୁ ଗଲା ନାଶ ।
ନାହିଁ ଯୋଗ ନାହିଁ ଚନ୍ଦ୍ର ନାହିଁ ସୂର୍ଯ୍ୟତେଜ
ନାହିଁ ବ୍ରହ୍ମା ନାହିଁ ବିଷ୍ଣୁ ନାହିଁ ଦେବରାଜ ।
ନାହିଁ ସ୍ୱର୍ଗ ନାହିଁ ମର୍ତ୍ତ୍ୟ ନାହିଁ ବା ପାତାଳ
ନାହିଁ ତପତ ଶୀତଳ ନାହିଁ ଦିଗପାଳ ।
ନର ନାଗ ଯକ୍ଷ ଦେବ କିନ୍ନରହିଁ ନାହିଁ
ଏକମାତ୍ର ସେ ପୁରୁଷ ଅଛନ୍ତି ଯେ ରହି ।
କେତେକାଳେ ସେ ପୁରୁଷ ହାଇଏ ମାଇଲେ
ସେ ହାଇ ଭିତରୁ ବାୟୁ ବାହାର ହୋଇଲେ
ବାୟୁ ଯୋଗପୁରୁଷର ଏକ ଅବତାର
ଯୋଗ ପୁରୁଷର ତହିଁ ତ୍ରିଗୁଣ ବାହାର ।
ତ୍ରିଗୁଣର ତହୁଁ ହେଲା ନିରଞ୍ଜନ ଜାତ
ନିରଞ୍ଜନ ତହୁଁ ସ୍ଥୂଳ ପୁରୁଷ ସମ୍ଭୂତ ।

ସେ ସ୍ଥୂଳ ପୁରୁଷ ତହୁଁ ଧର୍ମ ଜାତହେଲେ
ସେ ଧର୍ମର ତହୁଁ ତିନିପୁତ୍ର ଉପୁଜିଲେ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସେ ତିନିଙ୍କ ନାମ
ତାହାଙ୍କୁ ଡାକି ଆଦେଶ ଦେଲେ ଦେବଧର୍ମ ।
ବ୍ରହ୍ମାଙ୍କୁ ବୋଇଲେ ତୁହି ସୃଷ୍ଟି ଜାତକର
ବିଷ୍ଣୁଙ୍କୁ ବୋଇଲେ ତୁହି ଦାନବଙ୍କୁ ମାର ।
ଈଶ୍ୱରଙ୍କୁ ବୋଇଲେ ତୁ ସାଧ ଯୋଗଜ୍ଞାନ
ଏମନ୍ତ କହି ମହାତ୍ମା ହେଲେ ଅନ୍ତର୍ଦ୍ଧାନ ।
ସେ ଈଶ୍ୱର ତହୁଁ ହେଲା କପିଳ ସଜାତ
ଯେ କପିଳ ତହୁଁ ଜାତହେଲେ ଦେବ ସାତ
ଆବର ଲଭିଲେ ଜନ୍ମ ଜ୍ୟୋତି ସୁଷୁମ୍ନା
ଅଜପା ଜପା ଗାୟତ୍ରୀ ସାତ ଉତପନ୍ନା ।
ଶେଷ ସାତ ଦେବର ଯେ ସପ୍ତ ଅବତାର
ନବଖଣ୍ଡ ପୃଥ୍ୱୀସହ ସପତସାଗର ।
ସଲିଳ ସ୍ଥଳ ଅନଳ ତପନ ତାପନ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ଆଦି ଦିଗପ ଲମାନ ।
ବ୍ରହ୍ମା ଦକ୍ଷିଣ ବାହୁରୁ ପୁରୁଷେକ ଜାତ
ତାହାଙ୍କୁ ଦଇତ ନାମ କହିଲେ ବିଧାତା ।
ଷାଠିଏ ସହସ୍ର କନ୍ୟା ସେ ଦକ୍ଷର ହେଲେ
ଦିଗପାଳମାନେ ତାକୁ ବିବାହ ହୋଇଲେ ।
ସେହି କନ୍ୟାଙ୍କ ଗର୍ଭରୁ ସର୍ବେ ହେଲେ ଜାତ
ଅଷ୍ଟନ୍ଦୂର ନାମ ଆଠ ପର୍ବତ ସମ୍ଭୂତ ।
ଦେବ ଦାନବ ମାନବ ହେଲେ ଅବତାର
ସୁରନାଥ ଅମରାଦି ପୁଣି ବିଦ୍ୟାଧର ।
ବନସ୍ତ କନ୍ଦର ଲତା ପୁଣି ବୃକ୍ଷମାନେ
ଗ୍ରହଙ୍କ ସଙ୍ଗରେ ଜାତ ମେଘମାଳାମାନେ ।
ଶୁଣଖାନି ଚୌରାଅଶୀ ଲକ୍ଷ ଜୀବଯନ୍ତ୍ର
ଯେ ଯାହାର ଅନୁକ୍ରମେ ଜନମ ହୁଅନ୍ତି ।
ଏହି ପ୍ରକାରେ ଜନମ ଦେଇ ମହାତମା
ବୈକୁଣ୍ଠେ ପ୍ରବେଶ ହେଲେ ରୁଦ୍ରପାଳ ବ୍ରହ୍ମା
ଦ୍ୱାରପାଳ ଭିତରକୁ ନ ଦିଅନ୍ତେ ପଶି
ବାହୁଡ଼ି ଦେବନାଶନ ବୃକ୍ଷ ତଳେ ବସି ।
ସେ ଦେବନାଶନ ତଳେ ବସି ବେଦପତି
ସମସ୍ତେକ ପିତାମହ ମନେକଲେ ଭ୍ରାନ୍ତି ।
ଯେତେ ବ୍ରହ୍ମାଏ ଆସନ୍ତି ଦରଶନ କରି
ସେ ବୃକ୍ଷ ତରୁରୁ କେହି ନ ଯାନ୍ତି ଉବୁରି ।

ଶୁଣ ବୈବସ୍ୱତ ମନୁ ବୋଲେ ବ୍ରହ୍ମବେଷ୍ଟ
ସେ ବୃକ୍ଷତଳକୁ ଗଲେ ଛାଡ଼ି ସର୍ବଚିନ୍ତା
ମହାସୁଖ ହୋଇ ତହିଁ ଥାନ୍ତି ବହୁକାଳ
ସମସ୍ତେ ପ୍ରାଣ ତେଜନ୍ତି ସେହି ବୃକ୍ଷତଳ ।
ସୁଖପାଇ ସେହି ବୃକ୍ଷତଳରେ ରହିଲେ
ଭିତରକୁ ଯହିଁ ସେହି ଯାଇ ନ ପାରିଲେ ।
ଶତେକଳ୍ପ ପରଯନ୍ତେ ବୃକ୍ଷମୂଳେ ଥାନ୍ତି
ସମସ୍ତେ ଆସନ୍ତେ କାଳ ମୁଖରେ ପଡ଼ନ୍ତି ।
ଗଗନସ୍ପୃଷ୍ଣା ନାମକ ଏକଇ ନାରଦ
ସେ ଆସି ପ୍ରବେଶ ହେଲା ପିତାର ସନ୍ନିଧି ।
ପିତାଙ୍କର ପ୍ରାଣତ୍ୟାଗ ହୋଇବାର ବେଳେ
ସେ ନାରଦ ଜଣାଇଲା ପ୍ରାଣ ଶେଷକାଳେ ।
ତାତ ପିତା ତୁମ୍ଭେ ତ ଏହା ନ ପାରିଲ ଜାଣି
ଏ ବୃକ୍ଷତଳେ ବସିଲ ସୁଖ ପାଇ ପୁଣି ।
ଯେତେ ଦେବତା ଆସନ୍ତି ଏ ବୃକ୍ଷ ତଳକୁ
କେହି ବର୍ତ୍ତିଯାଇନାହିଁ କହିଲେ ପିତାକୁ ।
ମୋତେ ଘଇ ଆଜ୍ଞାଦେଲେ ପ୍ରଭୁ ଚକ୍ରପାଣି
ମୁଁ ବସିଛି ସବୁ ବ୍ରହ୍ମା ସମସ୍ତଙ୍କୁ ଗଣି ।
ସତାନବେ କୋଟି ହେଲ ବ୍ରହ୍ମାଙ୍କର ଅସ୍ଥି
ଆହୁରି ଅନେକ ଅସ୍ଥି ନଷ୍ଟ ହୋଇଅଛି ।
ଶ୍ୱେତବ୍ରହ୍ମା କୃଷ୍ଣବ୍ରହ୍ମା କେତୁବ୍ରହ୍ମା ପୁଣି
ଚନ୍ଦ୍ରବ୍ରହ୍ମା ସୋମବ୍ରହ୍ମା ଆଉ ଚନ୍ଦ୍ରଯୋନି ।
ରୁଦ୍ରେଶ୍ୱର ବ୍ରହ୍ମା ପୁଣ ବ୍ରହ୍ମା ମହପାଳ
ସନନ୍ଦ ନନ୍ଦର ବ୍ରହ୍ମା ଆଉ ରୁଦ୍ରପାଳ ।
ଏମନ୍ତେ ବହୁତ ବ୍ରହ୍ମା ହୋଇଛନ୍ତି ହତ
ଶ୍ରୀବତ୍ସ ପାଞ୍ଜିରେ ତାହା ହୋଇଛି ଲିଖିତ ।
ଚତୁର୍ମୁଖ ଶତମୁଖ ସପ୍ତମୁଖ ଧାସ୍ର
ଅୟୁତେକ ମୁଖ ଲକ୍ଷ୍ୟ ମୁଖ ଆଦିକରି ।
କୋଟିମୁଖ ବ୍ରହ୍ମା ଅସ୍ଥି ନ ମିଳଇ କଛି
ଗଗନସ୍ପର୍ଶା ନାରଦ କହିଲେ ଯେ ବାଛି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର କେତେ ଇନ୍ଦ୍ରଦେବ
ଯମ କୁବେର ପବନ ନାଶଯାନ୍ତି ସବ ।
ବାଶ ନ ପାରିଲ ମୁହିଁ ଏହାଙ୍କର ଶିର
ନାରଦ କହନ୍ତେ ରୁଦ୍ରପାଳଙ୍କ ଆଗର ।
ନାରଦ ବଚନେ କୋପ କରି ବେଦପତି
ବୋଲେ ପ୍ରାଣହାରୀ ବୃକ୍ଷ କପାଁ ଅଛି ଏଥି ।

ବୈକୁଣ୍ଠ ଭୁବନର କ ଅଛେ ଏହି କଥା
ଯାତେ ବୃକ୍ଷ ବିଷ୍ଣୁପୁରେ ଆଉ ତୁହି ନ ଥା ।
ଅ ଶାପ ବାକ୍ୟ ଶୁଣି ଭୟେ ଦେବନାଶ
କରଯୋଡ଼ି ଜଣାଇଲା ପିତାମହ ପାଶ ।
ଅଳ୍ପଦୋଷେ କୋପକରି ଦେଲ ବଡ଼ କଷ୍ଟ
ଏ ଶାପକୁ ଅନୁଗ୍ରହ କର ମୁକ୍ତିବାଟ ।
ବ୍ରହ୍ମା ବୋଇଲେ ତୁହି ତ ଅଟୁ ଦେବବୃକ୍ଷ
ବିଷ୍ଣୁ ଦ୍ୱାରେ ଥାଇ ସର୍ବ ଦେବଙ୍କ ବିପକ୍ଷ ।
ତୋର ତଳେ ପଡ଼ି ନଷ୍ଟ ହେଲେ ଦେବତାଏ
ତାଙ୍କୁ ଦୟା ନ ବହିଲୁ କଠିଣ ହୃଦୟେ ।
ପ୍ରାଣତ୍ୟାଗବେଳେ ବ୍ରହ୍ମା କହିଲେ କୋପରେ
ମୁକତ ହୋଇବୁ ଲକ୍ଷେ ଛତିଶ ବର୍ଷରେ ।
ସତ୍ୟ ଯେ ସତର ଲକ୍ଷ ସହସ୍ର ଅଠାଇଶ
ବାରଲକ୍ଷ ଛୟାନବେ ତ୍ରେତାର ପ୍ରକାଶ
ଦ୍ୱାପର ଯେ ଆଠଲକ୍ଷ ଚୌଷଠି ହଜାର
ଚାରିଲକ୍ଷ ବତିଶ ଯେ ସହସ୍ର କଳି ସାର ।
ଏହି ତ୍ରେତାଯୁଗ ଅନ୍ତେ ଦ୍ୱାପର ହୋଇବ
ଗୋଲକ ନାମରେ ଇନ୍ଦ୍ର ସ୍ୱର୍ଗରେ ବସିବ ।
ସେ ଦ୍ୱାପର ଆଠଲକ୍ଷ ଚୌଷଠିର ଅନ୍ତେ
ବୈବସ୍ୱତ ମନୁ ଭୋଗ ହୋଇବ ଲେଖନ୍ତେ ।
ଗୁଞ୍ଜି ନାମକ ବ୍ରହ୍ମାଏ ଜୟନ୍ତକ ଯମ
ବହୁରୂପା ନାମରେ କାଳ ପ୍ଲାବକ ଯେ ଧର୍ମ ।
ସମୀର ନାମେ ପବନ ବହିବ ଯେ ପୃଥ୍ୱୀ
ସୌରଭ ନାମେ ବାସୁକୀ ହୋଇଥିବ ତଥି ।
ଓଯାମକ ନାମରେ ରୁଦ୍ର ଉଗର ନାରଦ
ଭାନୁ ନାମରେ ଆଦିତ୍ୟ କାମ୍ୟକଟି ଚନ୍ଦ୍ର ।
ସେ ଯୁଗରେ ବିଷ୍ଣୁ ଶୁକ୍ଳାମ୍ବର ଅବତାର
କୁନ୍ଦପୁଷ୍ପପ୍ରାୟେ ନାରାୟଣଙ୍କ ଶରୀର ।
ସେହି ଦ୍ୱାରରେ ଅଗୁରୁ ବୃକ୍ଷ ହୋଇଥିବୁ
ବାରୁଣୀ କୁଣ୍ଡଳଗିରିପରେ ରକତିବୁ ।
ଭୃଷ୍ଟା ରୁ । ଶାପେ ଚନ୍ଦ୍ର ହେବ ଭସ୍ମୀଭୂତ
ପଞ୍ଚମୂର୍ତ୍ତି ହୋଇ ପୃଥ୍ୱୀମଧ୍ୟେ ହେବ ଜାତ ।
ଯୁଧିଷ୍ଠି ଭୀମାର୍ଜୁନ ନକୁଳ ସହଦେବ
ପଞ୍ଚଗ ବିଷ୍ଣୁ ହୋଇବ ଶତେ କଉରବ ।
ପର୍ଶୁରାମଙ୍କ ପ୍ରସାଦେ ଦ୍ରୋଣ ହୋଇ ସିଦ୍ଧା
ପଞ୍ଚୋଉର ଗୁରଙ୍କି ସେ ଶିକ୍ଷାଇବେ ବିଦ୍ୟା ।

ତାହାର ବିଦ୍ୟା ପରୀକ୍ଷା କରିବା ନିମନ୍ତେ
ଦ୍ରୋଣ ଛେଦିବ ତୋହର ତାଳପତ୍ର ଯେତେ
ତୁ ଯେମନ୍ତେ ଅନିମିତ୍ତେ ଦେବ ପ୍ରାଣ ହରି
ସେହିପରି ତୋର ଅଙ୍ଗ ଛେଦି ଦ୍ରୋଣଗୁରୁ
ତୋର ମୂଳେ ଦେବ ଅଗ୍ନି ଯେହ୍ନେ ଲୁଡ଼ ଲୁଡ଼
ସେପରି ପୃଥ୍ୱୀରେ ରକ୍ତନଦୀରେ ତୁ ବୁଡ଼ ।
ସେ ଦ୍ୱୀପରେ ଆଠଲକ୍ଷ ବର୍ଷର ସମ୍ପୂର୍ଣ୍ଣେ
ପାଣ୍ଡବ କୌରବେ ତହିଁ ହେବେ ଅନ୍ୟୋଅନ୍ୟ
ଇନ୍ଦ୍ରପ୍ରସ୍ଥ ବାରୁଣାର ଦୁଇ ମଧ୍ୟ ଭାଗେ
କୁରୁକ୍ଷେତ୍ର ଦୁଇଭାଗେ ବଣ୍ଟା ହେବ ଆଗେ ।
କୃଷ୍ଣ ଆଜ୍ଞାକ୍ରମେ ଭୀମ ଦୁଃଶାସନ ବେନି
କୁଣ୍ଡଳୀପର୍ବଙ୍କୁ ତୋତେ ଆସିବେ ସେ ଘେନି
ଶ୍ରୀକୃଷ୍ଣ ପୋତିଲେ ତୋତେ ମଧ୍ୟସ୍ଥଳେ ନେଇ
ମୁକତ ହୋଇ ଆସିବୁ ତେବେ ତୁହି ଯାଇ ।
ଶ୍ରୀକୃଷ୍ଣ କୁରୁ ପାଣ୍ଡବ କୁରୁକ୍ଷେତ୍ର ସ୍ଥାନ
ଦର୍ଶନ କରି ଆସିବୁ ତେବେ ନିଜ ସ୍ଥାନ ।
ରକତ ନଦୀରେ ତୋର ଶାଖା ବୁଡ଼ିଯିବ
ମର୍ତ୍ତ୍ୟରେ ରକ୍ତବନ୍ଧନ ତୋର ନାମ ହେବ ।
ଶୁଣ ହେ ମନୁପୁରୁଷ କହେ ବ୍ରହ୍ମବେତ୍ତା
ତୁ ଯେ ପୁଚ୍ଛା କଲୁ ଶୁଭସ୍ତମ୍ଭର ବାରତା ।
ବ୍ରହ୍ମାଙ୍କର ଶାପ ପାଇ ମଧ୍ୟପୁରେ ଥିଲି
ନାରାୟଣ ଦରଶନେ ମୁକତ ହୋଇଲି ।
ଜୟ ଜୟ ଜଗନ୍ନାଥ ଜଗତ ତାରଣ
ଶାରଳା ଦାସ ତୋ ପାଦେ ପଶଇ ଶରଣ ।

---

## ଭାରତୀୟ ରାଜାମାନଙ୍କୁ ଯୁଦ୍ଧ ନିମନ୍ତେ ଆମନ୍ତ୍ରଣ

ସାନନ୍ଦେ କହିଲେ ପୁଣ ବୈବସ୍ୱତ ମନୁ
ଏବେ ଯୁଦ୍ଧ ସମାଚାର କହ କୁମ୍ଭସୂନୁ ।
କହନ୍ତି ଅଗସ୍ତି ମୁନି ପଣ୍ଡିତ ଅଗ୍ରଣୀ
ଶୁଣ ମନଦେଇ ଏବେ ଆହେ ନୃପମଣି ।
ଆଶ୍ୱିନ ଅସିତପକ୍ଷ ଦ୍ୱାଦଶୀର ଦିନ
ସୋମବାର ପୂର୍ବାଫାଲ୍‌ଗୁନୀ ବିଦ୍ୟମାନ ।
ପୂର୍ବେ ପାଣ୍ଡବ ପଶ୍ଚିମ ଦିଗେ କଉରବ
ଦୁର୍ଯ୍ୟୋଧନ ପୁଚ୍ଛାକଲେ ଯୁଧିଷ୍ଠିର ଦେବ ।
ବାବୁ ସମର ହୋଇବ ତୋହର ମୋହର
ତୁମ୍ଭେ ଶତଭାଇ ଆମ୍ଭେ ପଞ୍ଚ ସହୋଦର ।
ତୁମ୍ଭର ଆମ୍ଭର ସିନା ହୋଇଲା ଅଭାବ
ବନ୍ଧୁବାନ୍ଧବେ କପାଇଁ ନାଶଯିବେ ସର୍ବ ।
ସେମାନେ ମହତଆତ୍ମା ଆଉ ପୁଣ୍ୟ ଜନ
କୁଟୁମ୍ବ ପୋଷିବା ପାଇଁ କରନ୍ତି ବିଧାନ ।
ରାଜ୍ୟ ରାଜ୍ୟଭାର ଆଉ ଧନର ନିମନ୍ତେ
ଆମ୍ଭେ ନାଶ କରାଇବା କୁଟୁମ୍ବ କେମନ୍ତେ ।
ଦୁର୍ଯ୍ୟୋଧନ ବୋଲେ ଯୁକ୍ତିଯୁକ୍ତ ଏ ନୁହଇ
ବନ୍ଧୁପଣ ଜାଣିବାର ବେଳ ସେ ଅଟଇ ।
ବିବାଦରେ ରାଜଦ୍ୱାରେ ଆବର ଶ୍ମଶାନେ
ଏତେ ସ୍ଥାନରେ ପରୀକ୍ଷା ହୁଅନ୍ତି ବନ୍ଧୁମାନେ ।
ଦୁଇକୁଳରେ ଆମ୍ଭର ହୋଇବ ବିବାଦ
ସମସ୍ତେ ଜାଣିବେ କୁରୁ ପାଣ୍ଡଙ୍କ ଯୁଦ୍ଧ ।
ସକଳ ସ୍ଥାନକୁ ଏବେ ପଠାଇବା ଦୂତ
ସକଳ ରାଜାମାନଙ୍କୁ କରାଇବା ଜ୍ଞାତ ।
ଯେହୁ ଯାହାର ସପକ୍ଷ ଆସୁ ସୈନ୍ୟ ଘେନି
ଦେଖିବା କାହାର କେତେ ମିଳଇ ସଇନ ।
ଦୁର୍ଯ୍ୟୋଧନ ଶାଡ଼ି ଦେଲା ଶଲ୍ୟ ଶକୁନିକି
ଜୟଦ୍ରଥ ବିକର୍ଣ୍ଣ ଯେ ଘେନି ଏ ଚାରିଙ୍କି ।
ହେ ପାଣ୍ଡବ ତୁମ୍ଭେ ଦିଅ ଦୂତ ଜଣ ଚାରି
ଶୁଭ ଅନୁକୂଳେ ଯାନ୍ତୁ ନିମନ୍ତ୍ରଣ କରି ।
ଯୁଧିଷ୍ଠି ଦେବ ବୋଇଲେ ନାହିଁ ମୋର ଦୂତ
ଶଲ୍ୟମନ୍ତ୍ରୀ ଯା କରିବେ ମୋର ସନମତ ।
ତୁମ୍ଭେ ଚାରିଜଣ ସତ୍ୟଧର୍ମକୁ ଆଚରି
ଶୁଭ ଅନୁକୂଳ କରି ମଙ୍ଗଳ ଉଚ୍ଚାରି ।
ପଶ୍ଚିମ ଦିଗକୁ ଶଲ୍ୟ ଉତ୍ତରେ ବିକର୍ଣ୍ଣ
ଦକ୍ଷିଣ ଦିଗେ ଶକୁନି ପୂର୍ବେ ସିନ୍ଧୁରାଣ ।
ଦୁର୍ଯ୍ୟୋଧନ ବୋଇଲାକ ନିରଞ୍ଜନ ରାଣ
ଦୁଇପକ୍ଷ ନାମ କହି କରି ନିମନ୍ତ୍ରଣ ।
ଯାହାର ଯାହା ସହିତ ଥିବ ପ୍ରୀତିଭାବ
ଇଚ୍ଛାରେ ତାହା ସହିତ ଆସି ସେ ମିଳିବ ।
ଆଜ୍ଞା ପ୍ରମାଣେ ଚଳିଲେ ଶଲ୍ୟ ଯେ ଶକୁନି
ଜୟଦ୍ରଥ ବିକର୍ଣ୍ଣଙ୍କୁ ସଙ୍ଗତରେ ଘେନି ।
ସବୁ ଦେଶରେ ପଶନ୍ତି ସମଦଣ୍ଡ ଘେନି
ବୋଲନ୍ତି କୁରୁପାଣ୍ଡବ ହେଲେ ଅନ୍ୟୋଅନ୍ୟ ।

ଶୁଆ ଦେଇଣ ବୋଲନ୍ତ ଯାଠାରେ ଯା ପ୍ରୀତି
ଥାଇ ସେନାଣ ମିଳିବ ତାହାଙ୍କର କତି ।
ପୂର୍ବଦ୍ୱାରରେ ଜଗିଲ ଯୁଧିଷ୍ଠିର ଦଳ
ପଶ୍ଚିମେ ହସ୍ତିନା ଅଟେ ଦୁର୍ଯ୍ୟୋଧନ ଦଳ ।
ପୂର୍ବର ଦଧିମଙ୍ଗଳ ବୋଲି ଏକ ରାଜା
ତିନକ୍ଷୌଣୀ ବଳେ କଲା ଯୁଧିଷ୍ଠିରଙ୍କୁ ପୂଜା ।
କର୍ଣ୍ଣର ଦେଶର ରାଜା ନାମ ଗଣପତି
ପାଞ୍ଚକ୍ଷୌଣୀ ବଳେ ଆସେ ଯୁଧିଷ୍ଠିରଙ୍କ କତି ।
ମଗଧର ଦେଶ ରାଜା ହରି ନରପତି
ସାତକ୍ଷୌଣୀ ବଳେ ଆସେ ଦୁର୍ଯ୍ୟୋଧନ କତି
ନିରଞ୍ଜନ ଦେଶ ରାଜା ନାମ ବୀରବାହୁ
ନବକ୍ଷୌଣୀସୈନ୍ୟେମିଳେହସ୍ତିନାରେ ସେହୁ
ମାନଭଙ୍ଗ ଦେଶ ରାଜା ଶ୍ରୀମାନ ଅର୍ଜୁନ
ବେନକ୍ଷୌଣୀ ବଳେ କଲା ଧର୍ମଙ୍କୁ ଦର୍ଶନ ।
ରଣଭଙ୍ଗ ଦେଶ ରାଜା ନାମ ଶମ୍ଭୁରଣ
ନବକ୍ଷୌଣୀ ସୈନ୍ୟେ କଲା ହସ୍ତିନା ପ୍ରୟାଣ
ଉତ୍ତମ ଦେଶର କେତୁ ନାମେ ନରପତି
ଷଡ଼କ୍ଷୌଣୀ ସୈନ୍ୟେମିଳେ ଦୁର୍ଯ୍ୟୋଧନ କତି
ଅରବନ୍ଧ ଦେଶରାଜା ନାମ କର୍ଣ୍ଣକେଶୀ
ଏଗାର କ୍ଷଉଣୀ ବଳେ ଦୁର୍ଯ୍ୟୋଧନ ପଶି ।
ପଶ୍ଚିମ ଦେଶର ରାଜା ଧୃଷ୍ଟ ଚକ୍ରବର୍ତ୍ତୀ
ତିନକ୍ଷୌଣୀ ବଳେ ଆସେ ଧର୍ମଙ୍କର କତି ।
ବାଣପୁର ନଗ୍ର ରାଜା ଚନ୍ଦ୍ରବଂଶ ମଲ୍ଲେ
ସାତକ୍ଷୌଣୀ ଦଳ ମିଳେ ଦୁର୍ଯ୍ୟୋଧନ ଭୁଲେ
ମଣ୍ଡଧର ରାଜା ଅଟେ କଷା ଜଗତ୍ ଶ୍ରେଷ୍ଠୀ
ସେ ରାଜା ଦର୍ଶନ କଲା ଯାଇଣ ଯୁଧିଷ୍ଠି ।
ପଦ୍ମଦଳ ଦେଶ ରାଜା ଶ୍ରୀପଦ୍ମକେଶରୀ
ସ୍ୱରକ୍ଷୌଣୀ ବଳେ ଧର୍ମେ ସେବେ ଅଧିକରି
ବେଦପୁର ଦେଶ ରାଜା ନାମ ମହିପାଳ
ହସ୍ତିନାକୁ ଚଳେ ସ୍ୱରକ୍ଷୌଣୀ ସେନ ବଳ ।
ଜରାସନ୍ଧ ପୁତ୍ର ଜୟଦେବ ସହଦେବ
ସାତକ୍ଷୌଣୀ ବଳେ ଚଳେ ଯୁଧିଷ୍ଠିର ଠାବ
କାମପୁର ଦେଶ ରାଜା ନାମ କାମପାଳ
ହସ୍ତିନାକୁ ଚଳେ ସେନ ଦଶକ୍ଷୌଣୀ ବଳ ।
କଟପା ଦେଶର ରାଜା କମଳ ନୃମଣି
ଦୁର୍ଯ୍ୟୋଧନଭେଟେ ଦଶକ୍ଷୌଣୀସୈନ୍ୟ ସେନ

ମାଳବ ଦେଶର ରାଜା ନାମ କୃପବ୍ରହ୍ମା
ତାହାର ହସ୍ତିର ନାମ ଅଟେ ଅଶ୍ୱତ୍ଥାମା ।
ନବକ୍ଷୌଣୀ ବଳ ଘେନି ସେହୁ ନୃପସାଇଁ
ଦୁର୍ଯ୍ୟୋଧନ ରାଜାକୁ ସେ ଦର୍ଶନ କରଇ ।
କାଶୀଦେଶ ନୃପବର ନାମ କାଶୀଶ୍ୱର
ପରାର୍ଦ୍ଧ ବଳରେ ଆସେ ଧର୍ମଙ୍କ ଛାମୁର ।
ଦକ୍ଷିଣ କୋଶଳ ରାଜା ଭୂମନ୍ୟୁ ନୃପତି
ଦୁର୍ଯ୍ୟୋଧନ ରାଜାର ସେ ଶ୍ୱଶୁର ଅଟନ୍ତି ।
ଦକ୍ଷିଣ ରାଜାମାନଙ୍କୁ ଏକମେଳ କରି
ଆସନ୍ତେ ସେ ବେଗେ ପଥେ ପଡ଼େ ହାଲହୁରି ।
ଅଷ୍ଟାଦଶ କ୍ଷୌଣୀ ନବଗଡ଼ ପାରିଦଣ୍ଡ
ଦୁର୍ଯ୍ୟୋଧନକୁ ଭେଟିଲା ଅର୍ଦ୍ଧ ଭୂମିଖଣ୍ଡ ।
ଜ୍ୟୋତିପୁର ରାଜାନାମ ଲକ୍ଷ୍ମଣ ନୃପତି
ପାଞ୍ଚକ୍ଷୌଣୀ ସୈନ୍ୟେ ମିଳେ ଲକ୍ଷ୍ମଣଙ୍କ କତି
ନୈର୍ଋତ ଦେଶର ରାଜାନାମ ନରମାଳ
ସାତକ୍ଷୌଣି ବଳଘେନି ହସ୍ତିନାରେ ମିଳ ।
କାମାକ୍ଷୀ ଦେଶର ରାଜା ନାମ କାମପାଳ
ତିନକ୍ଷୌଣୀ ବଳେ ଧର୍ମ ସଙ୍ଗେ ହେଲା ମେଳ ।
ବଶିକେଶନ ବୋଲିଣ ଚେଦିଦେଶ ରାଜା
ସାତକ୍ଷୌଣୀ ବଳେ ଦୁର୍ଯ୍ୟୋଧନ କଲା ପୂଜା
ମଙ୍ଗଳ ଦେଶର ବାମଦେବ ନୃପମଣି
କୁରୁବଳରେ ପ୍ରବେଶ ବୀର ଚୂଡ଼ାମଣି ।
ମାଧୂର୍ଯ୍ୟସେନ ତୈଲଙ୍ଗ ଦେଶର ସେ ରାଜା
ନବକ୍ଷୌଣୀ ବଳେ ଦୁର୍ଯ୍ୟୋଧନେ କଲା ପୂଜା
ମଞ୍ଜୁଷା ଦେଶର ରାଜା ବୀରସେନ ବୀର
ଆଠକ୍ଷୌଣୀ ବଳେ ଚଳେ ହସ୍ତିନା ନଗର ।
ହିହୁଡ଼ ଦେଶର ରାଜା ହିଅମ୍ବକେଶ୍ୱର
ପାଞ୍ଚକ୍ଷୌଣୀ ସୈନ୍ୟେ ମିଳେ ଯୁଧିଷ୍ଠି ଛାମୁର
ମଳରାମ ବୋଲିକରି କବରର ରାଜା
ଦ୍ୱିବିଂଶତି ଲକ୍ଷେ କଲା ଦୁର୍ଯ୍ୟୋଧନେ ପୂଜା ।
ମେଦ୍ୱାରଣ୍ୟର ରାଜା ସୌମ୍ୟ ଚକ୍ରବର୍ତ୍ତୀ;
ବେନକ୍ଷୌଣୀ ବଳେ କଲା ପାଣ୍ଡବରେ ପ୍ରୀତି
ଘଟଦେଶର ଭୂପାଳ ବ୍ରହ୍ମବୋଲି ରାଜା
ଦଶଯନ୍ତ୍ର ବଳେ କଲା ଦୁର୍ଯ୍ୟୋଧନେ ପୂଜା ।
ମନ୍ଦାର ଦେଶର ରାଜା ନାମ ଇରାଇତ
ଯୁଧିଷ୍ଠି ଦର୍ଶନ କଲା ଘେନି ଲକ୍ଷପାଞ୍ଚ ।

ମହ୍ଲାର ଦେଶର ରାଜା ଚଣ୍ଡଧର୍ମ ବଂଶ
ସାତକ୍ଷୌଣୀ ବଳେ ଭେଟେ ଯାଇ କୁରୁଈଶ
ବେଲ୍ଲଳ ଦେଶର ରାଜା ଦାରୁ ଚକ୍ରବର୍ତ୍ତୀ
ଷଡ଼କ୍ଷୌଣୀ ବଳେ ମିଳେ ଦୁର୍ଯ୍ୟୋଧନ କତି
କଶାଉର ଦେଶ ରାଜା ନାମ ତାର ନଳ
ଧର୍ମେ ଭେଟେ ସଙ୍ଗେ ଘେନି ପାଞ୍ଚକ୍ଷୌଣୀବଳ
କେଚର ରାଘବ ରାଜା ବୀର ଚକ୍ରବର୍ତ୍ତୀ
ଏକାଦଶ କ୍ଷୌଣୀ ଭୁଲେ ହସ୍ତିନା ଗମନ୍ତି ।
କୁନ୍ତର ଦେଶର ରାଜା ଅଟଇ ଦୁର୍ଜ୍ଜନ
ପଞ୍ଚସାଗରେ ଭେଟଇ ରାଜା ଦୁର୍ଯ୍ୟୋଧନ ।
ସାମ୍ଭକଦେଶ ବୋଲିଣ ବଡ଼ାଇ ଗରିଷ୍ଠ
ସାତକ୍ଷୌଣୀ ବଳେ ହେଲ ହସ୍ତିନା ପଇଠ ।
କୌଶିକ ଦେଶର ରାଜା ଶ୍ରୀକୃଷ୍ଣ କେଶବ
ନିଅର୍ବୁଦ ଯୋଦ୍ଧା ଘେନି ଭେଟେ କଉରବ
କର୍ଣ୍ଣକୂଟ ଦେଶ ରାଜା ନାମ ସେଉମାଳୀ
ବେନିକ୍ଷୌଣୀ ସୈନ୍ୟ ଘେନି ହସ୍ତିନାରେ ମିଳି
କନାଉଜ ଦେଶ ରାଜା ନାମ ନୃପମଲ୍ଲ
ଯୁଧିଷ୍ଠିରଙ୍କୁ ଭେଟେ ଘେନି ତିନିକ୍ଷୌଣୀ ବଳ ।
ଛଅପୁର ଦେଶ ରାଜା ନାମ ବଜ୍ରନେମି
ପଞ୍ଚସାଗରେ ଧର୍ମଙ୍କୁ ହେଲ ପରଣାମି ।
ଗାନ୍ଧାର ଦେଶ ଶକୁନି ମନ୍ତ୍ରୀ ଚୂଡ଼ାମଣି
ଦୁର୍ଯ୍ୟୋଧନେ ଭେଟେ ଘେନି ଏକାଦଶ କ୍ଷୌଣୀ
ପାରିଜାତକର ରାଜା ନାମ ନରକୁଳ
ଯୁଧିଷ୍ଠିରଙ୍କୁ ଭେଟେ ଘେନି ତିନିକ୍ଷୌଣୀ ବଳ ॥
କରମଣ୍ଡଳର ରାଜା ସପ୍ତ ଚକ୍ରବର୍ତ୍ତୀ
ତେରକ୍ଷୌଣୀ ବଳଘେନି ହସ୍ତିନା ଚଳନ୍ତି ।
ଭୂପାଳ ଦେଶର ରାଜା ନାମ ହନୁମନ୍ତ
ଯୁଧିଷ୍ଠିର ଦର୍ଶନ କଲ ଘେନି ପଦ୍ମ ରଥ ।
ବାରସ୍ଵର୍ଣ୍ଣପୁର ରାଜା ନାମ ମହେଶ୍ଵର
ତିନିବୃନ୍ଦ ସୈନ୍ୟ ମିଶେ ଯୁଧିଷ୍ଠିର ଆଟର ।
ବୃନ୍ଦାର୍କ ଦେଶର ରାଜା ନାମ କର୍ଣ୍ଣଜଙ୍ଘ
ଦଶକ୍ଷୌଣୀ ସୈନ୍ୟ ଘେନି ଭେଟେ କଉରବ
ନୀଳସେନ ବୋଲିକରି ବିନ୍ଧ୍ୟବର ରାଜା
ଦୁଇପଦ୍ମ ଥାଟେ କଲ ଯୁଧିଷ୍ଠିରଙ୍କୁ ପୂଜା ।
ଶାଖପୁର ଦେଶ ରାଜା ନାମ ଚନ୍ଦ୍ରନାଭ
ପଞ୍ଚଷଠି ପଦ୍ମ ଭୁଲେ ଭେଟେ କଉରବ ।

ଶଙ୍ଖମଣ୍ଡଳର ରାଜା ନାମ ପଦ୍ମନାଭ
ଏକକ୍ଷୌଣୀ ସୈନ୍ୟ ଭେଟେ ଯୁଧିଷ୍ଠିର ଦେବ
ଟାବଣି ଦେଶର ରାଜା ନାମ ଛତ୍ରପାଳ
ହସ୍ତିନା ଚଳେ ଏଗାରକ୍ଷୌଣୀ ଘେନି ବଳ
ଜ୍ୟୋତିପୁର ରାଜା ନାମ ବଧୂବଜସେନ
ପାଞ୍ଚକ୍ଷୌଣୀ ବଳେ ଭେଟେ ଯୁଧିଷ୍ଠିର ରାଜନ ।
ଅଙ୍ଗଦେଶ ରାଜା ନାମ ଅଟଇ ଦରଦ
ପାଞ୍ଚକ୍ଷୌଣୀ ବଳେ ଭେଟେ ସେ ମାନଗୋବିନ୍ଦ
ଓଡ଼ଶା ଦେଶର ରାଜା ନାମ ନରବଳ
ନବକ୍ଷୌଣୀ ବଳେ ଗଲ ହସ୍ତିନାକୁ ଚଳ ।
ଗୌର ମଣ୍ଡଳର ରାଜା ନାମ ଚେଟସେନ
ନିସାଗର ବଳେ କଲ ଯୁଧିଷ୍ଠିର ଦର୍ଶନ ।
ଅନଳ ବାହୁ ବୋଲିଣ ବେଲୁପୁର ରାଜା
ଅସଂଖ୍ୟ ସୈନ୍ୟେ କୌରବେ କଲ ଯାଇ ପୂଜା
ପାଞ୍ଚକ୍ଷୌଣୀ ସୈନ୍ୟ ଘେନି ନୃପ ସତ୍ତ୍ଵବନ୍ତ
ମାନଗୋବିନ୍ଦଙ୍କୁ ଯାଇ କଲ ସେହୁ ଭେଟ ।
କାନପୁରନଗ୍ର ରାଜା ଶ୍ରୀବସନ୍ତ ସେନ
ନିସାଗର ସୈନ୍ୟେ ଧର୍ମ କଲେ ଦରଶନ
ରଣପୁର ରାଜ୍ୟ ରାଜା ନାମ ବଜ୍ରପାକ୍ଷ
ଷଡ଼କ୍ଷୌଣୀ ସୈନ୍ୟେ ହେଲ ପାଣ୍ଡବଙ୍କ ପକ୍ଷ ।
ଆନନ୍ଦ ପୁରର ରାଜା ନାମ ରତ୍ନପର୍ଣ୍ଣ
ନିଅର୍ବୁଦ ସୈନ୍ୟେ କରେ ଧର୍ମଙ୍କୁ ଦର୍ଶନ ।
ନାରାୟଣ ପୁର ରାଜା ବିକ୍ରମ କେଶରୀ
ଯୁଧିଷ୍ଠିରଙ୍କୁ ଦେଖା କରେ କୋଟି ସୈନ୍ୟ ଧରି
ହିଡ଼ମ୍ବବନର ଘଟୋତ୍କଚ ନରପତି
ସାତ ପଦ୍ମ ସୈନ୍ୟରେ ଭେଟେ ଧର୍ମକତି
ଶିବପୁର ନରପତି ନାମ ମହୋଦର
ଲକ୍ଷେଯୋଦ୍ଧା ଘେନି ମିଶେ ଯୁଧିଷ୍ଠିର ସଙ୍ଗର
ସୁବର୍ଣ୍ଣପୁର ନରେଶ ନାମ ଯୋଗେଶ୍ଵର
ତିନି ସାଗରେ ମିଳିଲ ହସ୍ତିନା ନଗର ।
ଚନ୍ଦ୍ରପୁର ନରପତି ନାମ କଳକାଳ
ଦୁର୍ଯ୍ୟୋଧନ ଭେଟେ ଘେନି ପାଞ୍ଚକ୍ଷୌଣୀ ବଳ
ଦ୍ରୁପଦ ବୋଲିଣ ସେହୁ ପଞ୍ଚାଳର ରାଜା
ପଦ୍ମେ ରଥୀଙ୍କୁ ଘେନି ଧର୍ମେ କଲ ପୂଜା
ସିନ୍ଧୁଦେଶ ନରପତି ନାମ ଜୟଦ୍ରଥ
ଦୁର୍ଯ୍ୟୋଧନ ଭେଟେ ନେଇ ଦଶସହସ୍ର ରଥ ।

ମଦ୍ରମତ୍ସ୍ୟ ଦେଶ ରାଜା ଅଟେ ଯେ ବିରାଟ
ସାତପଦ୍ମ ସୈନ୍ୟ ଘେନି ଧର୍ମେ ହେଲା ଭେଟ
ଶବର ଦେଶର ରାଜା ନାମରେ ଅଜର
ଏଗାର ଅର୍ବୁଦ ସୈନ୍ୟେ ଭେଟେ ଯୁଧିଷ୍ଠିର
ମହେନ୍ଦ୍ରୀ ଦେଶର ରାଜା ନାମ ଦାମୋଦର
ସାଗରେ ସୈନ୍ୟ ଘେନଣ ଭେଟେ ଯୁଧିଷ୍ଠିର
ବେଦପୁର ନରପତ ରାଜ ଚନ୍ଦ୍ରସେନ
ପାଞ୍ଚକ୍ଷୌଣୀ ବଳେ କଲା ଯୁଧିଷ୍ଠି ଦର୍ଶନ ।
ପିଙ୍ଗଳାପୁର ବୋଲଣ ଏକଚକ୍ର ରାଜା
ନବସାଗରେ ଯୁଧିଷ୍ଠି ଦେବେ କଲା ପୂଜା
ପକ୍ଷାପ୍ରତ ନଗ୍ର ରାଜା ଦକ୍ଷ ପ୍ରଜାପତ
ନବକ୍ଷୌଣୀ ବଳେ ଭେଟେ ଦୁର୍ଯ୍ୟୋଧନ କତ
ଅନୁକ୍ଷପୁର ରାଜା ନରସିଂହସେନ
ପଞ୍ଚଷଠି କୋଟି ସୈନ୍ୟ ପାଣ୍ଡବ ମିଳନ
କରଷାରପୁର ରାଜା ନାମ ମାରକଣ୍ଡେ
ଦୁର୍ଯ୍ୟୋଧନ ଭେଟେ ନବଶତ ପାରଦଣ୍ଡେ ।
ବର୍ଦ୍ଧାଣ ଦେଶର ରାଜା ବାସୁଦେବ ରାୟେ
ତନିଲକ୍ଷସୈନ୍ୟେ ଧର୍ମ ଦେବେ ଭେଟିହିଏ ।
ବ୍ରହ୍ମଦଣ୍ଡ ଦେଶ ରାଜା ନାମ ବ୍ରହ୍ମସେନ
ପାଞ୍ଚଲକ୍ଷ ସୈନ୍ୟେ ଧର୍ମ କଲା ଦରଶନ ।
ସିଂହକୁରଗର ରାଜା ନାମ ବୃନ୍ଦାବନ
ହସ୍ତିନାକୁ ଗଲା ଘେନି ନବକ୍ଷୌଣୀ ବଳ ।
ମାର୍ଲୀଞ୍ଜଦେଶ ମନ୍ଦର ପର୍ବତରେ ଚଳେ
ଦୁର୍ଯ୍ୟୋଧନଙ୍କୁ ଦର୍ଶନ କରିଲେ ଭୂପାଳେ
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଏହି ଚାରିଜାତ
ଦୈତ୍ୟ ଦାନବ ପିଶାଚ ଅସୁର ନୃପତ ।
ଲୁବ୍ଧକ କଛ ମହାର ଗଣ୍ଡ ମହାରାଷ୍ଟ୍ର
ତୈଲଙ୍ଗ ତଦ୍ରାବିଡ଼ ବଂଶ ସମରେ ପ୍ରବିଷ୍ଟ ।
ବଦନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ସର୍ବଦେଶ ରାଜାମାନେ କଲେ ଆଗମନ ।
ଏ ବିଧିରେ ଅଷ୍ଟାଦଶ ବଂଶ ନରପତ
ଦୁଇକୁଳ ଆହୋଇଲେ ଯା ସଙ୍ଗେ ଯା ପ୍ରୀତି
କର୍ଣ୍ଣାଟ ବଙ୍ଗ ତୈଲଙ୍ଗ ଦ୍ରାବିଡ଼ ମହାର
ସସୈନ୍ୟେ ଆସନ୍ତି ରାଜା ଅନେକ ଦେଶର ।
ଗୌଡ଼ ମାର୍ଜ୍ଜନ ଡାହୁଡ଼ ହେଠାନ ମହାର
କାମାକ୍ଷୀ ବଙ୍ଗଳା ଆଉ ବେଲବଳପୁର ।
ଷୀରଗାଲବ ଗୁଞ୍ଜର ପୁଣିହିଁ ସୌରାଷ୍ଟ୍ର
କାଶୀ କଉଶିକ କୁବ୍ଜ ଆଉ ମହାରାଷ୍ଟ୍ର ।
ଛନ ବଛନ କୋଶଳଗୁର ବାରସ୍ତ
ନେପାଳ ଅରବନ୍ଦ ଯେ ରାଜା ଗୌଡ଼ ଇତ ।
ଏ ବିଧିରେ ଚାରିଉଣା ଲକ୍ଷେକ ରାଜନ
ପଶ୍ଚିମେ ପଞ୍ଚସହସ୍ର କଲେ ଆଗମନ ।
ଉତ୍ତରୁ ଚାଳିଶସସ୍ର ଚହୁଁ ଉଣା ଏକ
ପୂର୍ବରୁ ତନି ସହସ୍ର ନୃପତ ନାୟକ ।
ଦକ୍ଷିଣରୁ ଏକଉଣା ଚାରିସସ୍ର ଜାଣ
ଏମନ୍ତରୂପେ ଲକ୍ଷେରାଜା ଧାତାର ନିର୍ମାଣ ।
ପଶ୍ଚିମରୁ ନ ଆସିଲା ରାଜା ମୃଗସେନ
ଉତ୍ତରୁ ନ ଆସେ ଜଗମୋହନ ରାଜନ
ଜଟାଳସିଂହ ରାଜନ ପୂର୍ବରୁ ନ ଆସି
ଦକ୍ଷିଣୁ ନଇଲା ରତ୍ନପର୍ଣ୍ଣ ସୂର୍ଯ୍ୟବଂଶୀ ।
ଆଦ୍ୟରୁ ଲକ୍ଷକୁ ଚାରି ଉଣା ରାଜା ଥିଲେ
ଏବେ ଆଠଉଣା ଲକ୍ଷେ ସମରେ ପଶିଲେ
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ବାରୁଣା ଜଇନ୍ତା
ହସ୍ତିନା ମାଡ଼ି ରହିଲେ ସୈନ୍ୟ ଅକଳନ୍ତା ।
ଦେବଙ୍କୁ ଦୁର୍ଲ୍ଲଭ ଅଟେ ନରେ ଅଗୋଚର
ଦେଖି ଅନ୍ତ କରିବାକୁ ସମର୍ଥ କାହାର ।
କୃପାଜଳର ନନ୍ଦମା ଦେବୀ ଶତଶ୍ରାପ୍ସା
କମଳର ମାଳ ହୋଇ ରହୁ ମୋର ହୃସ୍ଥା ।
କେନାବର୍ଣ୍ଣୀ ପାଟଣାରେ ଯେ କନକାବଶ
ଚନ୍ଦ୍ରଭାଗା ମହାତୀର୍ଥ ଅପୋଡ଼ା ସେ ପୃଥ୍ୱୀ ।
ଗୋପନେ ପ୍ରସନ୍ନ ହେଲୁ କରାତର ପ୍ରତ
ନାମ ସଙ୍କେତ ଶାରଳା ସିଦ୍ଧ ଚଣ୍ଡୀମୂର୍ତ୍ତି ।
ନବକୋଟି ମୁଦ୍ରା ଯେଉଁ ଦେବୀଙ୍କର ସିଦ୍ଧି
ଜ୍ଞାନଦାୟୀ ମାହେଶ୍ୱରୀ ସର୍ବଜନ ବୋଧି ।
କୋଟିଏ ତୀର୍ଥ ଘେନିଣ ନୃପତ ପୁଷ୍କର
ସର୍ବଦା ହିଳି କରଇ ତୋହର ପୟର ।
ପରଲୋକ ବାନ୍ଧବ ଗୋ ଦେବୀ କାଳହରି
ଅଳ୍ପ ଭକ୍ତିରେ ଅଭୟ ଦେଉ ବରଦାନି ।
ମୋହର କି ବୁଦ୍ଧି ଅଛି ଲେଖିବାକୁ ତୁହି
ଭୁହି ବାକ୍ୟଦେବୀ ଜ୍ଞାନ କରାଅ ବ୍ୟକତ ।
ନୀଳଇନ୍ଦୀବର ତୁଚ୍ଛ କରେ ଯା ମୁଖଛବି
ମନ କଳ୍ପବଟ ତଳେ ପାଇଲଇଁ ଭେଟି ।

ଶ୍ରୀଚଣ୍ଡୀ ଶାରଳା ପାଦେ ସଦା ଦେଇ ଚିତ୍ତ
କହଇ ଶାରଳାଦାସ ଭାରତ ଚରିତ ।

---

## କୁରୁ ପାଣ୍ଡବଙ୍କର ସୈନ୍ୟ ସଂଖ୍ୟା ଶ୍ରୀକୃଷ୍ଣଙ୍କ ଦ୍ୱାରା ବେଲ୍ଲାଳସେନ ମସ୍ତକ ଛେଦନ ଓ ଶୁଭସ୍ତମ୍ଭ ସ୍ଥାପନ ଏବଂ ପାଣ୍ଡବ-ମାନଙ୍କର ଛିନ୍ନତା

ପଚ୍ଛରନ୍ତି ଅଗସ୍ତିଙ୍କି ମନୁ ନୃପବର
କହ ଏଥୁଅନ୍ତେ ହେଲା କେସ ସମାଚାର ।
କହନ୍ତି ଅଗସ୍ତି ମୁନି ଶୁଣ ରାଜା ଏବେ
ପୁଣି ଯେଉଁ କଥା ହେଲା ଉଦଯୋଗ ପର୍ବେ ।
ଯୁଧିଷ୍ଠିର ପଚ୍ଛରିଲେ ସହଦେବେ ଚାହିଁ
କହ କାର କେତେ ସୈନ୍ୟହେଲେ ଠୁଳହୋଇ
ଶୁଣି ସହଦେବ ଧର୍ମ ଅଗ୍ରତେ କହିଲା
ଶୁଣ କହୁଛି ଯାହାର ଯେତେକ ହୋଇଲା ।
ସତ୍ତୁରି ସହସ୍ର ନୃପଙ୍କୁ ହେଲେ ଗୁରି ନ୍ୟୁନ
ଏତେ ରାଜା ପାଇଅଛି ଜାଣ ଦୁର୍ଯ୍ୟୋଧନ ।
ପୁଣ ସୈନ୍ୟ ଯେତେ ତାର ଶୁଣ ଧର୍ମରାୟ
ଦ୍ରୋଣଗୁରୁ କର୍ଣ୍ଣବୀର ଶଲ୍ୟ ଯେ ଗାଙ୍ଗେୟ ।
ଭୂରିଶ୍ରବା ଜୟଦ୍ରଥ ପୁଣି କୃପବ୍ରହ୍ମା
ଶଲ୍ୟ ବିକର୍ଣ୍ଣ ଆବର ବୀର ଅଶ୍ୱତ୍ଥାମା ।
ଶକୁନି ବାହ୍ଲିକେଶରି ଆଉ ସୋମଦତ୍ତ
ଅଳମ୍ବୁଷ ଅଳାୟୁଧ ସଙ୍ଗରେ ନିଶାଚର ।
ଦକ୍ଷ ରକ୍ଷ ଭାଇ ବେନି ସଙ୍ଗରେ ଅଛନ୍ତି
ଏହିପରି ସେନାବୀର କରିଛନ୍ତି ସ୍ଥିତି ।
ନବତି ପରାର୍ଦ୍ଧ ଅଶ୍ୱ ହୋଇଲା ତାଙ୍କର
ସତ୍ତୁରି ସାଗର ସଂଖ୍ୟା ହୋଇଲା କୁଞ୍ଜର ।
ଅଶୀବୃନ୍ଦ ରଥୀ ହେଲେ ଶୁଣ ନୃପମଣି
ପଦାତି ହୋଇଲେ ବାରଶତ ଅକ୍ଷୌହିଣୀ ।
ଚୌରଶ ଖଉଣୀ ଛନ୍ତି ତାର ସେନାପତି
ଛହ ଚ୍ଛମର ତାହାର କେ କରେ ଗଣତି ।
ରଥମାନେ ରହିଛନ୍ତି ଦଶ ମହାବୃନ୍ଦ
ରଖିଛନ୍ତି ସଙ୍ଗତରେ ନାନାଜାତି ବାଦ୍ୟ ।
ଅଶୀକୋଟି ପରମାଣ ହୋଇଅଛି ବାନା
ଚାମ୍ବଳମାନଙ୍କ ସଂଖ୍ୟା କେ କରେ ଗଣନା ।
ଶ୍ୱେତ ଚ୍ଛମର ଚ୍ଛଳଶବୃନ୍ଦ ତାର ଜାଣ
ଦୁର୍ଯ୍ୟୋଧନ ସୈନ୍ୟ ସଂଖ୍ୟା ନାହିଁ ପରମାଣ
ମାଳବ ଦେଶର ରାଜା ନାମ କୃପବର୍ମା
ତାର ଏକ ହସ୍ତୀ ନାମ ଅଟେ ଅଶ୍ୱତ୍ଥାମା ।
ସେହି ହସ୍ତୀ ବାରଯୁଣ ଘଣ୍ଟି ବାରଯୁଣ
ଯୁଧିଷ୍ଠିର ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଣ ।
ସହଦେବର ମୁଖକୁ ଚାହିଁଲେ ଭରତି
ବୋଇଲେ କହିଲୁ କେତେ ମିଛକଥା ଗୋଟି
ରଣ ଭୂଇଁରେ ରହିବ ଯେବେ ସେହି ହାତୀ
ଆବର ସୈନ୍ୟ ପଦାତି ଥିବେ କେଉଁକତି ।
ଧର୍ମଙ୍କ ବଚନ ଶୁଣି କହେ ମନ୍ତ୍ରିବର
ସେ ହସ୍ତୀ ବିଷୟ ଦେବ ମିଛ ଜ୍ଞାନ କର ।
ଆହେ ଦେବ ଏକମନେ ଶୁଣ ତା ପ୍ରମାଣ
ମାନବ ହସ୍ତରେ ସେହି ଅଟେ ସାତଯୁଣ ।
ଦେବତାଙ୍କୁ ବ୍ରହ୍ମଯୁଣ ଅଟେ ପୁଣି ସାତ
ଏବେ ମହୀମାଣି ବୁଝି ହୋଇଲା କେମନ୍ତ ।
ହସ୍ତୀର ଗଳାରେ ଘଣ୍ଟି ଅଛି ନବଯଣ
ଦେବତା ଯୁଣରେ ହସ୍ତୀ ହୋଇଛି ପ୍ରମାଣ ।
ବ୍ରହ୍ମ ଯୁଣରେ ହୋଇଛି କୁରୁକ୍ଷେତ୍ର ଭୂଇଁ
ସହଦେବଙ୍କର ବାକ୍ୟେ ତୁଷ୍ଟ ଧର୍ମସାଇଁ ।
ପୁଣି ପଚ୍ଛରିଲେ କହ ଆମ୍ଭ ସୈନ୍ୟ କେତେ
ତେବେ ଯାଇ ମୋର ମନ ହୋଇବ ପରତେ ।
ଯୁଧିଷ୍ଠିରଙ୍କ ବଚନେ କହେ ମନ୍ତ୍ରୀ ପୁଣ
ଶୁଣ ଦେବ ଆମ୍ଭ ସୈନ୍ୟମାନଙ୍କ ପ୍ରମାଣ ।
ମାନଗୋବନ୍ଦର ଯେତେ ସୈନ୍ୟବଳ ଛନ୍ତି
ପୁଣି ଶତ ସହୋଦର ସେମାନେ ଅଟନ୍ତି ।
ଆମ୍ଭ ସୈନ୍ୟବଳ କଥା ଶୁଣ ନୃପବର
ଆମ୍ଭେମାନେ ଅଟୁ ମାତ୍ର ପାଞ୍ଚ ସହୋଦର ।
ଧୃଷ୍ଟଦ୍ୟୁମ୍ନ ଆମ୍ଭର ଅଟେ ସେନାପତି
ବିରାଟ ଦ୍ରୁପଦ ଏହି ପ୍ରବଳ ନୃପତି ।
ଅଭିମନ୍ୟୁ ଘଟୋତ୍କଚ ପୁଣିହିଁ ଉତ୍ତର
ଶ୍ୱେତ ଶଙ୍ଖ ଘଟୁକାହ ଅଛନ୍ତି ଆମ୍ଭର
ସାତ୍ୟକି ଶିଖଣ୍ଡୀ ସହ ଦଶ ସେନାପତି
ପୁଣି ତରଗ ସହସ୍ର ଅଛନ୍ତି ନୃପତି ।

ପଚିଶ ପର୍ବାର୍ଦ୍ଧ ହେଲେ ଘୋଡ଼ା ପରମାଣ
ଅଠର ପର୍ବାର୍ଦ୍ଧ ରଥୀ ଗଣନାରେ ଜାଣ ।
ଜନବୃନ୍ଦ ପରମାଣ ମହାରଥୀ ହେଲେ
ସ୍ତରଶତ ଅକ୍ଷୌହିଣୀ ପଦାତି ହୋଇଲେ ।
ଏହିକ୍ଷଣି ଗଣନାରେ ହୋଇଲେ ଯେସନ
ବାଦ୍ୟକାରଙ୍କର ସଂଖ୍ୟା ଅଟଇ ଅଗଣନ ।
ଦଶକୋଟି ପାଇଲକ୍ଷ ହୋଇଲେ ପ୍ରମାଣ
ଶ୍ୱେତ ଚାମର ଗଣନ୍ତେ ପଦ୍ମାର୍ଦ୍ଧେକ ଜାଣ ।
ସଖାରେ ଏତେକ ସୈନ୍ୟ ହୋଇଲେ ଆମ୍ଭର
ଶୁଣି ବିଷାଦିତ ହେଲେ ଧର୍ମ ନୃପବର ।
ମାନଗୋବିନ୍ଦ ସପକ୍ଷ ଛତ୍ର ସପ୍ତରଥୀ
ଆହୁରି ଛତ୍ର ସତୁରି ସହସ୍ର ନୃପତି ।
କେମନ୍ତେ ଜିଣିବା ତାର ଅକଳିତ ବଳ
ଶୁଣି ସହଦେବ ବୋଲେ କିପାଁ ଦେବ ଛଳ ।
ଅଛି ଆମ୍ଭମାନଙ୍କର ଗୋଟିଏ କ୍ଷତ୍ରିୟ
କ୍ଷଣକରେ ଜିଣିବ ସେ କହୁଦେଇ ଥୟ ।
ସହଦେବ ବାକ୍ୟ ଶୁଣି ଧର୍ମ ଯୁଧିଷ୍ଠିର
ବୋଇଲେ ସେ କାହିଁଅଛି କି ନାମ ତାହାର ।
ମନ୍ତ୍ରୀବର ବୋଲେ ତହୁଁ ଶୁଣ ମହୀପାଳ
ଦୁର୍ଯ୍ୟୋଧନ ଦେଲା ଯେବେ ଭୀମକୁ ଗରଳ
ବିଷଖାଇ ଭୀମସେନ ହେଲେ ଅଚେତନ
ମଲା ବୋଲି ବିଚାରିଲା ରଜା ଦୁର୍ଯ୍ୟୋଧନ ।
ଦୁର୍ମନ ଦୁଃଶାସନଙ୍କୁ ନିକଟକୁ ଡାକି
ଗୁପତେ ବୋଇଲା ଭୀମ ମରିଗଲା ଭାଇ ।
ଦକ୍ଷଙ୍କୁ ମୁଣ୍ଡକରି ବେଗେ ନେଇଯାଅ
ଯମୁନା ନଦୀରେ ତାକୁ ବେଗେ ଫିଙ୍ଗି ଦିଅ
ଦୁର୍ଯ୍ୟୋଧନର ଆଦେଶେ ସେହି ଦୁଇଭାଇ
ଯମୁନା ନଦୀରେ ବେଗେ ଫିଙ୍ଗି ଦେଲେ ନେଇ
ଲେଉଟି ଦୁର୍ଯ୍ୟୋଧନଙ୍କୁ ଜଣାଇଲେ ଯାଇ
ଅଇଲୁ ଭୀମକୁ ଏବେ ଜଳରେ ଭସାଇ ।
ତାହା ଶୁଣି ଦୁର୍ଯ୍ୟୋଧନ ହୋଇଲା ସନ୍ତୋଷ
ବୋଇଲା କାହାରି ଆଗେ ନ କର ପ୍ରକାଶ ।
ପୁଣି ଯାହା ହେଲା ଶୁଣ ଏଥୁଅନନ୍ତରେ
ଦଉଡ଼ି ସଙ୍ଗେ ଭୀମ ପଡ଼ିଲେ ଜଳରେ
ସେକାଳେ ଜଳରେ ଥିଲା ଗୋଟିଏ ନାଗୁଣୀ
ବେଲବଳୀ ନାମ ତାର ଅନନ୍ତ ଦୁଲଣୀ ।

ପାତାଳରୁ ଆସିଥିଲା ଜଳକ୍ରୀଡ଼ା ପାଇଁ
ଏମନ୍ତକାଳେ ଭୀମଙ୍କୁ ଭେଟିଲା ଯାଇ ।
ସୁକୁମାର ସୁପୁରୁଷ ଯହୁଁ ସେ ଦେଖିଲା
ସ୍ନେହଭରେ ପାତାଳକୁ ତହୁଁ ଘେନିଗଲା ।
ବାସୁକି ଆଗରେ ତାକୁ ଥୋଇଲାକ ନେଇ
ଦେଖି ନାଗରାଜା ମନେ ଆନନ୍ଦିତ ହୋଇ ।
ଯୋଗବଳରେ ଜାଣିଲା ବିଷୟ ସମସ୍ତ
ଭୀମସେନଙ୍କ ମୁଖରେ ଦେଲା ସେ ଅମୃତ ।
ପୁନର୍ଜୀବିତ ହୋଇଲା ତହୁଁ ଭୀମସେନ
ନାଗରାଜା ବେଲବଳୀ କରିଲା ପ୍ରଦାନ ।
ଅତି ସୁଖରେ ରହିଲେ ତହିଁ ମହାବଳ
ବେଲବଳୀ ସଙ୍ଗେ ପ୍ରୀତି ହୁଅନ୍ତେ ପ୍ରବଳ ।
ଏହିରୂପେ କେତୁଦିନ ବହିଗଲା ତହୁଁ
ପାଣ୍ଡୁବାସୁର କୁରୁଙ୍କୁ ଆକର୍ଷିଲା ଯହୁଁ ।
ଯେ କାଳେ ଆପଣ ତାଙ୍କୁ କରନ୍ତେ ଚିନ୍ତନ
ପାତାଳେ ଥାଇ ଜାଣିଲେ ଭାଇ ଭୀମସେନ ।
ବେଲବଳୀକୁ ପ୍ରବୋଧ କହିଣ ବହୁତ
ପ୍ରଥମେ ହୋଇଲେ ତୁମ୍ଭ ନିକଟେ ଉଭତ ।
ତହୁଁ ପାଣ୍ଡୁବାସୁରଙ୍କୁ ବଧକଲେ ଯାଇ
ଜୀବନ ପାଇଲେ ତେଣୁ ସେହି ଶତଭାଇ ।
ଭୀମସେନ ଆସିଲେ ଯେଦିନ ତାକୁ ଛାଡ଼ି
ତିନିମାସ ରତୁ ତାର ଯାଇଥିଲା ଗଡ଼ି ।
ଭୀମସେନ ବୋଇଲେ ଗୋ ଶୁଣ ପ୍ରାଣ ସଖି
ମୋହର କଥା ଗୋଟିକୁ ମନେ ଥିବୁ ରଖି ।
ତୋର ନାମ ମୋର ନାମ ଦୁଇକି ମିଶାଇ
ଯେଉଁ ପୁତ୍ର ହେବ ତାର ନାମ ଦେବୁ ସହି ।
ଆଉ ତୁ ମନ ମଧ୍ୟରେ ଭାବନା ନ କର
କାର୍ଯ୍ୟ ଶେଷରେ ଆସିବି ମୁହିଁ ପୁନର୍ବାର ।
ଏମନ୍ତ ବୁଝାଇ କହି ଆସିଲେ ବହନ
କେତେ ଦିନାନ୍ତରେ ପୁତ୍ର ହେଲା ଉତପନ୍ନ ।
ପୁତ୍ରମୁଖ ଦେଖି ବାଳୀ ହରଷ ହୋଇଲା
ବେଲଲସେନ ବୋଲିଣ ତାର ନାମ ଦେଲା ।
ନାଗରାଜା ପ୍ରସାଦରେ ସେହୁ ବଳବନ୍ତ
ଆସିଲେ ଜିଣିବ ଏକା ସର୍ବ କୌରବନ୍ତ ।
ସହଦେବଠାରୁ ଶୁଣି ଧର୍ମ ଯୁଧିଷ୍ଠିର
ମନ ମଧ୍ୟରେ ଆନନ୍ଦ ହୋଇଲେ ଅପାର ।

ପୁଣିହିଁ ବୋଇଲେ ତୁହି କହ ସହଦେବ
ପାତାଳ ପୁରରୁ ପୁତ୍ର କେମନ୍ତେ ଆସିବ ।
ତାହା ଶୁଣି ସହଦେବ କହଇ ଉତ୍ତର
ଭୀମ ଚିନ୍ତିଲେ ନିଶ୍ଚୟ ଆସିବ କୁମର ।
ଭୀମସେନଙ୍କୁ ଅଣାଇ ବୋଇଲେ ବଚନ
ତୋ ପୁତ୍ର ବେଲ୍ଲାଳସେନ ଆଣ ହେ ବହନ ।
ଯୁଧିଷ୍ଠିରଙ୍କ ଆଜ୍ଞାପାଇ ବୀର ବୃକୋଦର
ମନରେ କରିଲେ ଧାନ ଆପଣା କୁମର ।
ପାତାଳପୁରେ ପୁତ୍ରର କମ୍ପିଲା ଆସନ
ଜାଣି ପାରଣ କୁମର ଉଠିଲା ବହନ ।
ତାହା ଦେଖି ବେଲବଳୀ ବସାଏ କୋଳରେ
ବେନି ନୟନରୁ ଅଶ୍ରୁ ଝରଝର ଝରେ ।
ଶୋକ ଆକୁଳତେ ସେହୁ ବୋଲଇ ବଚନ
କେଉଁ ପାପେ ଜାତ କଲି ତୋତେରେ ନନ୍ଦନ
କାଳେ ଦେଖି ନ ପାରିଲି ମୁଖକୁ ତୋହର
ପୋଡ଼ୁ ପୋଡ଼ୁ ପୋଡ଼ାକର୍ମ କହଣ ମୋହର ।
ମାତାର ବ୍ୟାକୁଳ ଦେଖି ପୁଚ୍ଛଇ କୁମର
କାହିଁପାଇଁ ମାତା ତୁ ଗୋ ହେଉଛୁ ଅଧୀର ।
ଏଥିର କାରଣ ମୋତେ କହ ତୁ ବୁଝାଇ
କେଉଁ ଅବଗୁଣ ଆଜି ଦେଖିଲୁ କି ତୁହି
ତାହା ଶୁଣି ବେଲବଳୀ କହଇ ଉତ୍ତର
ଶୁଣ ତେବେ ବାବୁ ମୋର ଯଥାର୍ଥ ଯେ ଗିର
କୌରବ ପାଣ୍ଡବ ଦୁହେଁ ଏକ ସହୋଦର
ଭାଇ ଭାଇ ବିବାଦରେ ହୋଇବ ସମର ।
କଉରବପକ୍ଷେ ହେଲେ ବହୁତ ସଇନ୍ୟ
ପାଣ୍ଡବମାନଙ୍କର ଯେ ଅଟେଷେ ନଉନ
ତେଣୁ ତୋର ପିତା ତୋତେ କରେ ସୁମରଣା
ଏ ଯୋଗେ ବାବୁରେ ମୋର ହୁଏ ବୁଦ୍ଧି ବଣା
ଯେବେ ଯିବୁ ଆଉ ତୁହି ନ ଆସିବୁ ଫେର
ତେଣୁ ବ୍ୟାକୁଳ ହୃଦୟ ହେଉଛି ମୋହର ।
ମାତା ମୁଖରୁ ଏମନ୍ତ ବାକ୍ୟମାନ ଶୁଣି
ପୁନଃପୁନଃ ଇଚ୍ଛା କରେ ସେ କୁମରମଣି ।
କହ କହ ମାତା ତୁହି ମୋତେ ତଥ୍ୟକଥା
କେବଣ ମହାତ୍ମା ମୋର ଅଟେ ନିଜ ପିତା ।
ଶୁଣି ବେଲବଳୀ କହେ ଶୁଣରେ କୁମର
ପାଣ୍ଡବ ଜାତ ହୋଇଲେ ଆସି ମଧୁପୁର ।
ପଣ୍ଡୁ ଧୃତରାଷ୍ଟ୍ର ନାମେ ଥିଲେ ଦୁଇଭାଇ
ସୋମବଂଶରୁ ସମ୍ଭୂତ ଅଟନ୍ତି ସେ ସେହି
ପଣ୍ଡୁଙ୍କର ଦୁଇଭାର୍ଯ୍ୟା କୁନ୍ତୀ ମାଦ୍ରୀ ନାମ୍ନୀ
ଏ ଦୁଇଙ୍କ ଠାରୁ ପୁତ୍ର ଅଛନ୍ତି ଯେ ଜନ୍ମି ।
ଦେବ ଅଂଶରୁ ସେମାନେ ହେଲେ ଅବତାର
ଧର୍ମ ଔରସରୁ ଜାତ ହେଲେ ଯୁଧିଷ୍ଠିର ।
ପବନ ଅଂଶରୁ ଜାତ ହେଲେ ଭୀମସେନ
ଇନ୍ଦ୍ର ଔରସୁ ସମ୍ଭୂତ ହୋଇଲେ ଅର୍ଜୁନ ।
ଅଶ୍ୱିନୀ କୁମାର ଠାରୁ ଜନ୍ମିଲେ ନକୁଳ
ସହଦେବ ପଣ୍ଡୁବୀର୍ଯ୍ୟୁ ହୋଇଲେ କେବଳ ।
ଧର୍ମ ନନ୍ଦନ ଅଟନ୍ତି ଯୁଧିଷ୍ଠି ନୃପତି
ନିରଞ୍ଜନ ବୋଲି ପାଦେ ଖଟନ୍ତି ଶ୍ରୀପତି ।
ଏବେ କହୁଅଛି ଶୁଣ କଉରବ ରୀତି
ଧୃତରାଷ୍ଟ୍ର ଭାର୍ଯ୍ୟା ଅଟେ ଗାନ୍ଧାରୀ ସୁବତୀ ।
ବିଧବା ଉଆଁସୀ କନ୍ୟା ଅଟଇ ସେହୁ ତ
ଦୁର୍ବାସା ବରରେ ଶତପୁତ୍ର କଲା ଜାତ ।
ମଧୁପିଙ୍ଗଳ ଅଟଇ ସେ ମାନଗୋବିନ୍ଦ
ଅକାରଣେ ପାଣ୍ଡବଙ୍କୁ ଦେଲା ସେ ପ୍ରମାଦ ।
ଭୀମସେନଙ୍କୁ ପ୍ରଥମେ ବିଷଲଡ଼ୁ ଦେଲା
ଅର୍ଦ୍ଧଗତେ ଯମୁନାରେ ନେଇ ପକାଇଲା ।
କ୍ରୀଡ଼ା କରିବାକୁ ତହିଁ ମୁହିଁ ଯାଇଥିଲି
ଭୀମଙ୍କୁ ଦେଖି ସେଠାରୁ ବହି ମୁଁ ଆଣିଲି ।
ତୋର ଅଜା ପାଶେ ତାକୁ ନେଇ ଦେଲିଥୋଇ
ତାହାକୁ ବଞ୍ଚାଇ ମୋତେ ସମର୍ପିଲେ ନେଇ ।
ବେନିମାସ ଗର୍ଭ ତୁହି ଥିଲୁ ରେ କୁମର
ମୋତେ ତେଜି ତୋର ପିତା ଗଲେ ମଧୁପୁର
ଯିବାବେଳେ କହିଗଲେ ଏହି କଥା ସାର
ପୁତ୍ର ହେଲେ ନାମ ଦେବୁ ତୋହର ମୋହର
ତେଣୁ ତୋର ନାମ ଦେଲି ମୁଁ ବେଲ୍ଲାଳସେନ
ତୋର ନିଜ ପିତା ଅଟେ ଜାଣ ଭୀମସେନ ।
ସେଥିପାଇଁ ସୁମରଣା କଲେ ତୋ ପିଅର
କୌରବ ପାଣ୍ଡବଙ୍କର ହୋଇବ ସମର ।
ମାତାଠାରୁ ଏହିପରି କଥାମାନ ଶୁଣି
କୋପରେ ବେଲ୍ଲାଳସେନ ଉଠେ ଶିର ଝୁଣି ।
ନିଶ୍ଚୟ ଯିବଇଁ ମାତା ସେହି ମଧୁପୁର
ଦେଖିବି ପିତା ଖୁଡ଼ୁତା ଜେଠୁ ତାଙ୍କୁ ମୋର

ଯଦି ଅବା ପ୍ରାଣ ତହିଁ ହରାଏ ସମରେ
ଜୀବନ ସଫଳ ହେବ ବସିବ ସ୍ୱର୍ଗରେ ।
ନେତ୍ରରେ ଦେଖିବ ମୁହିଁ ଭାରତ ସମର
ଶରୀର ଦୁରିତସବୁ ହୋଇଯିବ ଦୂର ।
ଏଥିପାଇଁକି ମାତା ଗୋ ନ କର ତୁ ଶୋକ
ଜନମ ଲଭିଲେ ନିଶ୍ଚେ ମରଯାଏ ଲୋକ ।
ଏମନ୍ତ କହି କୁମର ଚଳିଲା ସତ୍ୱରେ
ପ୍ରବେଶ ହୋଇଲା ଯାଇ ମଧ୍ୟଭୁବନରେ ।
ବେଗ ବେଗ ହୋଇ ତହିଁ କଲଇ ଗମନ
ଉପସ୍ଥିତ ହେଲା ଯହିଁ ଛତ୍ରୀ ଭୀମସେନ ।
ତାଙ୍କୁ ପଚ୍ଚରେ କୁମର ମୁଖକୁ ଅନାଇ
ମୋର ପିତା ଭୀମସେନ ଛନ୍ତି କେଉଁଠାଇଁ ।
ବେଲ୍ଲଳସେନ ବୋଲିଣ ଅଟେ ମୋର ନାମ
ବେଲାବଳୀ ଗର୍ଭରୁ ମୁଁ ହୋଇଛୁ ଜନମ ।
କେଉଁ କାର୍ଯ୍ୟପାଇଁ ପିତା କରିଲେ ସ୍ମରଣ
ତାହାଙ୍କୁ ଭେଟାଇ ଦିଅ ଦୟା ପ୍ରକାଶିଣ ।
ଭୀମସେନ ତାହାଠାରୁ ଶୁଣି ଏ ବଚନ
ଦଉଡ଼ି ଯାଇ ପୁତ୍ରକୁ କଲା ଆଲିଙ୍ଗନ ।
କୋଳେ ବସାଇ ମୁଖରେ ଚୁମ୍ବନ ବହିଲା
ମୁହିଁ ତୋର ପିତା ବୋଲି ବଚନ ଭାଷିଲା ।
ଏହା ଶୁଣି ପୁତ୍ରମଣି ହୋଇ ଆନନ୍ଦିତ
ଭୀମସେନ ପାଦତଳେ ହେଲା ପ୍ରଣିପାତ ।
ଟଢବାର ପ୍ରଣିପାତ ହୋଇଲା ପାଦରେ
ଭୀମସେନ ଆଶୀର୍ବାଦ କଲେ ସ୍ନେହରେ ।
ତହୁଁ ପୁତ୍ର ହାତଧରି ସେଠାରୁ ଚଳିଲେ
ଯୁଧିଷ୍ଠିର ପାଦତଳେ ନେଇ ପକାଇଲେ ।
ବୋଇଲେ ହେ ଦେବ ମୋର ଏହଟି କୁମର
ବେଲ୍ଲଳସେନ ବୋଲିଣ ନାମଟି ଏହାର ।
ଶୁଣି ଧର୍ମଙ୍କ ନନ୍ଦନ ଆନନ୍ଦିତ ହୋଇ
ସ୍ନେହ ଗଦଗଦେ କୋଳେ ବସାଇଲେ ନେଇ
ମୁଖରେ ଚୁମ୍ବନ ଦେଇ ବୋଇଲେ ବଚନ
ବର୍ତ୍ତମାନ କଷ୍ଟ ମୋର ଶୁଣରେ ନନ୍ଦନ ।
ଦୁର୍ଯ୍ୟୋଧନ ହରି ସବ ଆମ୍ଭଙ୍କୁ ନ ଦେଇ
ଆମ୍ଭର ସଙ୍ଗେ ସମର କରିବା ଇଚ୍ଛଇ ।
ଅତ୍ୟନ୍ତ ଦୁଷ୍ଟ ପ୍ରକୃତି ଅଟଇ ସେ ସେହି
ଶକୁନି ମନ୍ତ୍ରୀ ବୋଲିଣ ତାହାର ଅଟଇ ।

ସେହି ପାପିଷ୍ଠ ନିମନ୍ତେ ଏମନ୍ତ ଘଟିଲା
ଏକ ସହୋଦର ମଧ୍ୟେ ବାଦ ଜନ୍ମାଇଲା ।
ମୋହର ଲଘୁ କାରଣ ଶୁଣରେ କୁମର
ଅଗଣିତ ସୈନ୍ୟ ଅଟେ ମାନଗୋବନ୍ଦର ।
ଆମ୍ଭର ଯେ ସୈନ୍ୟ ସଂଖ୍ୟା ଅଟଇ ଅଳପ
କେମନ୍ତେ ଜିଣିବ ବୋଲି ସଦା ମୋର ତାପ ।
ସହଦେବ ତୋ ଖୁଡୁତା କହିବାରୁ ମୋତେ
ତୋତେ ଡକାଇଲୁ ରଣ ଜିଣିବା ନିମନ୍ତେ ।
ଜ୍ୟେଷ୍ଠ ଭ୍ରାତାଙ୍କର ଦୁଃଖ ଦେଖିଣ କୁମର
ଶିର ଝୁଣି ଉଠି କୋପେ କରଇ ଉତ୍ତର ।
କହ ପିତା କେତେ ଛନ୍ତି ତାର ସୈନ୍ୟବଳ
ଏକ ବାଣକରେ ମୁହିଁ ଛେଦିବି ସକଳ ।
ଏହା କହି ବୀରମଣି ଆମର୍ଷିଲା ଧନୁ
ପାଣ୍ଡବ କୌରବଙ୍କର କମ୍ପିଗଲା ତନୁ ।
ଉଭୟ କୁଳର ସୈନ୍ୟ ହୋଇଲେ କାତର
ସପ୍ତରଥୀ ସହିତରେ ଯେତେକ ଅମର ।
କେହି ବୋଲେ ଏହା ଅଟେ ଅତି ବିପରୀତ
ଅକାଳେ ମେଦିନୀ କମ୍ପା ହୁଏ ଉତ୍ପାତ ।
ସପତ ସାଗର କୂଳ ଲଙ୍ଘେ କି ଏଥର
ସମସ୍ତଙ୍କ ହେଲା ଯେହ୍ନେ ଭୟର ସଞ୍ଚାର ।
ଯୁଧିଷ୍ଠିର ସ୍ୱଚକ୍ଷୁରେ ଏମନ୍ତ ଦେଖିଲେ
ଧାଇଁଯାଇ କୁମରକୁ କୋଳରେ ଧଇଲେ ।
ମୁଖେ ଚୁମ୍ବ ଦେଇ ତାକୁ ଆଶ୍ୱାସନା କରି ।
ବୋଇଲେ କ୍ଷଣେକେ ରହ ଆସନ୍ତୁ ଶ୍ରୀହରି ।
ଭୀମସେନ ବୋଇଲେକ ଶୁଣରେ କୁମର
ଚଳ ତୁ ମଣୋହି ବେଳ ହେଉଛି ଉଚ୍ଛୁର ।
ଏମନ୍ତ ବଚନ ଶୁଣି ସେ ବେଲ୍ଲଳସେନ
ସ୍ନାନ କରିବାକୁ ତହୁଁ କରିଲା ଗମନ ।
ଇନ୍ଦ୍ରପ୍ରସ୍ଥକୁ ଜାଣି ନଗର ଉହାଡ଼େ
ବହିଇ ଯମୁନା ନଦୀ ପୂର୍ବେ ଛଇଥିଡ଼େ ।
ସେହି ନଦୀରେ କୁମର ଯାଇ ଜଳେ ପଶି
ଶତ୍ରୁ କଲଙ୍କ ଛଡ଼ାଏ ପଥରରେ ବସି ।
ଧର୍ମଙ୍କ ମୁଖରୁ ଶୁଣି ତାର କଥାମାନ
ନଦୀକୂଳକୁ ଚଳିଲେ ଦେବ ଭଗବାନ ।
ବେଲ୍ଲଳ ଦୂରରୁ ଦେଖି ଶ୍ରୀକୃଷ୍ଣଙ୍କ ଚିହ୍ନି
ମନରେ ବିଚାର କଲା ଏହୁ ଜନାର୍ଦ୍ଦନ ।

ତହୁଁ ଭୀମଙ୍କ କୁମର ତୁରିତେ ଉଠିଲ
ଶ୍ରୀକୃଷ୍ଣଙ୍କ ପଦ୍ମ ପାଦ ନଉଛୁଳ କଲ ।
ତାକୁ ଦେଖି ପଚ୍ଚରିଲେ ଶୁଣରେ କୁମର
କେବଣ ଦେଶର ବୀର କାହିଁ ତୋର ଘର ।
ଆବର ତୋହର ନାମ କସ ବା ଅଟଇ
କଏ ସେ ଅଟନ୍ତି ତୋର ପିତାମାତା ଦୁଇ ।
ଶ୍ରୀକୃଷ୍ଣ ବଚନ ଶୁଣି ବୋଲେ ସେ ନନ୍ଦନ
ବେଲବଳୀ ମାତା ମୋର ପିତା ଭୀମସେନ
ଯେ କାଳରେ ଦୁର୍ଯ୍ୟୋଧନ ବିଷଲଡ଼ୁ ଦେଲେ
ଭୀମସେନ ଭସି ଭସି ପାତାଳେ ଲଗିଲେ ।
ବାସୁକ ରାଜାର କନ୍ୟା ଅଟେ ମୋ ଜନନୀ
ମାରୁତକ ସମ୍ପ୍ରଦାନ କଲେ କନ୍ୟା ଦେନ ।
ମାତାଗର୍ଭେ ଯେତେବେଳେ ମୋତେ ଦୁଇମାସ
ମଧୁପୁରକୁ ଅଇଲେ ପିତା ବାୟୁଶିଷ୍ୟ ।
ଆସିଲାବେଳେ ମାତାକୁ କହିଲେ ବୁଝାଇ
ମୋ ତୋ ନାମ ପୁଅକୁ ଯେ ଦେବୁ ତୁ ମିଶାଇ
ଯେଉଁକାଳୁ ମାତାଗର୍ଭୁ ଭୂମିରେ ପଡ଼ିଲ
ମାତା ପିତା ଦୁଇନାମ ମିଶ୍ରିତ ପାଇଲ ।
ସେଥିପାଇଁ ତୁମ୍ଭେ ଶୁଣ ହେ ପୁରୁଷୋତ୍ତମ
ବେଲାଳସେନ ବୋଲିଣ ଅଟେ ମୋରନାମ ।
ପରିଚୟ ଦେଲ ଯହୁଁ ସେ ବେଲାଳସେନ
କୋମଳ ବାକ୍ୟେ କହିଲେ ଶ୍ରୀମଧୁସୂଦନ
କାହିଁପାଇଁ ଆସିଅଛୁ ତୁହି ଏ ସ୍ଥାନକୁ
ମିଥ୍ୟା ନ କହି ପ୍ରକୃତ କହରେ ଆମ୍ଭଙ୍କୁ ।
ବେଲାଳ ବୋଇଲ ତେବେ ଶୁଣ ଚକ୍ରଧର
କୁରୁ ପାଣ୍ଡବ ମଧ୍ୟରେ ହୋଇବ ସମର ।
ମାନଗୋବର୍ଦ୍ଧନର ଅଟେ ଅଗଣିତ ସୈନ୍ୟ
ପାଣ୍ଡବ ମାନଙ୍କ ସୈନ୍ୟ ତାଙ୍କଠାରୁ ନ୍ୟୂନ ।
ତେଣୁ ମୋତେ ସୁମରଣା କଲେ ପିତା ମୋର
ସେଥିପାଇଁ ଆସିଅଛି ମୁହିଁ ମଧୁପୁର ।
ଦେଖିଲି ଜ୍ୟେଷ୍ଠ ତାତଙ୍କ ବିମର୍ଷ ବଦନ
ପ୍ରତିଜ୍ଞା କଲି ମାରିବି ବୋଲି ଶତ୍ରୁ ସୈନ୍ୟ ।
ତେଣୁ ଧାର କରୁଛି ମୁଁ ଘଷି ଏହି ଶର
କୁମର ବଚନ ଶୁଣି କହନ୍ତି ଶ୍ରୀଧର ।
ମାନଗୋବର୍ଦ୍ଧନର ଅଟେ ସୈନ୍ୟ ଅକଳତ
ଗୋଟିଏ ଶରରେ ତୁହି କ କରିବୁ ସୁତ ।
କେଉଁରୂପେ ମାରିବୁ ତୁ ଅକଳତ ସୈନ୍ୟ
ତେଣୁ ତୋ କଥାରେ ପ୍ରତେ ନ ହୁଏ ମୋ ମନ
ଭୀଷ୍ମ ସେନାପତି ବୋଲି ଅଟେ ଯେଉଁ ବୀର
ଇଚ୍ଛା ମରଣ ତାହାର ଜାଣ ରେ କୁମର ।
କ୍ଷତ୍ରୀ ହୋଇଣ ତାହାକୁ କେ ଜିଣିବ ରଣେ
ହାତେ ଅସ୍ତ୍ର ଥିଲେ ଜୟୀ ହେବ କଏ ଦ୍ରୋଣେ
ପୁଣି ଦେଖ ରହିଛନ୍ତି କର୍ଣ୍ଣ ସେନାପତି
ଯାର ପାଦଘାତ ସହି ନ ପାରଇ କ୍ଷିତି ।
କୃପ ଅଶ୍ୱତ୍ଥାମା ଦୁହେଁ ଅଟନ୍ତି ଅମର
କେବେ ଜିଣି ନ ପାରିବେ ଦେବ ପୁରନ୍ଦର
ଶଲ୍ୟକୁ ମୁଁ ସଦାକାଳେ କରିଥାଏ ଭୟ
ଭୂରିଶ୍ରବା ମହାବୀର ଅଟନ୍ତି ଅଜେୟ ।
ଦୁର୍ଯ୍ୟୋଧନ ଶତଭାଇ ଅଟେ ବଳୀୟାର
ତା ସଙ୍ଗେ ଛନ୍ତି ସହସ୍ରେ ପୁଣି ନୃପବର ।
ବାରଶତ ଅକ୍ଷୌହିଣୀ ସୈନ୍ୟର ନାୟକ
ମହାପ୍ରତାପୀ ଅଟନ୍ତି ସର୍ବେ ଏକୁଁ ଏକ ।
ମାଳବ ଦେଶର ରାଜା ନାମ କୃପବର୍ମା
ତାହାର ହସ୍ତୀର ନାମ ପୁଣି ଅଶ୍ୱତ୍ଥାମା
ବାର ଯୋଜନ ଅଟଇ ସେ ହସ୍ତୀର କାୟା
ଅଳମ୍ବୁଷ ରାକ୍ଷସର ଅଟେ ବଡ଼ ମାୟା ।
ମାନଗୋବର୍ଦ୍ଧନର ବଳ କହିଲେ ନ ସରେ
କାହିଁ ଶର ମାରିବୁ ତୁ କେଉଁ ପରକାରେ ।
ତେଣୁ ପ୍ରତେ ନ ହୁଅଇ ରେ କୁମର ମଣି
ତାହା ଶୁଣିଣ ବେଲାଳ ଉଠେ ଶିର ଝୁଣି ।
ଅଧରେ ବଦନ ଚୁପି ବୋଲଇ ବଚନ
ଏଇ ଏକ ଶରେ ଅଛି ତାହାଙ୍କ ଜୀବନ ।
ଆହେ ଦେବ ସ୍ୱାମୀ ତୁମ୍ଭେ କହିଲ ନ ଜାଣି
ଏକ ଶରେ ଶତ୍ରୁ ସୈନ୍ୟ ପକାଇବି ହାଣି ।
ମାରିବି ମୁଁ କୁରୁବଳ ନ ଥୋଇବି ଏକ ।
ତହିଁ ପାଇଁ ଏ ଶରକୁ ଘଷୁଅଛି ଦେଖ ।
ତୁମ୍ଭେ ବୋଇଲ ହେ ନାଥ ଥାଉ ଅକଳତ
ଏପରି ପୂରିବ ଯେବେ ବ୍ରହ୍ମାଣ୍ଡ ସପତ ।
କୋଟି ଭୀଷ୍ମ କୋଟି ଦ୍ରୋଣ କୋଟି କର୍ଣ୍ଣ ହେଉ
କୃପ ଅଶ୍ୱତ୍ଥାମା କୋଟି କୋଟି ରହିଥାଉ ।
ପୁଣି ଦୁର୍ଯ୍ୟୋଧନ ସହ ଶତଭାଇ ଛନ୍ତି
ହେଉ କୋଟି ଗୁଣ ଯେବେ ବର୍ଦ୍ଧିତ ହୁଅନ୍ତି ।

ତେତିଶ କୋଟି ଅମର ହନ୍ତି ସ୍ୱର୍ଗପୁରେ
ଜଣକ ହୁଅଇ ଯେବେ ଲକ୍ଷେକ ଗୁଣରେ
ନିଶ୍ଚୟ ମାରିବ ମୁହିଁ ଏଥେ ନାହିଁ ଆନ
ସତ୍ୟ କରଣ କହୁଛି ଶୁଣ ଭଗବାନ ।
ଏ ସକଳ କଥା ଶୁଣି ଦେବ ନାରାୟଣ
ବୋଇଲେ ଗୋଟିଏ କଥା କହେ ଏବେ ଶୁଣ
କୌରବ ପାଣ୍ଡବ ସୈନ୍ୟ ମିଶାମିଶି ହୋଇ
ରହିଛନ୍ତି ଏକଠରେ ବାରଣ ନୁହଇ ।
ଯଦ୍ୟପି କୌରବ ସୈନ୍ୟ ଦେଇପାରୁ ବାଛି
ତେବେ ତ ଜାଣିବା ତୋର ବୀରପଣ ଅଛି ।
ଶ୍ରୀକୃଷ୍ଣଙ୍କ ଶ୍ରୀମୁଖରୁ ଏ ବଚନ ଶୁଣି
ଆନନ୍ଦିତ ହୋଇ ତହୁଁ ସେ କୁମରମଣି ।
ବୋଇଲା ଶରମୁନରେ କେଉଁ ଚିହ୍ନ ଦିଅ
ଦୁଇ ସୈନ୍ୟଙ୍କୁ ପୃଥକ କରିବ ନିଶ୍ଚୟ ।
ଶୁଣି କୃଷ୍ଣ ଶରମୁନେ ଅର୍ପିଲେ ସିନ୍ଦୂର
ତହୁଁ ସେ ବୋଇଲେ ଶୁଣ ବଚନରେ କୁମର
ଦୁର୍ଯ୍ୟୋଧନ ସର୍ବସୈନ୍ୟ କପାଳ ଦେଶରେ
ତୋର ଶର ଯେବେ ଟିକା ଦେଇ ଆସିପାରେ
ତେବେ ଜାଣି ପାରିବା ତୋହର ବୀରପଣ
ଶ୍ରୀକୃଷ୍ଣ ବାକ୍ୟେ କୁମର ବିନ୍ଧିଲାକ ବାଣ ।
ଚକ୍ଷୁ ପଲକେ ସିନ୍ଦୂର ଟୋପା ଭିଲେ ଦେଲ
କୌରବ ସୈନ୍ୟମାନଙ୍କୁ ଅଲଗା ବାଛିଲା ।
ବେଲ୍ଲାଳସେନ କ୍ଷମତା ସମକ୍ଷେ ଦେଖିଣ
ସ୍ତମ୍ଭୀଭୂତ ହୋଇଲେ ଯେ ଦେବ ନାରାୟଣ ।
ପୁଣିହିଁ ବୋଇଲେ ଶୁଣ ଶୁଣରେ କୁମର
ଆମ୍ଭେ ଲୁଚିଲେ ଖୋଜି କି ପାରିବ ତୋ ଶର
ତାହା ଶୁଣିଣ ଉତ୍ତର କରିଲା ବେଲ୍ଲାଳ
ଯହିଁ ଲୁଚ ଦେବ ଖୋଜି ନୋହିବ ବିଫଳ ।
ତାହା ଶୁଣି ଜଗନ୍ନାଥ ହେଲେ ଅନ୍ତର୍ହିତ
ତାର କନିଷ୍ଠାଙ୍ଗୁଳିରେ ଲୁଚିଲେ ତ୍ୱରିତ ।
ତହୁଁ ବେଲ୍ଲାଳ ଛାଡ଼ିଲ ତା ଅଜେୟ କାଣ୍ଡ
କାର୍ମୁକରୁ ବାହାରିଲା ଯେସନ ମାର୍ତ୍ତଣ୍ଡ ।
କାଣ୍ଡକୁ ବୋଲେ କୁମର ଯାଅ ତୁହି ବେଗେ
ଯହିଁଛନ୍ତି ଜଗନ୍ନାଥ ଆଣ ମୋର ଆଗେ ।
ଆଜ୍ଞାପାଇ ଚଳିଗଲା ସେ ଅଜେୟ କାଣ୍ଡ
ପ୍ରଥମେ ଖୋଜିଲା ଯାଇ ଚଉଦ ବ୍ରହ୍ମାଣ୍ଡ ।

ଯାହିଁ ନ ପାଇଣ ପୁଣି ଅଇଲା ଲେଉଟି
ଧଇଲା ଆସି କୁମର କନିଷ୍ଠ ଅଙ୍ଗୁଷ୍ଠି ।
ତାହା ଦେଖିଣ ବେଲ୍ଲାଳ କରିଲା ଉତ୍ତର
ଅଙ୍ଗୁଷ୍ଠି କୋଣରୁ ପ୍ରଭୁ ସଇରେ ବାହାର
ଆହେ ଦୟାମୟ ହରି କେତେ ମାୟାକଲ
ଜଗନ୍ନାଥ ହୋଇ ମୋ ଶରକୁ ହାରିଗଲ ।
ଏବେ ନଖକୋଣୁ ମୋର ବହିର୍ଗତ ହୁଅ
ଆଉ କି ପରୀକ୍ଷା ଅଛି ମୋ ଆଗରେ କହ ।
ଏମନ୍ତ ଦେଖିଣ ହରି ହୋଇ ସ୍ତମ୍ଭୀଭୂତ
ତାହାର ନଖ କୋଣରୁ ହେଲେ ବହିର୍ଗତ ।
ମନେ ମନେ ବିଚାରିଲେ ଦେବ ଯାଦବସ୍ୱାମୀ
ଏହି ଅଦ୍ଭୁତ କଥା ଜାହିଁ ଦେଖିନାହିଁ ।
ଅଠର ଦିବସ ମୁହିଁ କରିବି ସମର
ନିମିଷକେ ସବୁଙ୍କୁ ଏ କରିବ ସଂହାର
ଯୁଦ୍ଧର କୌତୁକମାନ ଦେଖି ନ ହୋଇବ
କ୍ଷଣକରେ ଏ ବାଳକ ସମସ୍ତ ନାଶିବ ।
ଏମନ୍ତ ବିଚାରକରି ଦେବ ଜନାର୍ଦ୍ଦନ
କୁମରକୁ କହିଲେ ସେ ମଧୁର ବଚନ ।
ଧନ୍ୟ ତୁହି କୁମରରେ କ୍ଷତ୍ରୀ ଶିରୋମଣି
ଧନ୍ୟ ଧନ୍ୟ ତୋହରରେ ଯେ ଗର୍ଭଧାରିଣୀ
ଧନ୍ୟ ଧନ୍ୟ ବୃକୋଦର ତୋତେ କଲା ଜାତ
ତୋ ବୀରପଣକୁ ଧନ୍ୟ ଧନ୍ୟ ଆରେ ସୁତ
କେଉଁ ଶୁଭଲଗ୍ନେ ଜାତ ହେଲୁରେ କୁମର
ଧନ୍ୟ ଧନ୍ୟ ଗୁରୁଙ୍କ ସେ ଅଟଇ ତୋହର ।
ଧନ୍ୟ ଧନ୍ୟ ଆରେ ବାବୁ ତୋ ପ୍ରାଣକୁ ଧନ୍ୟ
ଧନ୍ୟ ସୁବୁଦ୍ଧ ତୁହିରେ ଅଟୁ ବୁଦ୍ଧିମନ
ଯାହା ମୁଁ କହିଲି ବାବୁ ଦେଖାଇଲୁ ମୋତେ
ଆବର ଗୋଟିଏ କଥା ମାଗୁଅଛି ତୋତେ
ଶ୍ରୀ କୃଷ୍ଣ ବଚନ ଶୁଣି କହଇ ବେଲ୍ଲାଳ
ଯା ମାଗିବ ଦେବ ସତ୍ୟ ସତ୍ୟ ଆଦ୍ୟମୂଳ ।
ତହୁଁ ଶ୍ରୀକୃଷ୍ଣ ପ୍ରଶଂସା କରିଲେ ବହୁତ
ତାର ମନକୁ କରିଲେ ମାୟାରେ ଜଡ଼ିତ ।
ସତ୍ୟ କରାଇ ତାହାକୁ ବୋଇଲେ ବଚନ
ତୋ ଶିର କମଳ ମୋତେ ଦେବୁରେ ନନ୍ଦନ
ତାହା ଶୁଣିଣ ବେଲ୍ଲାଳ ହୋଇ ତୋଷମତି
ବୋଇଲା ମାଗିବ ଯାହା ଦେବୁ କାଣ୍ଡପତି ।

ଶୁଣି ଶ୍ରୀକୃଷ୍ଣ ବୋଇଲେ ଶୁଣ ଆରେ ବାଳ
ଯା ମାଗିବୁ ଦେବ ଗୁଡ଼ି ତୋ ଶିର କମଳ ।
ବେଲାଳ ବୋଇଲା ଦେବ କଲ ବୁଦ୍ଧିହୀନ
ଶିରକମଳ ମାଗିବ ମନେ କଲ ଜ୍ଞାନ ।
କ୍ଷତ୍ରୀମାନଙ୍କର ଏହା ଉଚିତ ନୁହଇ
ଦେଲାପଦାର୍ଥରେ ଆଉ ଲୋଭ କି ରହଇ ।
ଯେଉଁ ପଦାର୍ଥ ଯାହାକୁ ଯାଚଣା ଦିଅନ୍ତି
ପୁନର୍ବାର ହରିଲେ ସେ ଅଧୋଗତି ହୋନ୍ତି ।
ପୁରାଣେ ଏପରି କଥା ଉକତ ହୋଇଛି
କୁମର ବଚନ ଶୁଣି ଭଣନ୍ତି ଶ୍ରୀହରି ।
ଧନ୍ୟ ଏହାର ବଚନ କାହିଁ ଦେଖିନାହିଁ
ମଧୁର ବଚନ ପୁଣି ବୋଇଲେ ବୁଝାଇ ।
କିଏ ମାଗୁଛୁ ମୋହର ଦେବା ହେଲା ମୂଳ
ଶୁଣି ହରଷ ହୋଇଲା ମାରୁତିର ବାଳ ।
ବୋଇଲା ଜଗତନାଥ ତେବେ କାଟ ଶିର
ଏତିକି ମାତ୍ର ସୁଦୟା ମୋର ପ୍ରତି କର
ଦିବ୍ୟଚକ୍ଷୁ ଦେଇ ମୋତେ ରଖ ସ୍ତମ୍ଭୋପର
ଅଠରଦିନ ସମର ଦେଖିବି ଯେପରି ।
ସମର ଶେଷରେ ପଛେ ଯାଉ ଏ ଜୀବନ
ଏତିକି ପ୍ରାର୍ଥନା ମୋର ଘେନ ଜନାର୍ଦ୍ଦନ ।
ତାହା ଶୁଣି ଜଗନ୍ନାଥ କଲେ ସନମତ
ଚକ୍ରରେ କୁମର ଶିର ଛେଦିଲେ ତୁରିତ ।
ଶିରନେଇ ଶୁଭସ୍ତମ୍ଭ ଉପରେ ରଖିଲେ
ତହୁଁ ଯୁଧିଷ୍ଠିର ପାଶେ ଗମନ କରିଲେ ।
ପଥେ ଯାଉଁ ଯାଉଁ ହରି ଭାବିଲେ ଏମନ୍ତ
ଉପାୟେ ଭୀମପୁତ୍ରକୁ କଲିଲି ତ ହତ ।
ଏ କଥା କହିଲେ ନିଶ୍ଚେ ମାରୁତି ରାଗିବ
ପୁତ୍ରହତ ଶୁଣି ଆଜ ସେ ମୋତେ ମାରିବ ।
ଯାହାହେଉ ତାହିଁକି ଯେ ନ କରିବା ଚିନ୍ତା
ଅଠର ଦିନ ସମର ମୋର ବୃଥା ହନ୍ତା ।
ଏହା ଭାଳି ଯାଉଁ ଯାଉଁ ଦେବ ଦୟାନିଧି
କପଟରେ ବିଚାରିଲେ ଏହିପରି ବୁଦ୍ଧି ।
ଶୁଭସ୍ତମ୍ଭ ମାଗେ ବଳି ଜଣେ ଆମ୍ଭପରି
କାହାକୁ ଦେବା ଯାଇଣ ପୁଚ୍ଛିବି ଏପରି ।
ଏହା ଭାବି ଜଇନ୍ତାରେ ହୋଇଲେ ପ୍ରବେଶ
ବସିଥିଲେ ଗୃହରାଇ ଘେନ ଧର୍ମଶିଷ୍ୟ ।

କିଛିଦୂରେ ରହି ହରି ପ୍ରଣାମ କରିଲେ
ଶ୍ରୀମୁଖ ଶୁଖାଇ ହରି ଉଭା ସେ ହୋଇଲେ ।
ଶ୍ରୀକୃଷ୍ଣଙ୍କ ମୁଖ ଶୁଷ୍କ ଦେଖି ଯୁଧିଷ୍ଠିର
ପୁଚ୍ଛିଲେ ମୁଖ କାହିଁକି ଶୁଖିଛି ତୁମ୍ଭର ।
କିଛି ନ କହି ବସ୍ୟେ ରହନ୍ତେ ମୁରାରି
ଭୀମସେନ ପୁଚ୍ଛେ ତାଙ୍କୁ ଆହେ ଚକ୍ରଧାରୀ ।
କାହିଁପାଇଁ ତବ ମୁଖ ଦିଶଇ ବିରସ
କିଏ ପ୍ରଭୁ ତୁମ୍ଭଙ୍କୁ କି କରିଛି ଝିଙ୍ଗାସ ।
ଯାଦବପତି ବୋଲନ୍ତି ଦୁଃଖେ ତାଙ୍କୁ ଚାହିଁ
କୁରୁକ୍ଷେତ୍ର ମଣ୍ଡଳକୁ ଯାଇଥିଲି ମୁହିଁ ।
ଶୁଭସ୍ତମ୍ଭ ମାଗେ ବଳି ବଡ଼ ଆଚମ୍ବିତ
ଆମ୍ଭମାନଙ୍କ ପରାୟେ ନେଲେ ହେବ ତୃପ୍ତ ।
ତେଣୁକରି ମୋର ମନ ହେଉଛି ବିରସ
ଯାହା ଶୁଣି ଅଇଲି ତା କଲଇଁ ପ୍ରକାଶ ।
ଏଥିକି ତୁମ୍ଭ ମାନଙ୍କ ଅଛି କି ଉପାୟ
ଭଲରୂପେ ବିଚାରିଣ ମୋ ଆଗରେ କହ ।
ଯୁଧିଷ୍ଠିର ବୋଇଲେକ ଆମ୍ଭେ ଷଡ଼ଜଣ
ଜନ୍ମ ହୋଇଛୁ କରିବୁ ଭାର ନିବାରଣ ।
ଭୀମସେନ ବୋଇଲେକ ଶୁଣ ହେ ଶ୍ରୀହରି
ଆମ୍ଭର ସମାନ ଏକ କାହୁଁ ଆଣ ବାଛି ।
ଏହା କହି ପାଞ୍ଚଭାଇ ହୋଇଲେ ଆକୁଳ
ଝରଝର ବହିପଡ଼େ ନୟନରୁ ଜଳ ।
ଯୁଧିଷ୍ଠି ବୋଲନ୍ତି କାନ୍ଦି ଶୁଣ ହେ ମାଧବ
ସବୁଠାରୁ ରଖି ଏବେ ଶୁଭଖମ୍ବେ ଦେବ ।
ଆରେ ସହଦେବ ଭୀମ ଅର୍ଜୁନ ନକୁଳ
ଆମ୍ଭମାନଙ୍କର ଅଟେ କି ପୋଡ଼ା କପାଳ ।
ଜତୁଘରେ ମରିଥିଲେ ଭଲ ହୋଇଥାନ୍ତା
ଏତେ ଦୁଃଖ ସହିବାକୁ ଆଉ ଯେ ନୁହନ୍ତା ।
କେତେ କେତେ କଷଣରୁ ଉଧୁରି ଅଇଲୁ
ଏବେ ବାବୁ ଶୁଭଖମ୍ବ ହାବୁଡ଼େ ପଡ଼ିଲୁ ।
ଆରେ ଭୀମ ତୁହି ଯେବେ ନାଗପୁରେ ଥାନ୍ତୁ
ଏ ଶୁଭସ୍ତମ୍ଭର କଥା କିପାଇଁ ଶୁଣନ୍ତୁ ।
ଆରେ ବାବୁ ଅରଜୁନ ତୁ କୃଷ୍ଣଙ୍କ ଆତ୍ମା
ତୋତେ କେମନ୍ତେ ଦେବାକୁ ମୁଁ ଭାବଇ ଦୁରାତ୍ମା ।
ଏ ନକୁଳ ସହଦେବ ମାଦ୍ରୀ ବେନିପୁଅ
ଏହାଙ୍କୁ ଦେବାପାଇଁକି ହୃଦେ ଜନ୍ମେ କୋହ ।

ମୁହିଁ ଆଦ୍ୟରୁ ଧ୍ୟେ ହରି ଅର୍ଜିଛୁ ଏ କର୍ମ
ମୋତେ ନେହ ବଳ ଦିଅ ହେ ପୁରୁଷୋତ୍ତମ
ରାଜ୍ୟ ସମ୍ପଦରେ କାର୍ଯ୍ୟ ନାହିଁ ଯେ ମୋହର
ଦୁର୍ଯ୍ୟୋଧନ ଛୁଲେ ନୋହୁ ଆମ୍ଭର ସମର ।
ଯୁଦ୍ଧହେତୁ ସମ୍ମୁଠାରେ କର୍ପା ହେବ ହତ
ବାହୁଡ଼ି ବନକୁ ପୁଣି ଯିବ ଯଦୁନାଥ ।
ହେ ପ୍ରଭୁ ମୋ ପକ୍ଷେ ଏହା ଶ୍ରେୟ ଯେ ଅଟଇ
ମୋ ଛଡ଼ା ଭ୍ରାତୃଭାଇଙ୍କି ନ ପାରନ୍ତି ଦେଇ ।
ଭୀମ ଦେବାପାଇଁ ଯେବେ କରିବ ମାନସ
ପବନଦେବ କରିବେ ମୋହଠାରେ ରୋଷ ।
ଭୀମ ଦୁଷ୍ଟ ହେଲେ ସୁଦ୍ଧା ଦେଇ ନ ପାରିବ
ପବନ କୋପ କରିଲେ କପରି ବଞ୍ଚିବ ।
ଶୁଣି କ ବୋଲିବେ ମୋତେ ସଂସାରର ଲୋକେ
ସୋଦର ନାଶି ପଡ଼ିବ ରଉରବ ନର୍କେ
ସୋଦର ନାଶିବା ବୁଦ୍ଧି ନ ଜନ୍ମୁ ମୋ ହୃଦେ
ହେ ଗୋବିନ୍ଦ ସୁବୁଦ୍ଧିର ଦିଅ ମୋତେ ହାଦେ
ଏହା ଶୁଣି ଜଗନ୍ନାଥ କହିଲେ ଏସନ
ଏଥିପାଇଁ କପାଁ ଚିନ୍ତା କରୁଛ ଆପଣ ।
ଭୀମର ବିକଳ ଯାହା କହି ନ ସରଇ
ମୋହର ଦୁଷ୍ଟ ପ୍ରକୃତି ସବୁଦିନେ ଥାଇ ।
ଷାଠିଏ ପଉଟି ଅନ୍ନ ବେଳେ ନ ଅଣ୍ଟଇ
ତିନେଣ ଷାଠି ପୌଟି ମୋ ହିବେଳେ ଘଟଇ
ସବୁଠାରେ ମୋର ଦୁଷ୍ଟ କଥାମାନ ଶୁଣି
ତେଣୁ ମୋଠାରେ କୋପିବା କଲେ ଚକ୍ରପାଣି
ଏ ମୋହର ଦୁଷ୍ଟପଣ ଦେଖି ତ ନ ପାରି
ତେଣୁକରି ଶୁଭସ୍ତମ୍ଭେ ଦେବେ ମୋତେ ମାରି
ମାରୁତି ବିକଳ ଜାଣି ପୁରୁଷ ଉତ୍ତମ
ବୋଇଲେ କାହିଁକି ଚିନ୍ତା କରୁ ମନେ ଭୀମ
କୌଣସି ଚିନ୍ତା ମନରେ ନ କର ମାରୁତି
ତୁହି ଏକାକେ ଉଶ୍ୱାସ କରିବୁ ଏ ପୃଥ୍ୱୀ ।
ତୋ ପରି ବୀରକୁ ଯେବେ ଦେବା ଶୁଭଖମ୍ଭେ
କାରେ ଦେନ ପୃଥ୍ୱୀସିବ ଉଶ୍ୱାସିବୁ ଆମ୍ଭେ ।
ପାର୍ଥର ବିକଳ କଥା କେ କହି ପାରିବ
ଛଳେ ଏତେକାଳେ କୋପକଲେ ବାସୁଦେବ
ଶରଧନୁର ଟେରଣ ମନେ ଥିଲେ ଧରି
କିନ୍ତୁ ଶୁଭସ୍ତମ୍ଭେ ଏବେ ଦେବେ ମୋତେ ମାରି
ଶୁଭଦ୍ରା ହରଣେ ପୁଣି ମନେ ଥିଲି ରାଗ
ଏତେକ ବେଳେ ପଡ଼ିଛି ତାହାଙ୍କୁ ସୁଯୋଗ ।
ବଳରାମ ହାରିଥିଲେ ମୋ ସଙ୍ଗେ ସମରେ
ସତ୍ୟା ଜମ୍ବୁବତୀ ମୋର ସେବନ୍ତି ପଯୁରେ ।
ଏକାଳେ ପଡ଼ିଛି ମନେ ସେ ରାଗ ସକଳ
ବଳ ନଷ୍ଟେ ଦେବେ ଭାଳି ଅର୍ଜୁନ ବିକଳ ।
ଅର୍ଜୁନ ବିକଳ ଦେଖି ବୋଇଲେ ଶ୍ରୀହରି
ପାର୍ଥ କପାଁଇ ବିକଳ ହେଉଛୁ ଏପରି ।
ତୁହି ମୋର ପଞ୍ଚଭୂତ ଆତ୍ମା ଅଟୁ ପାର୍ଥ
ତୋତେ ଶୁଭସ୍ତମ୍ଭେ ମୁହିଁ ଦେବଇଁ କେମନ୍ତ
ତୁହି ବୀରଙ୍କର ଅଟୁ ମହା ଧନୁର୍ଦ୍ଧର
ତୋତେ ଦେଲ ଦୁଷ୍ଟଙ୍କୁ ମୁଁ କରଇ ସଂହାର
ତୁହି ମୋର ପ୍ରାଣସଖା ଜୀବର ଜୀବନ
ତୋତେ ପୁଣି ବଳଦେବ ଭକ୍ତନ୍ତୁ ଏସନ ।
କେତେ କାର୍ଯ୍ୟ କରିନ୍ତୁ ତୁ ନରଦେହ ବହି
ମୁଁ କେ ପ କରିଥିଲେ କି ବଢ଼ିଥାନ୍ତୁ ତୁହି ।
ଦେଖି ରହି ପାରନ୍ତି କି ମୋର ବିଶ୍ୱରୂପ
ବଳରାମଙ୍କୁ ଜିଣନ୍ତୁ ତୋର କିବା ଦର୍ପ ।
ତୁ ଯେଣୁ ମୋର କଳାରେ ଅଛୁ ଅବତରି
ତେଣୁ ସାରଥି ହୋଇଲି ରଥରେ ତୋହର ।
ଭଦ୍ରା ହରଣେ ପାଇଲୁ ଅବସ୍ଥା ତୁ ଯେତେ
ଗୁପତରେ ଚକ୍ର ସିନା ଦେଇଥିଲି ତୋତେ ।
ମୋର ଚକ୍ର ଦେଖି ସର୍ବେ ଗଲେ ଅପସରି
ତେଣୁକରି ଭଦ୍ରା ସିନା ହୋଇଲା ତୋହର ।
ହେ ପାର୍ଥ ଅନେକ ଦୟା ମୋର ତୋହଠାରେ
ତୋତେ ପୁଣି ବଳ ଦେବି କେମନ୍ତ ପ୍ରକାରେ ।
ଆରେ ଧନଞ୍ଜୟ ମନେ ନ ଭାଳ ତୁ କିଛି
ତୋତେ ଦେଲି କୁତୂହଳ ଭବେ ମୁଁ ଦେଖୁଛି ।
ନକୁଳ ଆକୁଳ ହୋଇ ଭଣିଲେ ଏକଚିତ୍ତେ
ଅତି ସୁକୁମାର ମୋତେ ଜାଣନ୍ତି ସମସ୍ତେ ।
ମାଛି ଗୋଟିଏ ମୋ ଦେହେ ଯଦ୍ୟପି ବସଇ
ଶତେଟଳ ଚନ୍ଦନ ମୁଁ ସର୍ବାଙ୍ଗେ ଲେପଇ ।
ନିଷ୍ଟସ୍ତମ୍ଭେ ମାରିବେ ମୋତେ ପ୍ରଭୁଦେବସ୍ତମ୍ଭେ
ବଳିଭ ଯୋଗ୍ୟ ହେବାକୁ ଜନ୍ମ କଲେ ମାଏ
ସାଧ୍ୱୀ କୁନ୍ତୀ ଦେବୀଙ୍କର ପୁତ୍ର ତିନଗୋଟି
ଆମ୍ଭେ ଦୁଇଟି ସୋଦର ଅଟୁ ବଡ଼ କଷ୍ଟି ।

ଆମ୍ଭ ଦୁହିଙ୍କରୁ ଏକ ନଷ୍ଟେଁ ହେବ ବଳ
କାନ୍ଦିଲା ନକୁଳ ମନେ ଏହା ଭାଳି ଭାଳି ।
ଶୁଣି ଭାବେ ତ୍ରିକାଳଜ୍ଞ ଅଟେ ସହଦେବ
ତାହାକୁ ମାରି କଦାପି ନ ଦେବ କେଶବ ।
ମୁହିଁ ପାପୀ ମୋର ଅଟେ ଏ ହୀନ କପାଳ
ଏ ସଙ୍କଟୁ ପାରିକର ଆହେ ଆଦିମୂଳ ।
ଆହେ ଯୁଧିଷ୍ଠିର ଦେବ ରକ୍ଷାକର ମୋତେ
ମାଏ ଯେ ସମର୍ପି ଗଲେ ତୁମ୍ଭର ଅଗ୍ରତେ ।
ଏକବାର ଦୟାକରି ତୁମ୍ଭେ ମୋତେ ରଖ
ଉଭୟ ବଳ ମଧ୍ୟରେ ମୋ ସମର ଦେଖ ।
ନକୁଳର ଦୁଃଖ ଜାଣି ବୋଲନ୍ତି କେଶବ
ଯୁଧିଷ୍ଠିର ତୋତେ ଯାହା କେ ପୁଣି ମାରିବ ।
ନକୁଳର ଅଶ୍ରୁଧାର ସର୍ବଦା ବହୁଛି
ଦେଖି ଯୁଧିଷ୍ଠି ବୋଇଲେ ନ ଭାଳ ତୁ କିଛି
ତୋହର ଆପଦ ବାବୁ ଯଦ୍ୟପି ଶୁଣିବି
ତେ ପାଇଁ ନିଶ୍ଚୟ ମୋର ଶିର ସମର୍ପିବି ।
ମାଦ୍ରୀ ସମର୍ପଣ କଲେ ତୁମ୍ଭଙ୍କୁ ମୋ ଠାଇଁ
ଭୀମାର୍ଜୁନଙ୍କୁ ଅଧିକ ତୁମ୍ଭଙ୍କୁ ଦେଖଇ ।
ତୁହି ନକୁଳରେ ମନେ ନ ହୁଅ ହତାଶ
ଯହିଁ ଯଦୁପତି ଛନ୍ତି ତହିଁ ଭୟ କିସ ।
ସହଦେବ ବିକଳରେ ଭାବେ ମନେ ମନେ
ଶୁଭସ୍ତମ୍ଭେ ମାରି ମୋତେ ଦେବେ ଭାଇମାନେ
କୃଷ୍ଣଙ୍କ ମାୟା ଘୋଟିଛି ସବୁଙ୍କର ଠାଇଁ
ଏହି ମାୟା ସହଦେବ ଜାଣିପାରୁ ନାହିଁ ।
ଭାବେ ମୁଁ ଜାଣିଣ ହେଣୁ ନ କହଇ କିଛି
ତେଣୁ ଭାଇସହ ରଚିଛନ୍ତି ଶ୍ରୀହରି ।
ପଚାରିଲେ ସମସ୍ତ ମୁଁ କହଇ ନିଶ୍ଚିତ
ଯାହା ସେ ପୂର୍ବରୁ କରିଅଛି ସତ୍ୟବ୍ରତ ।
ଏବେ ଛଦ୍ମରେ ନିଶ୍ଚୟ ପ୍ରଭୁ ଚକ୍ରଧାରୀ
ଶୁଭସ୍ତମ୍ଭେ ଆପଣ ସେ ଦେବେ ମୋତେ ମାରି
ଏମନ୍ତ ମନେ ମନେ ଭାବେ ସହଦେବ
ଏ କଷ୍ଟରୁ ରକ୍ଷାକର ମୋତେ ବାସୁଦେବ ।
ତୁମ୍ଭ ଆଶ୍ରିତେ ବଞ୍ଚିଛୁ ଆମ୍ଭେ ପାଞ୍ଚଭାଇ ।
ସର୍ବେ ବୋଲନ୍ତି ପାଣ୍ଡବେ ଯାହା ଭବଗ୍ରାହୀ ।
ସହଦେବ ମନ ଜାଣି ବୋଲନ୍ତି ଶ୍ରୀବତ୍ସ
ଏ ମଧ୍ୟ ବଳଦେବାର ନ ଜାଣଇ କିଛି ।

ସମସ୍ତଙ୍କ ମନଭାବ ଜାଣି ମାୟାଧର
ବୋଇଲେ ଏବେ କରୁଛ କେବଣ ବିଚାର ।
ସମସ୍ତେ ତ ଏହା ଶୁଣି ବିକଳେ କାନ୍ଦିଲେ
ବଳ ଦେବାର କଥାତ କେହି ନ କହିଲେ ।
ସମସ୍ତେ ବୋଇଲେ ଆମ୍ଭେ ତୁମ୍ଭର ଆଶ୍ରିତ
ଆପଣ ଯାହା କରିବେ ଆମ୍ଭର ସମ୍ମତ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ପଞ୍ଚଆତ୍ମା ମୋର
ତୁମ୍ଭଙ୍କୁ କି ବଳଦେବି କରିଣ ସଂହାର ।
ଯେତେବେଳେ ଶୁଭସ୍ତମ୍ଭ କ୍ଷେତ୍ର ମଣ୍ଡଳରେ
ବଳିଏ ମାଗିଲା ସେହି ଆମ୍ଭ ସଦୃଶରେ ।
ତାହା ଶୁଣି ମୋର ମନ ବିକଳ ହୋଇଲା
କିସ କରିବି ବୋଲିଣ ବୁଦ୍ଧି ହଜିଗଲା ।
ଏହା ଭାଳିଭାଳି ମୁହିଁ ଦୁଃଖେ ଆସୁଥିଲି
ଯମୁନା ତୀରରେ ଏକ ବୀରକୁ ଦେଖିଲି
ତାହାକୁ ଆମ୍ଭମାନଙ୍କ ସଦୃଶ ଦେଖିଣ
ସତ୍ୟପାଶରେ ତାହାକୁ କରିଣ ବନ୍ଧନ ।
ମାଗନ୍ତେ ଶିରକମଳ ସେହି ରାଜନେଲା
ନାମ ପୁଚ୍ଛନ୍ତେ ବେଲାଳସେନ ସେ ବୋଇଲା
ଶୁଭସ୍ତମ୍ଭଠାରେ ତାକୁ ନେଇକରି ଗଲି
ତାକୁ ମାରି ଶୁଭସ୍ତମ୍ଭ ଉପରେ ଥୋଇଲି ।
ଶୁଭସ୍ତମ୍ଭେ ଆସିଅଛୁ ଆଗେ ବଳଦେଇ
ତୁମ୍ଭମାନଙ୍କର ପାଇଁ ରଖିନାହିଁ ମୁହିଁ ।
ଆସି ବୁଝୁଥିଲି ତୁମ୍ଭମାନଙ୍କର ଚିତ୍ତ
ତୁମ୍ଭେମାନେ କାହାକୁ ଯେ ଦେବାକୁ କହନ୍ତ ।
ଶୁଣି ଯୁଧିଷ୍ଠିର ଆଦି ହୋଇଲେ ବିସ୍ମିତ
ପବନ ତନୟ ଶୁଣି ହେଲା କୋପାନ୍ୱିତ ।
ତେବେ ମୋ ପୁତ୍ରକୁ ହରି କରିଲ ସଂହାର
ଏହା କହି କୋପେ ଗଦା କରିଲା ପ୍ରହାର ।
ପୁଷ୍ପପାଖୁଡ଼ା ପିନ୍ଧିଲେ ଲାଗଇ ଯେପରି
ଭୀମ ଗଦାକୁ ମଣିଲେ ପ୍ରଭୁ ସେହିପରି
ବେଗେ ଯୁଧିଷ୍ଠି ଧଇଲେ ଭୀମସେନ ବାହା
ବୋଇଲେ ଜଗନ୍ନାଥଙ୍କ ହୋଇବୁ ଦୋରହା
ଯାହା ପ୍ରସାଦରେ ଆମ୍ଭେ ସୁଖଭୋଗ କରୁ
ଯାହା ପ୍ରସାଦରେ ଆମ୍ଭେ ସର୍ବଦୁଃଖୁ ତରୁ ।
ଯାହା ପ୍ରସାଦେ ଆମ୍ଭର ନାହିଁ କିଛି ଭୟ
ଯାହା ପ୍ରସାଦେ ଆମ୍ଭର ବଳ ଅତିଶୟ ।

ସେହି ପ୍ରଭୁଙ୍କ ଚରଣେ ହେଉ ଅପରାଧୀ
କାଳକଯାକ ନ ଗଲା ତୋର ଦୁଷ୍ଟବୁଦ୍ଧି ।
ହେ ପ୍ରଭୁ ଭୀମସେନର ଦୋଷକୁ ନ ଦେନ
ସନ୍ତୋଷ ମନେ ତାହାକୁ କର କ୍ଷମାଦାନ ।
ଧର୍ମ ବିନୟ ଭାବରେ କହନ୍ତେ ଏ ବାଣୀ
ଆନନ୍ଦେ ଭୀମକୁ କୋଳ କଲେ ଚକ୍ରପାଣି ।
ଭୁଜରେ ଭିଡ଼ ବଚନ ବୋଇଲେ ମଧୁର
ପ୍ରାଣସଖା ଅଟୁ ଭୀମ ହୃଦରେ ମୋହର ।
ଏହା କହିଣ ଶ୍ରୀକୃଷ୍ଣ ଅର୍ଜୁନ ସଙ୍ଗରେ
ଉପସ୍ଥିତ ହେଲେ ଯାଇ ନିର୍ଜନ ସ୍ଥାନରେ ।
ତହୁଁ ନିଶ୍ଚଳ ହୋଇଣ ବସିଲେ ସେ ଦୁଇ
ଯୁଦ୍ଧର ବିଷୟ ମାନ ହେଲେ କୁହାକୁହି ।
ତୋର ଚଣ୍ଡାଳର ଭାବ ବୁଝିବ କେ ହରି
ଶାରଳା ଦାସକୁ ଭବଜଳୁଁ କର ପାରି ।

## ଭାରଦାର ଭାରତ ଭବିଷ୍ୟତ
## ବାଣୀ କଥନ

ଅଗସ୍ତିଙ୍କୁ ପଚାରିଲେ ବଲଙ୍କା ନୃମଣି
ହେ ମୁନି ପଣ୍ଡିତ ଦେନ ମୋ କହିବା ବାଣୀ
ବେଲାଳସେନକୁ କୃଷ୍ଣ କରିଲେ ସଂହାର
ଶୁଭସ୍ତମ୍ଭରେ ସ୍ଥାପିଲେ ନେଇ ତାର ଶିର
ତହିଁ ଉତ୍ତାରୁ ପାଣ୍ଡବେ କଲେ କେଉଁ ଶତ
ସେହି କଥା ଶୁଣିବାକୁ ବଳଇ ମୋ ମତ ।
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
ସହଦେବ ଥିଲେ ବସି ଧର୍ମଙ୍କ ନନ୍ଦନ ।
ହରଷ ମନେ କହନ୍ତି ହୋଇ ଖେଦମତି
ବେଲାଳସେନ ମାଇଲେ ଦେବ ଶ୍ରୀପତି ।
ବହୁ ସୈନ୍ୟ ଦେଖି ମୋତେ ମାଡ଼ୁଅଛି ଡର
କୌରବେ କେବେହେଁ ଜିଣିବା କରିଣ ସମର ।
ରଣ କଲେ ଜିଣିବା କି ଆମ୍ଭେ କଉରବ
ସେ କଥା ପଞ୍ଚାଇ ମୋତେ କହ ସହଦେବ ।
ଅଥବା ଜିଣି ନ ପାରୁ ଯଦ୍ୟପି ସମରେ
ତେବେ ବିବାଦ କରିବା କପାଁ ସହୋଦରେ
ବାବୁ ତୁ ସୋଦର ମୋର ଭବିଷ୍ୟଜ୍ଞାତା
ବିସ୍ତରିଣ କହ ମୋତେ ସମର ବାରତା ।

ସହଦେବ ବୋଲେ ମୁହିଁ ଜାଣେ ସର୍ବକଥା
ହାରିବା ଜିଣିବା ଅଟେ ଷଶୀଙ୍କ ବ୍ୟବସ୍ଥା ।
ଏକା ତୁମ୍ଭେ ଜାଣ ଜେତା ଦେବ ନାରାୟଣ
ରାମ ଅବତାରେ କଷ୍ଟେ ମାଇଲେ ରାବଣ ।
ମହୀରାବଣ ହରିଲା ଅନେକ ମାୟାରେ
ଇନ୍ଦ୍ରଜିତ ବାନ୍ଧିଗଲା ଦିଶୀୟ ଯୁଦ୍ଧରେ ।
ରାବଣ ସେ ଲକ୍ଷ୍ମଣଙ୍କୁ ମାଇଲା ଶକତି
ହନୁ ପ୍ରସାଦେ ସୌମିତ୍ରି ଜୀବନ ଲଭନ୍ତି ।
ହାନିଲାଭ ଦୁଇକଥା ହୁଅଇ ବିବାଦେ
ବିଷ୍ଣୁ ହେଜ ନ ପାରିଲେ ଥରକରେ ହାଦେ
ସଂଗ୍ରାମର କଥା ଅଟେ ଅତି ଅଗୋଚର
ଆମ୍ଭଙ୍କୁ ଉଦ୍ଧରି ନେବେ ଦେବ ଚକ୍ରଧର ।
ଅଥବା ସଂକ୍ଷେପି କରି କହି ମୁଁ ପାରଇ
ଭୀମସେନ ଠାକୁରଙ୍କ କୋପକୁ ଡରଇ
ଜିଣିବା କଥା କହିଲେ ସୁଦୟା କରିବେ
ହାରିବା ଶୁଣିଲେ ମୋତେ ପରାଣେ ମାରିବେ ।
ଯୁଧିଷ୍ଠି ବୋଇଲେ ତୁ ତ ଜାଣି ନ କହିବୁ
ଆନେ ଅଗୋଚର ତୋତେ କହିତ ଏ ସବୁ
ପୁଣିହିଁ ବୋଇଲେ ଦେବ ଶୁଣ ସହଦେବ
ସଂକ୍ଷେପିଣ କହ ମୋତେ କଥାର ପ୍ରସ୍ତାବ
ସହଦେବ ବୋଲେ ମୁହିଁ ନ ଜାଣଇ କିଛି
ସଂଶୟ ଫେଡ଼ିବାପାଇଁ ଜଣେ ମାନ୍ଦ ଅଛି ।
ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ମନ୍ତ୍ରୀକଥା ଶୁଣି
ବୋଇଲେ କେଉଁ ମହାତ୍ମା ଆଣ ଏହିକ୍ଷଣି ।
ଭାରତ କହିବାକୁ ଯେ ହୋଇବ ଆଗତ
ତାହାକୁ ଦର୍ଶନ କରି ହୋଇବୁ ମୁକତ !
ବାବୁ ତାହାଙ୍କୁ ଦେଖିଲେ ହେବ ବଡ଼ ଧର୍ମ
ଜାଣିବା ସେ ମହାତମା ପୁରୁଷ ଉତ୍ତମ ।
ସୁପୁରୁଷ ସୁଦେବତା ସୁତୀର୍ଥ ସୁସ୍ଥାନ
ଯାଙ୍କ ଦର୍ଶନେ ସଫଳ ହୁଏ ସେହି ଦିନ ।
ମନ୍ତ୍ରୀ ବୋଲେ ଶୁଣି ଇଚ୍ଛା ଯେବେ ନୃପମଣି
ଭୀମଠାକୁର ଗଲେ ସେ ଆସିବ ଏକ୍ଷଣି ।
ବୈତରଣୀ ନଦୀକୂଳେ ଯାଜପୁର ନଗ୍ରେ
ଧବଳ ପର୍ବତ ଅଛି ତା ପଶ୍ଚିମ ଭାଗେ ।
ଶୁଭ ପିଙ୍ଗଳ ପର୍ବତ ଅଟେ ତାର ମାୟା
ପୂର୍ବେ ଦୁନ୍ଦୁଭି ଦୈତ୍ୟର ଅଟଇ ସେ କାୟା

ସେହି ପର୍ବତର ତଳେ ସେ ପୁରୁଷ ବାସ
ପରମଳ ଭୁବନ ଯେ ସୁନ୍ଦର ଅବାସ ।
ସହଦେବର ମୁଖରୁ ଶୁଣି ଏ ବଚନ
ଭୀମସେନଙ୍କୁ ହକାରି ଆଣିଲେ ବହନ ।
କରପତ୍ରଯୋଡ଼ି ଭୀମ ବଚନ ପୁଚ୍ଛଇ
କିସ ଆଜ୍ଞା ହେଉ ବୋଲି ଆଦେଶ ମାଗଇ ।
ଯୁଧିଷ୍ଠି ଦେବ ବୋଇଲେ ଶୁଣ ହେ ମାରୁତି
ସେ ପୁରୁଷ ଦେଖିଆସ ଯାଇ ତୁ ତୁରିତ ।
ତାକୁ ନ ଦେଖିବା ଯାଏ ଭୋଜନ ମୋ ନାହିଁ
କାଳଯାଏ ତୋତେ ମୁହିଁ ଥିବି ବାଟ ଚାହିଁ ।
ଭୀମସେନ ସହଦେବ ହସ୍ତ ଧରିକରି
ବୋଲେ ସେ ପୁରୁଷ କଥା କହ ତୁ ବିସ୍ତାରି ।
ମନ୍ତ୍ରୀବୋଲେ ଭବିଷ୍ୟତ ଶୁଣିବେ ଯୁଧିଷ୍ଠି
ସେହି କଥା କହି ତାର ମୂର୍ଦ୍ଧା ଯିବ ଫାଟି ।
ବହନ ଯାଇଣ ତାକୁ ଦେଖି ଆସ ଖରେ
ଶରଦା ନାମ ତାହାର ଥାଏ ଯାଜପୁରେ ।
ଭାର୍ଯ୍ୟା ଗୋଟିଏ ତାର ବଡ଼ଇ ସୁନ୍ଦରୀ
ମୋହିନୀ ଅପସରୀ ପ୍ରାୟେ ରୂପଟି ତାହାରି ।
ଚଳିଗଲା ଭୀମସେନ ମନ୍ତ୍ରୀର ବଚନେ
ନିମିଷକେ ପ୍ରବେଶିଲା ତିନିଶ ଯୋଜନେ ।
ପ୍ରବେଶ ହେଲା ମାରୁତି ଧବଳ ପର୍ବତେ
ପୁରି ଦେଖିଲା ସୁନ୍ଦର କହିବାର ମତେ ।
ଶୁଦ୍ଧ ସୁସଜ୍ଜ ଅଟଇ ସେହି ପୁରି ଗୋଟି
ଭୀମସେନ ବିଚାରଇ ପବିତ୍ର ସ୍ଥାନଟି ।
ଭାରତ କହିବାକୁ ଯେ ହୋଇବ ଭାଜନ
କାହିଁ ଯୁଦ୍ଧସ୍ଥାନ ତାକୁ ନୋହିବ ବିଧାନ ।
ବିଚାରେ ଭୀମ ଏହାର କେବଣ ଚରିତ
କେବଣ ପୁରୁଷ ଏହୁ ବୁଝିବି କେମନ୍ତ ।
ସୁସଜ୍ଜ ଶେଯ ଗୋଟିକେ କରିଥିଲା ନିଦ୍ରା
ଅନଙ୍ଗର ପଟାନ୍ତର ସେ ପୁରୁଷ ସିଦ୍ଧା ।
ଶରୀର ଦୀର୍ଘ ଅଟଇ ମୋଟ ବେନିଜାନୁ
ବିସ୍ତାରଣ ବକ୍ଷସ୍ଥଳ ଚମ୍ପାବର୍ଣ୍ଣ ତନୁ ।
ସୁଦୀର୍ଘ କେଶ ବିସ୍ତୃତ ତା ଲଲାଟପାଟି
ତିଳପୁଷ୍ପ ପ୍ରାୟେ ନାସା ସୁଦୃଶ୍ୟ ତା ଦୃଷ୍ଟି ।
ଅନେକ ଅଳଙ୍କାରେ ଭୂଷିତ ତା କାୟେ
ସ୍ୱରୂପ ଦିଶଇ ସେହି ବିଦ୍ୟାଧର ପ୍ରାୟେ ।

ତମିର ନିବାରଣ କି ଦିଶେ ତାର ତନୁ
ଦେଖି ବହୁତ ପ୍ରଶଂସା କରେ ବାତସୂନୁ ।
ଭୀମସେନ ବିଚାରଇ ଏ କି ସୁରକ୍ଷିତ
ସାଧୁ ସହଦେବ ତୋର ସାଧୁରେ ଭାରତୀ ।
ଭବିଷ୍ୟତ କହିବାକୁ ଯେହୁ ସାମରଥା
ସାମାନ୍ୟ ଲୋକ କି ଏହୁ ହୋଇବ ସର୍ବଥା ।
ଯାକୁ ଦେଖିଲି ଏହାର ନ ଜାଣିଲି ତତ୍ତ୍ୱ
କେଉଁ ସାଧକ ଏ ଅଟେ କେଉଁ ଜ୍ଞାନବନ୍ତ ।
ବେଦଶାସ୍ତ୍ରର ସାଧନା କିବା ଜାଣେ ତନ୍ତ୍ର
କେଉଁ ପ୍ରବୃତ୍ତି ଏହାର କରେ କେଉଁ ମନ୍ତ୍ର ।
ଏହିପରି ବିଚାରଇ ଭୀମ ମହାକାୟ
କିଛି କରି ନ ପାରଇ ତାହାର ନିର୍ଣ୍ଣୟ ।
ଭାର୍ଯ୍ୟା ପ୍ରବେଶ ତାର ହୋଇଲାକ ଦ୍ୱାରେ
ତାକୁ ବୋଲେ ସଖି ଯାଅ ମରଡ଼ାର ଘରେ ।
ମରଡ଼ା ଘରକୁ ତହୁଁ ଭାର୍ଯ୍ୟା ଚଳିଯାଏ
ପାଣିଝରି ଦେଖି ତାର ପଛରେ ଗୋଡ଼ାଏ ।
ମଳତ୍ୟାଗ କରି ବାଳୀ ଉଭାହେଲା ଦ୍ୱାରେ
ଶୌଚ କରିଦେଲା ନେଇ ତାହାକୁ ସତ୍ୱରେ ।
ସୁଗନ୍ଧ ଅଏଁଳା ନେଇ ଲଗାଇଲା କେଶେ
ଟଭରସ ନେଇ ପୁଣ ମସ୍ତକରେ ଘଷେ ।
ପମାର ନୀରରେ ତାର ଅଙ୍ଗକୁ ପଖାଳି
ରଙ୍ଗ ନୀଳ ବସନକୁ ଦେଲା ନେଇ ତୋଳି ।
ତାକୁ ପିନ୍ଧାଇ ପାଲଟ ବସ୍ତ୍ର ନେଲା କାଢ଼ି
ସେ ବସ୍ତ୍ର କାଚେ ଶରଦା ପଥରେ କଚୁଡ଼ି ।
ଶୁଖିଲା ବସନେ ତାର କେଶ ଦେଲା ପୋଛି
ହାତରେ କେଶ କୁରୁଳେ ଅନ୍ୟକରେ ବାନ୍ଧି ।
ହାତୀଦାନ୍ତ ପାନିଆରେ କେଶ ତା ସାମଳି
କାବେରୀ ଖୋପା ତହିଁରେ ଦେଲା ଚମ୍ପାମାଳି
ସୁବେଶ କରିଣ ତାକୁ ଦିବ୍ୟ ଅଳଙ୍କାରେ
ଭୋଜନ ସ୍ଥାନେ ବିଞ୍ଚିଲା ନେଇ ବିଅଣିରେ ।
ପରଷଇ ନେଇ ତାକୁ ଦିବ୍ୟ ଶାଳିଅନ୍ନ
ତାହା ସହିତରେ ଦିଏ ନାନାବିଧ ବ୍ୟଞ୍ଜନ ।
ଭୋଜନ ଶେଷ ହୁଅନ୍ତେ ଆଚମନ କାଳେ
ଭାର୍ଯ୍ୟା ପିଢ଼ାପରେ ସ୍ୱାମୀ ପାଣିଦିଏ ତଳେ
ଆଚମନ ସାରି ନାରୀ ବସେ ପଲଙ୍କରେ
ମସଲା ମିଶା ତାମ୍ବୁଳ ଭୁଞ୍ଜାଇଲା ଖରେ ।

ପଲ୍ୟଙ୍କ ତଳେ ଘରଦା ବାଅଣିକି ନେଇ
ଧୀରେ ଧୀରେ ତାର ଅଙ୍ଗକୁ ବାଅଇ ।
ଆନ ପଲ୍ୟଙ୍କରେ ପୁଣି ଶେଯକୁ ସଜାଇ
ଦକ୍ଷିଣକୁ ଶିର କରି ଶୁଆଇଲା ତହିଁ ।
ତା ଉଚ୍ଛିଷ୍ଟ ପାତ୍ର ଅନ୍ନ ବ୍ୟଞ୍ଜନାଦି କାଢ଼ି
ତାକୁ ଖାଇ ପାତ୍ର ଧୋଇ ରଖିଲା ସଜାଡ଼ି ।
ତଦପରେ ତା ଚରଣ ଚାପିଲାକ ବସି
ଏମନ୍ତକାଳେ ପ୍ରଭାତେ ପ୍ରବେଶିଲେ ଆସି ।
ଅଗସ୍ତି ବୋଇଲେ ଶୁଣ ମନୁବଂଶେ ପୁଣି
ଜାର ପ୍ରଭାତକୁ ଭର୍ଯ୍ୟା ସମର୍ପିଲା ଆଣି ।
ଶଯ୍ୟା ତେଜ୍ୟାକରି ତହୁଁ ଉଠିଲା ତରୁଣୀ
ସରୋବରକୁ ଘରଦା ଚଳେ ପାଣି ଆଣି ।
ଭଳଇ ମାରୁତ କଲା କେଡ଼େବଡ଼ କୃତ୍ୟ
ଏଡ଼େ ପାପୀର ତୁଲିବ କେମନ୍ତେ ମୁଁ ଗାତ୍ର
ସହଦେବ ଭଣ୍ଡି ଦେଲା ଯୁଧିଷ୍ଠି ଦେବଙ୍କୁ
ଘରଦା ନ ନେଲେ କୋପ କରିବେ ଆମ୍ଭଙ୍କୁ
ବୋଲିବେ ସମରେ ତାକୁ ନ ପାରିଲା ଜିଣି
ସେଥିନିମନ୍ତେ କି ଅବା ନ ପାରିଲା ଆଣି ।
ନେଲେ ଧର୍ମହାନି ଛାଡ଼ିଗଲେ ଧର୍ମହାନି
ଧର୍ମ ଅଧର୍ମ ହେଉ ବା ଯାକୁ ଯିବ ସେନି ।
କୁନ୍ତି ବୃତ୍ତାନ୍ତେଣ ଯାଇ ସରୋବରେ ପଶି
ଭୀମ ଘରଦାର କେଶ ଧରିଲା ଆକର୍ଷି ।
ନଅନ୍ତେ ଚରଣ ତାର ନ ଲଗଇ ଭୂମି
ଘରଦା ବୋଲଇ ମୋର କିସ ଦୋଷ ସ୍ୱାମି
ପ୍ରିୟସ୍ୱରେ ଘରଦା ସମସ୍ୟା ପୁଚ୍ଛିଲ
ରାଗେ ବୃକୋଦର ତାକୁ କଥା ନ କହଇ ।
ତିନଶ ଯୋଜନ ପଥ ଗମିଲା ତତ୍‌କ୍ଷଣ
ମୁନେହି କହିଲେ ଧର୍ମରାଜାଙ୍କୁ ଯାଇଣ ।
ଆଦିତ୍ୟ ଅସ୍ତ ହୋଇଲା ପ୍ରବେଶ ରଜନୀ
ଭୀମଠାକୁର ପ୍ରବେଶ ଘରଦାକୁ ସେନି ।
ସହଦେବ ବୋଲେ ଦେବ ଅନ୍ତବାଡ଼ ପଡ଼ୁ
ପ୍ରତିବାକ୍ୟ ପାଇ ଭୀମ ତା ଭିତରେ ଛାଡ଼ୁ ।
ଯୁଧିଷ୍ଠି ବୋଇଲେ ତାର ଦେଖିବା ବଦନ
ଏମନ୍ତ ପ୍ରାଣୀ ଦେଖିଲେ ଅଛି ବଡ଼ପୁଣ୍ୟ ।
ଭୀମସେନ ବୋଲେ ଦେବ ସେତ ବଡ଼ପାପୀ
ଆପଣା ପତ୍ନୀକି ପରେ ଦିଅଇ ସମର୍ପି ।

ଯୁଧିଷ୍ଠି ଆଶ୍ଚର୍ଯ୍ୟ ହେଲେ ସେହିକଥା ଶୁଣି
ଭୂମିଟୁଇଁ ଶ୍ରବଣରେ ଦେଲେ ବେନିପାଣି ।
ଶିବ ଶିବ ସୁମରଣା କରିଲେ ଯୁଧିଷ୍ଠି
ଆସ୍ଥାନ ମଣ୍ଡଳେ ଦେବ ତହୁଁ ଗଲେ ଉଠି
ପଛେ ଗୋଡ଼ାଇ ବୋଇଲେ ମନ୍ତ୍ରୀ ଚୂଡ଼ାମଣି
ଘରଦା ଚରିତ ଦେବ ନ ପାରିଲ ଜାଣି ।
ଧର୍ମ ବୋଇଲେ ଯେପରି ଆମ୍ଭେ ମନ୍ଦରାଜା
ଘରଦା ଆଣି ଆମ୍ଭଙ୍କୁ କରାଇଲୁ ଲଜ୍ଜା ।
ମୁହିଁ ତ ଅଧମ ଅଟେ ରେ ବାବୁ ଆଗହୁଁ
ପଶାରେ ହରାଇଦେ ରାଜ୍ୟ ହାରିଲଇଁ ଯହୁଁ ।
ଆତ୍ମାସନ୍ତତି ଦିଅନ୍ତୁ କରିଲ ଘରଯା
ତେଣୁ ତୁ ଘରଦା ଆଣି ମୋତେ ଦେଲୁ ଲଜ୍ଜା
ଆରେ ମନ୍ତ୍ରୀ ଯାର ମୁଖ ନ ଗୁହିଁ ଯୁକତେ
ସେ ପୁଣି ଭାରତ ଯୁଦ୍ଧ କହିବ କେମନ୍ତେ ।
ସହଦେବ ବୋଲେ ଶୁଣ ବୃକୋଦର ଭାଇ
ଘରଦା ଆଣିବା କଥା ତାକୁ ନ ଯୋଗାଇ ।
କୁରୁକ୍ଷେତ୍ର ମଣ୍ଡଳକୁ ବେନିଭାଗ କରି
ଯେଉଁ ସ୍ତମ୍ଭ ପୋତିଅଛି ମଧ୍ୟରେ ତାହାର ।
ସୁସଜ୍ଜ କରିଣ ଦେବ ରକ୍ଷୁ ଏକ ଧରି
ତାହାକୁ ସେ ଖମ୍ବେ ନେଇ ବାନ୍ଧ ଯତ୍ନକରି ।
ଭୀମ ବୋଲଇ ଘରଦା ଏ ନିର୍ଦ୍ଦୋଷ ପ୍ରାଣୀ
ତୋହର ହେତୁରୁ ନିଷ୍ଟୟ ବଧ ହେଲା ଜାଣି ।
ଆରେ ତହିଁ ସର୍ବପ୍ରେତ ହୋଇଛନ୍ତି ମେଳ
ଏହା ମାଂସକୁ କରିବେ ତହିଁ ଭକ୍ଷବଳ ।
ସ୍ଥଳରେ ଘରଦା ନେଇ ବାନ୍ଧିବଇଁ ତୋତେ
ସହଦେବ ବୋଲେ ହତ୍ୟା ନ ଲାଗିବ ମୋତେ ।
କୁରୁ ପାଣ୍ଡବ ସମର ମଧ୍ୟସ୍ଥ ସ୍ତମ୍ଭରେ
ଘରଦାକୁ ନେଇ ଭୀମ ବାନ୍ଧିଲେ ଦୃଢ଼ରେ ।
ସେ ସ୍ଥାନରୁ ବଳେ ଭୀମ ନିଜ ନିକେତନେ
ସହଦେବେ ଉପହାସ କଲେ ବୀରମାନେ ।
ଘରଦାକୁ ସ୍ତମ୍ଭେ ବାନ୍ଧି ଆସୁ ଭୀମସେନ
ନିଶାର୍ଦ୍ଧେ ମିଳିଲେ ଆସି ଭୂତ ପ୍ରେତଗଣ ।
ବୋଇଲେ ମଧୁ ମାଂସ ତ ମିଳେ ଆଜ ରାତି
ବାଣ୍ଟି ନେଇଣ ଭୁଞ୍ଜିବା ହୋଇଣ ତୃପତି ।
ବାବନାଭୂତ ବୋଇଲା ଏ ଅଟେ ଘରଦା
ଶରୀର ଯାକ ହୋଇ ନର୍କମୟ ସଦା ।

ମୁଖ ଚୁହିଁଲେ ଏହାର ଅଛି ବହୁ ଦୋଷ
ଜ୍ଞନ ଥାଉଁ କେଉଁରୂପେ ଭକ୍ଷ ବା ସ୍ତ୍ରୀ ମାଂସ ।
ପ୍ରେତ ପିଶାଚ ହୋଇଲୁ ଗତ ପାପ କର୍ମେ
ସ୍ତ୍ରୀ ମାଂସ ଖାଇଲେ ନର୍କେ ଥିବୁ ଜନ୍ମେ ଜନ୍ମେ
ଏରୂପେ ପିଶାଚ ବଳ ତାକୁ ଗଲେ ଛାଡ଼ି
ପ୍ରବେଶ ହୁଅନ୍ତେ ଆସି ରାତ୍ର ନବଦଣ୍ଡ ।
ଭେଟିଲେ ଯୋଗିନୀମାନେ ସେ ଘରଦା ଦେଖି
ପୁଣିହିଁ ପ୍ରବେଶ ହେଲେ ଯୋଗିନୀ କାମାକ୍ଷୀ
ଚର୍ଚ୍ଚିକା ଚାମୁଣ୍ଡା ପୁଣି କଙ୍କାଳୀ ବେତାଳୀ
ରାକ୍ଷସୀ ପିଶାଚୀ ଯେନ ତହିଁ ହେଲେ ମେଳୀ
ରେ ରେ କାର ଶବଦରେ ବେଢ଼ିଲେ ମାତଙ୍ଗୀ
ବୋଲେ ଆଜ ତୃପ୍ତ ହେବା ମଧୁମାଂସ ଭୁଞ୍ଜି
ଦେଖିଣ ବୋଇଲେ ହେଷା ବେତାଳୀ ଅମ୍ବିକା
ଘରଦା ଅଟଇ ଏହୁ ନିଜ ନାରୀବକା ।
କେମନ୍ତେ ଭକ୍ଷିବା ଆମ୍ଭେ ସର୍ବେ ଏହା ମାଂସ
ଏହାର ମୁଖ ଚୁହିଁଲେ ଲାଗିବଟି ଦୋଷ ।
ଶୁଣି ଯୋଗିନୀମାନେ ଛାଡ଼ି ଚଳିଲେ ସକଳ
ଅଢ଼ାଇ ପ୍ରହରେ ମିଳେ ଅମ୍ବିକା ଶୃଗାଳ ।
ପ୍ରବେଶିଲେ ଶୁଭସ୍ତମ୍ଭ ଘରଦା ପାଶରେ
ତାହାର ଭାର୍ଯ୍ୟା ତାରାକ୍ଷୀ ଅଛଇ ସଙ୍ଗରେ ।
ଶୃଗାଳୀ ବୋଇଲା ନାଥ ଆସ ବେଗ ହୋଇ
ପୁରନ୍ଦର ଯୋଗ୍ୟ ମାଂସ ଭକ୍ଷିବାକ ଯାଇ ।
ଭାର୍ଯ୍ୟା ବଚନ ଶୁଣି ଅମ୍ବିକା ଶୃଗାଳ
ବାହୁଡ଼ି ପ୍ରବେଶ ହେଲା ଶୁଭସ୍ତମ୍ଭ ମୂଳ ।
ଶୃଗାଳ ବୋଇଲା ତୁ ଗୋ କହିଲୁ ନ ଜାଣି
ଏହାର ମାଂସ ଭକ୍ଷିଲେ ବଡ଼ଦୋଷ ପୁଣି ।
ପୁଣିହିଁ ବୋଇଲା ସଖି ଏ ଅଟେ ଘରଦା
ବଡ଼ ପାପୀ ଅଟଇ ଗୋ ଶୁଣ ତା ମର୍ଯ୍ୟାଦା ।
ଆପଣା ଭାର୍ଯ୍ୟାକୁ ନେଇ ପରକୁ ଦିଅଇ
ଆପେ ପୁଣି ଦୁଆରକୁ ଜଗି ବସିଥାଇ ।
ପରପୁର ପଣରେ ସେ ଖଟଇ ଭାର୍ଯ୍ୟାକୁ
ଦାସୀମାନେ ଯେଉଁପରି ଖଟନ୍ତି ରାଣୀକୁ ।
ଜୀବନ୍ତେ ଭାର୍ଯ୍ୟାକୁ ଏହୁ କରିଥାଏ ତେଜ୍ୟା
ତାର ମୁଖ ନ ଚୁହିଁବା ମନେ ହୁଏ ଲଜ୍ଜା ।
ଭାର୍ଯ୍ୟାକୁ ଭୃତ୍ୟପଣେ ଯେ ନର ଖଟଇ
କୁପୁରୁଷ ମଧ୍ୟରେ ସେ ଲେଖା ଯେ ହୁଅଇ ।

ପୁଣି ବୋଇଲା ମାଂସକୁ ଯେବେ କଲୁ ଇଚ୍ଛା
ଆଉ ଅଠର ଦିବସ କର ତୁ ଅପେକ୍ଷା ।
ଏଥିର ଚରିତ ସଖି ଶୁଣ ମୋର ତହୁଁ
ଖାଦ୍ୟ ପାଇବା ଏଠାରୁ ଆମ୍ଭେମାନେ ବହୁ ।
ତହିଁର କାରଣ ସଖି ଶୁଣ ତୁ ଏଥର
କୁରୁ ପାଣ୍ଡବ ଦୁହିଁଙ୍କ ହୋଇବ ସମର
ମାର୍ଗଶିର ଶୁକ୍ଳ ତ୍ରୟୋଦଶୀ ବୁଧବାର
ଦ୍ୱିଜା ନକ୍ଷତ୍ର ସମ୍ପୂର୍ଣ୍ଣ ଭୋଗ ସେ ଦିନର ।
ତୈତିଳ ନାମେ କରଣ ଶିବ ନାମେ ଯୋଗ
ବୃଷ୍ଟ ସଂକ୍ରାନ୍ତିର ପଚଶ ଦିନ ଭୋଗ ।
ସେ ଦିନ ସଖି ପ୍ରଥମ ସମର ହୋଇବ
ପୂର୍ବରେ ପାଣ୍ଡବେ ଥିବେ ପଶ୍ଚିମେ କୌରବ
ଶୃଗାଳୀ ବୋଇଲା ସ୍ୱାମୀ ସେ ସୋଦର ଯେନ
କାହିଁପାଇଁକି ସମର ହେବ ଅନ୍ୟୋଅନ୍ୟ ।
କିଏ କାହାର ହସ୍ତରେ ହୋଇବ ବିନାଶ
ତାହା ସଂକ୍ଷେପିଣ ସ୍ୱାମି କହ ମୋର ପାଶ ।
ଶୃଗାଳ ବୋଇଲା ତେବେ ଶୁଣରେ ବଲ୍ଲଭି
ତୋହର ଆଗରେ ମୁହିଁ ସଂକ୍ଷେପି କହିବି ।
ପ୍ରଥମରେ ଭୀଷ୍ମଦେବ ହେବେ ସେନାପତି
ମାରିବେ ପାଣ୍ଡବଙ୍କର ଦଶସସ୍ର ରଥୀ ।
ଦଶଦିନ ଯୁଦ୍ଧ ସେହୁ କରି ଏହିମତି
ଅନେକ ପାଣ୍ଡବ ସୈନ୍ୟ ମାରିବେ ବିକୋଟି
ଶିଖଣ୍ଡୀକି ସେନାପତି କଲେ ଦେବରାଜା
ଗଙ୍ଗା ନନ୍ଦନ କରିବେ ତହୁଁ ଶରଶଯ୍ୟା ।
ଭୀଷ୍ମଙ୍କର ଅନ୍ତେ ଭରଦ୍ୱାଜଙ୍କର ସୁତ
ପାଞ୍ଚଦିନ ବହୁ ସୈନ୍ୟ କରିବେ ସେ ହତ ।
ଜଳଧର ଚକ୍ରବ୍ୟୂହ କରିବେ କୁଣ୍ଡଳୀ
ଏମନ୍ତ ସେ ଭିଆଇବେ ଦ୍ରୋଣ ମହାବଳୀ
ପ୍ରଥମ ଦିନରେ ଦ୍ରୋଣ କରିବେ ସମର
ଚକ୍ରବ୍ୟୂହ ପାତିବେ ସେ ଅତି ଅଗୋଚର ।
ଭରଦ୍ୱାଜଙ୍କ ନନ୍ଦନ ଅତି କୋପଭରେ
ଜଗିବେ ସେ ଚକ୍ରବ୍ୟୂହ ପ୍ରଥମ ଦୁଆରେ ।
ଜଳଧର ବ୍ୟୂହ ମଧ୍ୟେ ଅଶୀପଦ୍ମ ମ୍ଲେଚ୍ଛ
ଏକ ଦିବସେ ଯୁଦ୍ଧରେ ମରିବେ [illegible] ।
ଚକ୍ରବ୍ୟୂହରେ ପଶିବ ଅର୍ଜ୍ଜୁନର ସୁତ
ଦଶ ସହସ୍ର ଯୋଦ୍ଧାଙ୍କୁ କରିବ ନିପାତ ।

ନିଜେ ବିନାଶ ହୋଇବ ସେ ସମରେ ଜାଣ
ଫେରି ଆସି ନ ପାରିବ ସେ ବ୍ୟୂହରୁ ପୁଣ ।
ଶକଟବ୍ୟୂହେ ପଡ଼ିବ ରାଜା ଜୟଦ୍ରଥ
ପାଞ୍ଚକ୍ଷୌଣୀ ସୈନ୍ୟ ତୁଲେ ଦଶସସ୍ର ରଥ ।
ସେହିଦିନ ରାତ୍ରେ ଯୁଦ୍ଧ ହେବ ଗୁରୁତର
ଦ୍ରୋଣ ଛେଦିବେ ଦ୍ରୁପଦ ନୃପତିଙ୍କ ଶିର ।
ସେ ରାତ୍ରେ ପଡ଼ିବ ଜାଣ ନୃପତି ବିରାଟ
ପାଞ୍ଚ ଅକ୍ଷୌହିଣୀ ସୈନ୍ୟ ଘେନି ନିଜ ଥାଟ ।
ଅଳମ୍ବୁଷକୁ ପାବକ କରିବ ନିପାତ
ସେ ରକ୍ତ ମାରେ କରିବ ବହୁ ସୈନ୍ୟ ହତ
ଅଞ୍ଜନ ପ୍ରଭ ବୋଲଣ ଏହି ବୀର ବେନି
କୃପବ୍ରହ୍ମା ସହିତରେ ପଡ଼ିବେ ଅବନୀ ।
ବୀରବାହୁ କାଳନେମି ଏ ଦୁଇ ଅସୁର
ରାତ୍ର ଯୁଦ୍ଧରେ ପଡ଼ିବେ କରିଣ ସମର ।
ଅଶ୍ୱତ୍ଥାମା ହସ୍ତୀ ରାତ୍ରକାଳରେ ପଡ଼ିବ
ନର ଅଶ୍ୱତ୍ଥାମା ହତ ଶବଦ ହୋଇବ ।
ଭୀମ ସେ ଅଶ୍ୱତ୍ଥାମାକୁ ଫିଙ୍ଗିଦେବ ଧରି
ଦ୍ରୋଣ ଅସ୍ତ୍ର ଛାଡ଼ିଦେବେ ପୁତ୍ର ଶୋକକରି ।
ପିତାଙ୍କର ଶତ୍ରୁ ବୋଲି ସେ ଧୃଷ୍ଟଦ୍ୟୁମ୍ନ
ଅତିକୋପେ ଦ୍ରୋଣ ଶିର କରିବ ଛେଦନ ।
ସାତ ପରାର୍ଦ୍ଧ ଯୋଦ୍ଧାଏ ପଡ଼ିବେ ପାଦାନ୍ତ
ସୁବଧ ହୋଇ ଶୁଣୁଛି ଶୃଗାଳଯୁବତୀ ।
ତା ଦେଖି ବିରସ ହେବ ଗାନ୍ଧାରୀର ବତ୍ସା
କର୍ଣ୍ଣ ବୋଲିବ ମଇତ ମୁଁ କରିବି ରକ୍ଷା ।
ପନ୍ଦର ଦିବସ ଅନ୍ତେ ତ୍ରୟୋଦଶୀ ତିଥି
ଶିରେ ମୁକୁଟ ବାନ୍ଧିବ କର୍ଣ୍ଣ ସେନାପତି ।
କର୍ଣ୍ଣର ପ୍ରଥମ ଦିନ ଭୀମ କୋପକରି
ଦୁର୍ଯ୍ୟୋଧନ ସତାଶୋଇ ଭ୍ରାତ ଦେବ ମାରି
ନବଲକ୍ଷ ଯୋଦ୍ଧା ନବଲକ୍ଷ ପାରିଦଣ୍ଡ
ଏତେ ସୈନ୍ୟ ମାରି ଭୀମ ହୋଇବ ପ୍ରଚଣ୍ଡ ।
ଦ୍ରୌପଦୀର ଅଭିମାନେ ବୀର ଭୀମସେନ
ଦୁଃଶା ବାହୁ ଉପାଡ଼ିବ ହୋଇ କୋପମନ ।
କେଶ ବନ୍ଧନ କରିବ ତହୁଁ ସେ ପାଞ୍ଚାଳୀ
କର୍ଣ୍ଣ ଯେ ପଡ଼ିବ ସେହିଦିନ ମଧ୍ୟଉଳି ।
ତିନିସସ୍ର ରାଜା ତିନି ସହସ୍ର ପଦାତି
ଛପନ କୋଟି ଯୋଦ୍ଧା ଯେ ଷୋଳକୋଟି ରଥୀ

ଶୃଗାଳୀ ଆଗେ ଶୃଗାଳ ଏହି ରୂପେ ବୋଲେ
ଏତେକ ଯୋଦ୍ଧା ପଡ଼ିବେ କର୍ଣ୍ଣଙ୍କର ତୁଲେ ।
ନବଲକ୍ଷ ରଥୀ ତୁଲେ ଶକୁନି ମରିବ
ତିଂଶ ଖର୍ବ ଯୋଦ୍ଧା ତୁଲେ ଶଲ୍ୟ ନାଶଯିବ ।
କନାଉଜ ଦେଶ ରାଜା ସେ ଦରଦସେନ
ତାହା ସଙ୍ଗରେ ପଡ଼ିବ ତିଂଶକ୍ଷୌଣୀ ସୈନ୍ୟ
ମୀନବାଣ ଭୁଜବାଣ ଅର୍ଜ୍ଜୁନର ଶର
ସେ ଦୁହେଁ ପ୍ରାଣ ଛେଦିବେ କୃପାଚାର୍ଯ୍ୟଙ୍କର ।
ଅର୍ଜ୍ଜୁନ ଆଞ୍ଜରେ ଶିର ପକାଇବେ ହାଣି
ବ୍ରାହ୍ମଣ ବୋଲି ବଞ୍ଚାଇ ଦେବେ ତାକୁ ପୁଣି ।
ତିନିଶ ବାସ୍ତରି କ୍ଷୌଣୀ ମାନଗୋବିନ୍ଦର
ଲକ୍ଷ୍ମଣ କୁମର ସହ ଯିବେ ଯମଘର ।
ଅଶୀଲକ୍ଷ ଯୋଦ୍ଧା ନବଲକ୍ଷ ଯେ ପଦାତି
ରକତ ନଦୀ ବହିବ ସାତତାଳ ପ୍ରତି ।
ସମର ଦିନାନ୍ତେ ହେବ ଗଦାପର୍ବ ଯୁଦ୍ଧ
ତହିଁରେ ସେ ଦୁର୍ଯ୍ୟୋଧନ ପ୍ରାଣେ ହେବ ବଧ
ଶୃଗାଳ ବୋଇଲା ଯେବେ ମହୁମାଂସେ ଇଚ୍ଛା
ଅଠର ଦିନର ମଧ୍ୟେ ପୂରାଇବ ବାଞ୍ଛା ।
କୋଟିକ୍ଷୌଣୀ ଘେନି ସେହି ପୁଷ୍କରାଉଷେତ
ଯେ ରାଜାଙ୍କ ଶିର ଏବେ ପଡ଼ିବ ଅନେକ ।
ଏ ବାକ୍ୟ ଶୃଗାଳୀ ଶୁଣି ବୋଲଇ ବଚନ
ସୈନ୍ୟ ମରିଲେ କସ ହେବ ଦୁର୍ଯ୍ୟୋଧନ
ଶୃଗାଳ ବୋଇଲା ତାହା ଶୁଣ ଆଗୋ ପ୍ରିୟା
ସକଳେ ପଡ଼ିବେ କେହି ନ ଥିବେଟି ସାହା ।
ବିଦର୍ଭ ଦେଶର ଶିବପାଳ ନରପତି
ତାହାର ଅଛି ସୁହସ୍ତା ନାମେ ଏକ ହସ୍ତୀ ।
ସଂଗ୍ରାମକାଳେ ସେ ହସ୍ତୀ ଘଣ୍ଟ ଯିବ ଛାଡ଼ି
ତାହାତଳେ ଦୁର୍ଯ୍ୟୋଧନ ରହିଥିବ ବୁଡ଼ି ।
ତହିଁ ଉପରେ ପଡ଼ିବ ଗଜ ଯେ ପଦାତି
ରକ୍ତନଦୀ ସାତତାଳ ବହିଯିବ ତଥି ।
ରଣଜୟ କରି ଯହୁଁ ଚଳିବେ ପାଣ୍ଡବ
ଦୁର୍ଯ୍ୟୋଧନ ସେଠାରୁ ବାହାର ହୋଇବ ।
ଲକ୍ଷ୍ମଣ କୁମର ପରେ ଯାଇଣ ପଡ଼ିବ
ସାତତାଳ ରକ୍ତନଦୀ ପାର ହୋଇଯିବ ।
ଭୀଷ୍ମଙ୍କୁ ପୁଚ୍ଛି ପଶିବ ବ୍ୟାସ ସରୋବରେ
ସମସ୍ତ ମରଇ ନୃପ ଶୋଇବେ ସେଠାରେ ।

ରଣ ଜିଣି ପାଣ୍ଡବେ ଯେ ମିଳନ୍ତେ ଜଇନ୍ତା
ଅର୍ଘ୍ୟ ଘେନି ପଶ୍ଚିବେ ସେକାଳେ କୋଇନ୍ତା
କିଏ ସେ ମାଇଲା କହ ସେ ଦୁର୍ଯ୍ୟୋଧନକୁ
ଯେ ମାଇଲା ଅର୍ଘ୍ୟ ଦେବି ନେଇଣ ତାହାକୁ ।
ଏକଲୁ ଆରେକ ତହିଁ ହେବେ ଗୃହାଁଗୃହିଁ
ଦୁର୍ଯ୍ୟୋଧନ ମରିବାର ନ ବୋଲିବେ କେହି
ଅନେକ ଝିଙ୍ଗାସ ଦେବେ ଘେଜର ଦୁଲଳୀ
ପାଣ୍ଡବେ ଖୋଜିବା ପାଇଁ ତହୁଁ ଯିବେ ଚଳି ।
ଭୀମ ପ୍ରତିଜ୍ଞା କରିବ ଏମନ୍ତ ପ୍ରକାର
ଦୁର୍ଯ୍ୟୋଧନ ନ ମାଇଲେ ନୋହିବ ଆହାର ।
କାଲି ବେଳ ଅସ୍ତଯାଏ ନ ପାଇଲେ ମାରି
ଏ ଦେହ ଭସ୍ମ କରିବ ଅଗ୍ନି ଜାଳିକରି ।
ଯମର ଭୂମିକୁ ଯାଇ ମଡ଼ା ଲେଉଟାଇ
ଖୋଜି ଖୋଜି ନ ପାଇବେ କଉରବ ସାଇଁ ।
ତହୁଁ ଚଳିଯିବେ ସର୍ବେ ଭୀଷ୍ମଦେବ ପାଶ
ତାଙ୍କୁ ପୁଚ୍ଛନ୍ତେ ସେ ଯହୁଁ ନ ଦେବେ ସନ୍ଦେଶ
ସହଦେବ କହିଦେବ ଭବିଷ୍ୟତ ବାଣୀ
ବ୍ୟାସସରେ ଲୁଚିଅଛି କୌରବ ନୃମଣି ।
ଭୀମ ସିଂହରଡ଼ ଯହୁଁ ଦେବ ତିନିଥର
କମଳାଙ୍କୁ ଠେଲିଦେଇ ହୋଇବ ବାହାର ।
ଭୀମ ଦୁର୍ଯ୍ୟୋଧନର ଯେ ହେବ ଗଦାରଣ
ଜାନୁ ଭଙ୍ଗନ୍ତେ ପଡ଼ିବ କୁରୁ ନୃପରାଣ ।
ଅନର୍ଘମଣି ମୁକୁଟ ମର୍ଦ୍ଦିଦେବ ଭୀମ
ମୁଣ୍ଡ ମୋଡ଼ନ୍ତେ ରଖିବେ ତାକୁ ଦେବଧର୍ମ ।
ରଣ ଜୟକରି ପୁଣି ଚଳିବେ ଜଇନ୍ତା
ଭୀମକୁ ଅର୍ଘ୍ୟ ତହୁଁ ସେ ଅର୍ପିବେ କୋଇନ୍ତା
ଗୋବିନ୍ଦ ବୋଲିବେ ତହୁଁ ପାଣ୍ଡବଙ୍କୁ ଗୃହିଁ
ଜୟକଲ ସ୍ଥାନେ ଦଣ୍ଡେ ରହି ନ ଯୋଗାଇ ।
ଧର୍ମପ୍ରାପ୍ତ ଜୟପ୍ରାପ୍ତ ହୁଏ ଯେ ଭୂମିରେ
ଦଣ୍ଡେ ରହି ନ ଯୋଗାଇ ଅଛଇ ଶାସ୍ତ୍ରରେ ।
ପାଞ୍ଚାଳୀ ପଞ୍ଚକୁମର ଶୁଆଇଣ ଶଯ୍ୟା
ପାଣ୍ଡବଙ୍କୁ ନେବେ ହରି ସ୍ଥାନକରି ତେଜ୍ୟା ।
ମାନଗୋବିନ୍ଦର ଜାନୁଭଗ୍ନ କଥା ଶୁଣି
ସେ ସ୍ଥାନେ ପ୍ରବେଶ ହେବେ ଯାଇ କୃପଦ୍ରୋଣି
ଆପଣେ ଆପଣେ ତହିଁ ହୋଇ ସେନାପତି
ଜଇନ୍ତାରେ ପ୍ରବେଶିବେ ଅମାବାସ୍ୟା ରାତି ।

ପ୍ରଥମ ଦ୍ୱାରେ ଭେଟିବେ ଭୈରବ ମୂରତି
ଦ୍ୱିତୀୟ ଦ୍ୱାରରେ ଦୁଇକ୍ଷଉଣୀ ପଦାତି ।
ତୃତୀୟ ଦ୍ୱାରରେ ଥିବେ ଯେ ଧୃଷ୍ଟଦ୍ୟୁମନ
ଚତୁର୍ଥରେ ଶୋଇଥିବେ ଦ୍ରୌପଦୀ ନନ୍ଦନ ।
ହିକାଳେ ଅଶ୍ୱତ୍ଥାମା ପଶିବ ଧସାଇ
ଅନ୍ଧକାରରେ ପଶିବ କାହାକୁ ନ କହି ।
ବେନି ଅକ୍ଷୌହିଣୀ ବଳ ପକାଇବ ହାଣି
ପିତା ଶତ୍ରୁ ଶିରଚ୍ଛେଦ କରିବ ସେ ପୁଣି ।
ପାଞ୍ଚାଳୀ ପଞ୍ଚକୁମର ମଣିଣ ପାଣ୍ଡବ
ସେ ବାଳକ ପଞ୍ଚମୁଣ୍ଡ ହାଣି ପକାଇବ ।
ସେ ମୁଣ୍ଡ ଧନୁରେ ଭାରକରି ଅଶ୍ୱତ୍ଥାମା
ଦୁର୍ଯ୍ୟୋଧନ ସମ୍ମୁଖରେ ଥୋଇବ ମହାତ୍ମା
ମୁଣ୍ଡ ଦେଖି ସାଧୁ ସାଧୁ ବୋଲିବ ବଚନ
ବହୁତ ଆନନ୍ଦ ହେବ ରାଜା ଦୁର୍ଯ୍ୟୋଧନ ।
ରଜନୀ ପାହାନ୍ତି ହେତୁ ଚିହ୍ନି ନ ପାରିବ
ପ୍ରଭାତେ ପାଞ୍ଚାଳସୁତ ମୁଣ୍ଡକୁ ଦେଖିବ ।
ବିସ୍ମୟ ହୋଇଣ ତହୁଁ ସେ ମାନଗୋବିନ୍ଦ
ଭୋ ଦେବ ବୋଲି ପିଟିବ ଶିରେ କର ଦ୍ୱନ୍ଦ୍ୱ ।
ପାଞ୍ଚାଳୀ କୁମରଙ୍କର ଗୃହିଁଣ ବଦନ
ମାନଗୋବିନ୍ଦ କରିବ ଆତ୍ମା ବିସର୍ଜ୍ଜନ ।
ସତାଶୋଇ ସହସ୍ର ରାଜା ଦୁର୍ଯ୍ୟୋଧନକତି
ଧର୍ମଙ୍କର ଗୃରଉଣା ହିସହସ୍ର ନୃପତି ।
ତିନିଶ ବାସ୍ତରକ୍ଷୌଣୀ ସଇନ କୌରବେ
ବାସ୍ତର କ୍ଷଉଣୀ ମାତ୍ର ପାଣ୍ଡବଙ୍କ ସର୍ବେ ।
ଅଷ୍ଟାଦଶ ଦିନେ ହେବେ ଏତେକ ବିନାଶ
ତେରଜଣ ରହିବେ ସେ ଯୁଦ୍ଧେ ଅବଶେଷ ।
ସଖି ଶୁଣ ଯେଉଁମାନେ ବଞ୍ଚିଣ ରହିବେ
ପଞ୍ଚପାଣ୍ଡବ ଆବର ଜାଣ ବାସୁଦେବେ ।
ସାତ୍ୟକ ଧୃତରାଷ୍ଟ୍ରହିଁ ଆବର ବିଦୁର
ଦୁର୍ଦ୍ଧକ୍ଷ ସଞ୍ଜୟ କୃପ ଦ୍ରୋଣର କୁମର ।
ଏ ମହାଭାରତର ଯେ ଭବିଷ୍ୟତ ବାକ୍ୟ
ଏଥିର କୌଣସି କଥା ନୋହିବ ପାର୍ଥକ୍ୟ ।
ଶୃଗାଳ ଶୃଗାଳୀ ପାଶେ କହନ୍ତି ଏ କଥା
ଭାରଦା ଶୁଣିଲା ପଡ଼ି ସକଳ ବାରତା ।
ଏଥୁ ଅନନ୍ତରେ ହେଲା ରଜନୀର ଶେଷ
ଶୃଗାଳ ଶୃଗାଳୀ ଗଲେ ଆପଣାର ବାସ ।

ସହଦେବ ବୋଲେ ଭୀମସେନ ଠାକୁରଙ୍କୁ
ବେଗେ ଦେଖିଆସ ଦେବ ଯାଇ ଶାରଦାକୁ ।
ଭୀମସେନ ବୋଇଲକ ମହାଶମଶାନେ
ଥାଉ କି ଶାରଦା ଥିବ ତାହାର ଜୀବନେ ।
ମନ୍ତ୍ରୀ ବୋଲେ ମରନାହିଁ ଶୁଣ ହେ ଗୋସାଇଁ
ପାଇବ କାରଣ ସେହୁ ଦେଖିଆସ ଯାଇ ।
ଚଳିଲ ମାରୁତି ତହୁଁ ସମର ମଣ୍ଡଳେ
ଶାରଦା ପଡ଼ିଛୁ ଲେଖି ହୋଇ ଶୀତକାଳେ ।
ଭୀମସେନ ଗୃହିଁଲକ ଧୀର ଧୀର ହୋଇ
ବୋଲଇ ଆରେ ଶାରଦା ଅଛୁଟିକି ଜୀଇଁ ।
ବଦନ ଫେରେଣି ଗୃହେଁ ଯାଇଣ ପାଶକୁ
ବନ୍ଧନ ଫେଡ଼ିଣ ଭୀମ ଆଣିଲ ତାହାକୁ ।
ଆସ୍ଥାନରେ ବସିଛନ୍ତି ଦେବ ଧର୍ମରାୟ
ଶ୍ରୀକୃଷ୍ଣ ବଇଠ ଛନ୍ତି ପୁଣି ଧନଞ୍ଜୟ ।
ମନ୍ତ୍ରୀ ବୋଲଇ ଅନ୍ତରପାଟ ପଡ଼ୁ ଦେବ
ଶୁଣିଣ ସକଳ କଥା ଶାରଦା କହିବ ।
ଅନ୍ତରପାଟ ଭିତରେ ଶାରଦାକୁ ଭରି
କି ଦେଖିଲୁ କହ ସହଦେବ ଯେ ପଚ୍ଚାରି ।
ଶାରଦା ବୋଇଲା ଦେବ ନିଶି ଅର୍ଦ୍ଧ ଯୋଗେ
ପ୍ରେତ ପିଶାଚୀ ମିଳିଲେ ଆସି ମୋର ଆଗେ
ମନୁଷ୍ୟମାଂସ ବୋଲି ସେହୁ ବେଢ଼ିଲେକ ଆସି
ବାବନାଭୂତ ବୋଇଲା ଏ ଶାରଦା ଦୋଷୀ
ଏମନ୍ତ ବୋଲି ସେମାନେ ସର୍ବ କଲେ ତେଜ୍ୟା
ଯୋଗିନୀଏ ବେଢ଼ିଲେ ପୁଣି ଆସି ଦେବରାଜା
ମନୁଷ୍ୟମାଂସ ବୋଲି ମୋତେ ବେଢ଼ିଲେସେଆସି
ଶାରଦା ବୋଲିଣ ମୋତେ ଛାଡ଼ିଲେ ନରସି ।
ଅଢ଼ାଇ ପ୍ରହର ଦେବ ହୋଇଅଛି ନିଶି
ଶୃଗାଳ ଶୃଗାଳୀ ଦେନି ପ୍ରବେଶିଲେ ଆସି ।
ଶୃଗାଳୀ ବୋଲେ ଭକ୍ଷିବା ମନୁଷ୍ୟମାଂସ ଆସ
ଆଜ ହୋଇଲା ହେ ସ୍ୱାମି ସୁଫଳ ଦିବସ ।
ଜମ୍ବୁକ ବୋଇଲା ସଖି ଏ ଶାରଦା ଜାତି
ସ୍ତ୍ରୀ ମାଂସ ଭକ୍ଷିଲେ ଯମ ନର୍କେ ଦେବ ଶାସ୍ତି
ମନୁଷ୍ୟମାଂସକୁ ଶରଧା ଯେବେ ରେ ସଙ୍ଗିନି
ରହିଥାଅ ତୁ ଅଠର ଦିବସ ରଜନୀ ।
କୌରବ ପାଣ୍ଡବ ଯୁଦ୍ଧ ହେବ ଏ ଠାବରେ
ଅନେକ ସୈନ୍ୟ ପଡ଼ିବେ ଉଭୟ କୁଳରେ ।

ଗୃହଉଣୀ ଲକ୍ଷେରାଜା ମରିବେ ଏ ଭୂଇଁ
ସାତତାଳ ବହିଯିବ ରକତର ନଈ ।
କୋଟିତୀର୍ଥ ଜଳେ ଯେଉଁ ରାଜା ଅଭିଷେକୀ
ସେହିମାନଙ୍କର ମାଂସ ଭକ୍ଷ ତୁ ଗୋ ସଖି ।
ଶୃଗାଳୀ ବୋଇଲା ନାଥ ଯୁଦ୍ଧ ଯେବେ ହେବ
କଏ ବା ଜିଣିବ ଯୁଦ୍ଧେ କଏ ସେ ହାରିବ ।
ଶୃଗାଳୀ ବଚନ ଶୁଣି ଶୃଗାଳ ବୋଲଇ
ତାହା ମୁଁ କହୁଛି ଏବେ ଶୁଣ ମନଦେଇ ।
ଭୀଷ୍ମ ଶରଶଯ୍ୟା ଯିବେ ଶିଖଣ୍ଡୀ ସମରେ
ଦ୍ରୋଣ ନାଶଯିବେ ଧୃଷ୍ଟଦ୍ୟୁମ୍ନର ହସ୍ତରେ ।
ଦଶସହସ୍ର ରାଜା ମାରି ଅଭିମନ୍ୟୁ ବୀର
ସେହି ବ୍ୟୂହମଧ୍ୟେ ପୁଣି ହୋଇବ ସଂହାର ।
ସକଳ ବ୍ୟୂହ ଛେଦିବ ପାଣ୍ଡବ ଅର୍ଜୁନ
ସନ୍ଧ୍ୟାକାଳେ ଜୟଦ୍ରଥ ହୋଇବ ନିଧନ ।
ଘଟୋତ୍କଚ ନାଶଯିବ ପଡ଼ି ବଜ୍ରଶର
ଅଳମ୍ବୁଷକୁ ନାଶିବ ଅଳାୟୁଧ ବୀର ।
ଦ୍ରୋଣ ଅନ୍ତେ ସେନାପତି ହେବ ବୀର କର୍ଣ୍ଣ
ସତାଶୋଇ ଭଇ ଭୀମ ମାରିବ ସେ ଦିନ ।
ଆରକ ଦିନ ପଡ଼ିବ ବୀର ଦୁଃଶାସନ
ଅର୍ଜୁନ ଶରେ ମରିବ ସେନାପତି କର୍ଣ୍ଣ ।
କର୍ଣ୍ଣର ଅନ୍ତେଣ ହେବ ଗଦାପର୍ବ ଯୁଦ୍ଧ
ଯୁଧିଷ୍ଠିର ହସ୍ତରେ ଶଲ୍ୟ ହେବେ ପ୍ରାଣେ ବଧ ।
ସହଦେବ ହସ୍ତେ ନାଶ ହୋଇବ ଶକୁନି
ନକୁଳହସ୍ତେ ଲକ୍ଷ୍ମଣ ହେବ ପ୍ରାଣେ ହାନି ।
ଯୁଧିଷ୍ଠିରଙ୍କ ଅଦର୍ଶନେ ସମସ୍ତ କହିଲି
ଗଦାପର୍ବରେ ସକଳେ ମରିବେ ବୋଇଲି ।
ସମସ୍ତେ ମରିବେ ଥିବ ମାନଚକ୍ରବର୍ତ୍ତୀ
ରକ୍ତନଦୀ ସାତତାଳ ବହିବସେ ରାତି ।
ଲକ୍ଷ୍ମଣ ପିଠି ଉପରେ ଭରଦେଇକରି
ଦୁର୍ଯ୍ୟୋଧନ ସେ ନଦୀକୁ ହୋଇଯିବ ପାରି ।
ଯାଇଣ ପଶିବ ସେହି ବ୍ୟାସ ସରୋବରରେ
ବାହାର ହୋଇବ ପୁଣି ଭୀମଙ୍କ ରଡ଼ରେ ।
ଗଦା ସମର ହୋଇବ ଭୀମ ଦୁର୍ଯ୍ୟୋଧନେ
ସମସ୍ତେ ମଲ୍ଲ ଭଙ୍ଗରେ ହୋଇବ ଏସନେ ।
ଭୀମହସ୍ତେ ଦୁର୍ଯ୍ୟୋଧନେ ଜାନୁଭଗ୍ନହେବ
ଦ୍ରୋଣି ଏ କଥାକୁ ଯହିଁ କର୍ଣ୍ଣରେ ଶୁଣିବ ।

ସେହିଦିନ ଅଶ୍ୱତ୍ଥାମା ହେବ ସେନାପତି
ଦୁଇକ୍ଷୌଣୀ ବଳନାଶ କରିବ ସେ ରାତି ।
ପିତାଶତ୍ରୁ ଧୃଷ୍ଟଦ୍ୟୁମ୍ନ କରିବ ଛେଦନ
ମୁଣ୍ଡ ଛେଦିଣ ପାଞ୍ଚାଳୀ ପାଞ୍ଚୋଟି ନନ୍ଦନ ।
ସାରଦା ବୋଇଲା ଶୁଣ ମନ କରି ତୁଷ୍ଟି
ମାନଗୋବିନ୍ଦ ହାରିବେ ଜିଣିବେ ଯୁଧିଷ୍ଠି ।
ଉଭୟ କୁଳର ଥାଟ ସକଳ ମରିବେ
ତେରଜଣ ମାତ୍ର ତହୁଁ ଉବୁରି ରହିବେ ।
ଶୃଗାଳ କହିବା କଥା କହୁଅଛୁ ଏବେ
ପଞ୍ଚପାଣ୍ଡବ, ଆଦର ଜାଣ ବାସୁଦେବେ ।
ସାତ୍ୟକି ଧୃତରାଷ୍ଟ୍ରହିଁ ଆବର ବିଦୁର
ଦୁର୍ଦ୍ଧର୍ଷ ସଞ୍ଜୟ କୃପ ଦ୍ରୋଣର କୁମର ।
ସାରଦା କହିଲେ ସର୍ବ ଶୁଣିଲେ ଯୁଧିଷ୍ଠି
ତପୁରେ, ସେ ସାରଦାର ମୂର୍ଚ୍ଛା ଗଲା ଫାଟି ।
ପ୍ରାଣ ବିସର୍ଜନ କଲା ଯୁଧିଷ୍ଠିଙ୍କ ଆଗେ
ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ ବସିଲା ସେ ସ୍ୱର୍ଗେ ।
ପୁଷ୍ପକଯାନେ ବସାଇ ନେଲେ ଦେବଗଣ
ପାଟର ଛତ୍ର ଉଡ଼ାଇ ଅସଂଖ୍ୟ ପ୍ରମାଣ ।
ଅନେକ ଚାମର ପଡ଼େ ତାର ଚଉକତି
ବିମାନ ଉଡ଼ଇ ଶୂନ୍ୟେ ପବନର ଗତି ।
ବହୁ ବିନୟେ ତାକୁ ଘେନିଲେ ଦେବଗଣେ
ବାସବ ଦେବତା ଦେଖି ବିନୟେ ଆପଣେ ।
ଅମର ଆସନେ ତାକୁ ବସାଇଣ ସ୍କନ୍ଦ
ବହୁମତେ ପୂଜାକଲେ ହୋଇଣ ଆନନ୍ଦ ।
ଚଉଷଠି କୋଟି ଆସି ଦେବବିଳାସିନୀ
ତାଣ୍ଡବ ନୃତ୍ୟେ ଗାଇଲେ ସ୍ୱର ଯେ ରାଗିଣୀ ।
ସୁସ୍ୱରରେ ବଜାଇଲେ କରେ ଧରି ବୀଣା
ନୃତ୍ୟ ପରୀକ୍ଷା ନାରଦ ବ୍ରହ୍ମାଙ୍କ ତୁଳଣା ।
ବିଳାସିନୀମାନେ କରେ ଘେନି ଅର୍ଘ୍ୟଥାଳି
ବନ୍ଦାନ୍ତେ ସେ କୁମରକୁ ଦେଲେ ହୁଳହୁଳି ।
ଅନେକ ଅଳଙ୍କାରାଦି ଅଛଇ ଅଙ୍ଗରେ
ବିଜୟ କରିଲେ ସ୍କନ୍ଦ ଆପଣା ମନ୍ଦିରେ ।
ଅମର ସ୍ୱର୍ଗରେ କଲେ ବହୁତ ଉତ୍ସବ
ଅନେକ ଆନନ୍ଦ ହେଲେ ସ୍ୱର୍ଗେ ଦେବ ସର୍ବ
ସାରଦା ପିଣ୍ଡ ପାଣ୍ଡବେ କରାନ୍ତେ ଦହନ
[illegible]

ନମସ୍ତେ ଅନାଦିନାଥ ପ୍ରଭୁ ପରାତ୍ପର
ନମସ୍ତେ ଅନନ୍ତ କୋଟି ବ୍ରହ୍ମାଣ୍ଡ ଠାକୁର ।
କେ ବର୍ଣ୍ଣି ପାରିବ ତୁମ୍ଭ ମହିମା ଅନନ୍ତ
କୃପାରେ ଶାରଳା ଦାସ ଲେଖଇ ଭାରତ ।

---

## ସାରଦାର ପୂର୍ବଜନ୍ମ ବିବରଣ

ଏହା ଶୁଣି ପୁଚ୍ଛାକଲେ ବଳଙ୍କାଧିପତି
ବଡ଼ ସନ୍ଦେହର କଥା କହିଲ ଅଗସ୍ତି ।
ସାରଦା ବୋଲି କହିଲ ସେହୁ ଜାମ୍ବୁବକେ
ତା ପାଇଁ ଏଡ଼େ ଆନନ୍ଦ କପାଁ ଦେବଲୋକେ
ଅନେକ ଦୂଷଣ ତାକୁ ହେଲା ମର୍ତ୍ତ୍ୟପୁରେ
ସ୍ୱର୍ଗେ ଉତ୍ସବ କପାଇଁ ପୁରନ୍ଦର କରେ ।
ଶୃଗାଳ ଖାଇଲା ନାହିଁ ପାପୀମାଂସ ବୋଲି
ଏବେ ମୁଁ ତା କଥା ଶୁଣି ଆଶ୍ଚର୍ଯ୍ୟ ହୋଇଲି
ଶୃଗାଳ ହୋଇ ହୋଇଲା ଭବିଷ୍ୟତଜ୍ଞାତା
ସେହୁ କେମନ୍ତେ ଜାଣିଣ ପୂର୍ବଜନ୍ମ କଥା ।
ବଦନ୍ତି ଅଗସ୍ତି ମୁନି ଶୁଣ ମନୁ ଏବେ
ସେ ଶୃଗାଳ ଥିଲା ସେହି ବିଦ୍ୟାଧର ପୂର୍ବେ ।
ବୈଶ୍ୱାନର ବୋଲିକରି ଏକ ସତ୍ୟଯୁଗେ
ଜମ୍ଭଦୈତ୍ୟ ମାରି ଜମ୍ଭଭେଦୀ ଇନ୍ଦ୍ର ସ୍ୱର୍ଗେ ।
ବାସବର ପୁତ୍ର ଜୟସେନ ବିଦ୍ୟାଧର
ଶକୁନ୍ତଳା ପୁତ୍ରନାମେ ମୋହେ ସ୍ୱର୍ଗପୁର ।
ନୃତ୍ୟ ଗୀତରେ କୁମର ବଡ଼ାଇ ଆରମ୍ଭ
ଦିଶଇନ୍ଦ୍ର ପ୍ରାୟ ଦିଶେ ମୋହେ ସର୍ବଦେବ ।
ବୈଶାଖ ଶୁକଳପକ୍ଷ ଦ୍ୱିତୀୟାର ତିଥି
ମୃଗଶିରା ନକ୍ଷତ୍ରକୁ ବାର ବୃହସ୍ପତି ।
ବାଳବ ନାମେ କରଣ ସୁକର୍ମା ଯେ ଯୋଗ
କୁବେର ବିଜୟ କଲେ ଅମରଙ୍କ ସ୍ୱର୍ଗ ।
ନାରଦ କହିଲେ ଯାଇ ବାସବ ଦେବଙ୍କୁ
କୁବେର ବିଜୟ କଲେ ଅମରାବତୀକୁ ।
ଇନ୍ଦ୍ର ଆଜ୍ଞାଦେଲେ ଜୟସେନ ଗନ୍ଧର୍ବଙ୍କୁ
ଅପସରା ଘେନି ଚଳ କୁବେର ସ୍ଥାମୁକୁ ।
ପିତୃ ଆଜ୍ଞା ପାଳନାରେ ହୋଇ ତତପର
ନୃତ୍ୟ କରାଇଲା ଯାଇ କୁବେର ସ୍ଥାମୁର ।
ତାଣ୍ଡବନୃତ୍ୟ ସେମାନେ ଯାଇ ଆରମ୍ଭିଲେ
ବିବିଧ ନୃତ୍ୟରେ ସର୍ବେ ମୋହିତ କରିଲେ ।

ମେନା କନ୍ୟା ମଦନକା ନାମେ ଏକବାଳୀ
ପ୍ରଥମ ରଜୋବନ୍ତୀ ସେ ଘେନ ଅର୍ଦ୍ଧ୍ୟଥାଳ ।
ଶୁଦ୍ଧସ୍ନାନ କରି ସେହୁ ଆସିଲା ଅଙ୍ଗନା
କୁବେରଙ୍କ ଆଗେ ଯାଇଁ କଲା ବନ୍ଦାପନା ।
ଦେଖିଣ ଭଜିଲେ ତାକୁ ଅଳକାର ନାଥ
ଅମୂଲ୍ୟ ରତନ ଦାନେ ହରିଲେ ତା ଚିତ୍ତ ।
ଜୟସେନେ ଆଜ୍ଞାଦେଲେ ଦେବ ଯକ୍ଷରାଜ
ମଦନକା ଘେନିଯିବ ମୋ ଗୃହକୁ ଆଜ ।
ତମିରନାଶନ ମଣି ଦେଲେ ସେ ବଧାଇ
ଚଳିଲେ ଅଳକାନାଥ ଆନନ୍ଦିତ ହୋଇ ।
ଦିନମଣି ଅସ୍ତଗଲେ ପ୍ରବେଶ ରଜନୀ
ଚଳଇ ସେ ଜୟସେନ ମଦନକା ଘେନି ।
ପୁଷ୍ପକରଥେ ଆରୋହି ଚଳେ ବଣିକାଳେ
ବିଦ୍ୟାଧର ମୋହେ ତାକୁ ଶୃଙ୍ଗ ବାକ୍ୟ ଛଳେ
ସୁନ୍ଦରୀ ବାଳକା ସେହୁ ଭଜିଲା ନିର୍ଭରେ
ନନ୍ଦନବନେ ଭେଟିଲେ ସ୍ୱର୍ଗ ଗଙ୍ଗାତୀରେ ।
କନକଗିରି ନଦୀଧା ନାମେ ବଟତଳେ
ପୁଷ୍ପକଯାନୁ ଉତୁରି କୌତୁକେ କ୍ରୀଡ଼ିଲେ ।
ପୁଣି ବେଶ ଭୂଷଣରେ ହୋଇ ବିଭୂଷିତ
ଅଳକାପୁରରେ ଯାଇ ହେଲେ ଉପସ୍ଥିତ ।
ଅନେକ ଭୂଷଣ ହୋଇ ଅଳକାଧିକାରୀ
ଏକଲପ୍ପେ ବସିଅଛୁ ପଥ ଅନୁସରି ।
ପହରକ ଅନ୍ତେ ପାହନ୍ତି ଯେ ରଜନୀ
ଜୟସେନ ପ୍ରବେଶିଲେ ଅପସରୀ ଘେନି ।
ମଳିନ ମୁଖ ଦେଖିଣ ଅଳକାର ପତି
କୋପ ହୋଇଣ ବୋଲନ୍ତି ଶୁଣ ଲୋ ଯୁବତୀ
କେଉଣ ପୁରୁଷେ ତୁହି ବଳାଇଲୁ ମନ
ତେଣୁକରି ତୋର ମୁଖ ଦିଶଇ ମଳିନ ।
ଏ କଥା ଯଥାର୍ଥ କରି କହ ତୁ ସ୍ୱରୂପ
ନ କହିଲେ ନାଶ ଯିବୁ ଦେବି ତୋତେ ଶାପ
ନବବାଳକା ତାହାର କୂଟବୁଦ୍ଧି ନାହିଁ
ସମସ୍ତ କହିଲା ସେହୁ ଯାହା ଥିଲା ହୋଇ ।
ସ୍ୱର୍ଗ ପୁରର ନାୟକ ବାସବର ସୁତ
ତାର ବାକ୍ୟ ଲଙ୍ଘିବାକୁ ମୁଁ କି ଉପଯୁକ୍ତ ।
ମଦନକା ଅପସରୀ ମୁଖୁଁ ଏହା ଶୁଣି
କୋପରେ କମ୍ପିତ ହେଲେ ରତ୍ନାବଳୀ ମଣି ।

ହସ୍ତରେ ଖଡ଼ଗ ଧରି ହୋଇ ଅତି କୋପ
ଜୟସେନଙ୍କୁ ଅନାଇ କହିଲେ ସେ ଦର୍ପ ।
ଆରେ ଗନ୍ଧର୍ବ ଇନ୍ଦ୍ରର ଅଟ ମୂର୍ଦ୍ଧି ଗୁରୁ
କେଉଣ ଦର୍ପରେ ତୁହି ମୋ ରମଣୀ ହରୁ ।
ମୋହର ଭାର୍ଯ୍ୟା ତୋହର ଅଟେ ଗୁରୁପତ୍ନୀ
ତାକୁ ନେବାକୁ ଭଜନ ନୁହେଁ ସପ୍ତଯୋନି ।
ସୁକୃତରେ ମାହେଶ୍ୱରୀ ଭାର୍ଯ୍ୟା ଅଟେ ସେହୁ
କୋପ ତେଜ ନ ପାରିଲେ ଏହା କହୁଁ କହୁଁ
ଆରେ ତୁ ହରିଲୁ ଯେବେ ମୋହର ସଙ୍ଗିନୀ
ପୃଥିବୀରେ ଜାତ ହୁଅ ନରଦେହ ଘେନି ।
ମଦନକା ଅପସରୀ ହେବ ତୋ ପ୍ରମଦା
ମଧ୍ୟସ୍ୱର୍ଗେ ନାମ ତୋର ହୋଇବ ଝରଦା ।
ଦୁରପଦ ଶାପ ଦିଅନ୍ତେ ଅଳକାଧିକାରୀ
ବିନୟେ ଶୁଭିଲେ ତାଙ୍କ ପାଦେ ଯାଇକରି ।
ଜୟସେନ ତାଳ ଧରେ ନାରୀ କରେ ନୃତ୍ୟ
ଅଳକାରନାଥ ହେଲେ ଚିତ୍ତେ ଆନନ୍ଦିତ ।
କୁବେର ବୋଇଲେ ଆମ୍ଭେ ହୋଇଲୁ ସନ୍ତୋଷ
ବରମାଗ ଜୟସେନ ଯାହା ଅଭିଳାଷ ।
ମାଗ ଆଲୋ ବିଦ୍ୟାଧରି ଯାହା ଇଚ୍ଛାବର
ରାଗ ଶାନ୍ତ ହେଲା ମୋର ନୃତ୍ୟ ଦେଖି ତୋର
ହରଷ ଭାବରେ ପୁଣି କହିଲେ କୁବେର
ମାନବଜନ୍ମରେ ଥିବ ବୈତରଣୀ ତୀର ।
ଦେବପୁର ଅଛି ତହିଁ ଏକଇ ନଗର
ସେହି ସ୍ଥାନରେ ଆଶ୍ରମ ହୋଇବ ତୁମ୍ଭର ।
ଏହି ମଦନକା ହେବ ତୋହର ଘରଣୀ
ବିଷ୍ଟ ପୁରୁଷରେ ସଦା ରତ ଥିବ ପୁଣି ।
ତୋହର ଦେଖନ୍ତେ ସେହୁ ବିଷ୍ଟପୀ ହୋଇବ
ତାର ମନେ ଭୟ ଭ୍ରାନ୍ତି କିଛିହିଁ ନ ଥିବ ।
ତୁ ମୋହର ଶିଷ୍ୟପୁତ୍ର ମୁଁ ତୋହର ଗୁରୁ
ତୁ ଯେମନ୍ତେ ହରିଲୁ ତୋର ପତ୍ନୀ ଆନ ହରୁ
ଝରଦା ନାମ ତୋହର ହୋଇବ ଜଗତେ
ବହୁଦୋଷ ହେବପ୍ରାତେ ତୋ ମୁଖବୃହାନ୍ତେ
ଜୟସେନ ବୋଲେ ଦୋଷ ହେଲା ନିଃସନ୍ଦେହେ
ଶାପକୁ କାରଣ ମୋତେ କର ଅନୁଗ୍ରହେ ।
କୁବେର ବୋଇଲେ ତୋର ସତ୍ୟଯୁଗ ଯିବ
ତଦନ୍ତେ ତ୍ରେତାଯୁଗ [illegible]

ଦ୍ୱାପରେ କୁରୁ ପାଣ୍ଡବ ହେବେ ଅନ୍ୟୋଅନ୍ୟ
ସହଦେବ ବାକ୍ୟେ ଭୀମ ତୋତେ ସିବଚନ୍ଦନ ।
ଶୂଭିଖମ୍ବରେ ବାନ୍ଧିବେ ସମର ମଣ୍ଡଳେ
ପ୍ରେତ ପିଶାଚ ଭେଟିବେ ତୋତେ ନିଶାକାଳେ
ତୋ ମାଂସ ଭକ୍ଷି ଲୋଡ଼ିବ ଶୃଗାଳ ଭାରଯା
ଶିବ କହିବ ସଖି ଗୋ ଏହା କର ତେଜ୍ୟା ।
ଆଗତ ବାର୍ତ୍ତା କହିବ ସମରର କଥା
ତାର ବାକ୍ୟ ଶୁଣି ହେବୁ ଭବିଷ୍ୟତଜ୍ଞାତା ।
ବନ୍ଧନ ଫେଡ଼ିଣ ତୋତେ ନେବ ଯେ ମାରୁତି
ଯୁଦ୍ଧବାର୍ତ୍ତା କୁହାଇବ ସହଦେବ ମନ୍ତ୍ରୀ ।
କୃଷ୍ଣ ଯୁଧିଷ୍ଠିର ଆଉ ଅର୍ଜ୍ଜୁନର ଆଗେ
ମହାଭାରତର କଥା କହି ଆସ ସ୍ୱର୍ଗେ ।
ତୋର ମୃତପିଣ୍ଡ ଦେନ ଏ ତୋର ବନିତା
ବହ୍ନିରେ ଝାସଦେଇ ହେବ ସହମୃତା ।
ଶୁଣ ଆହେ ମହାରାଜା ବଦନ୍ତି ଅଗସ୍ତି
ଜୟସେନ ଗନ୍ଧର୍ବ ଯେ ଇନ୍ଦ୍ରର ସନ୍ତତି ।
କୁବେର ଦେବତା ତାଙ୍କୁ ଶାପଦେଲା ପୂର୍ବେ
ତହିଁ ନିମନ୍ତେ ଭାରଦା ନାମ ହେଲା ଭବେ ।
ଏ ଅପୂର୍ବ ବାଣୀ ଶୁଣି ହୋଇଲା ମୁକତି
ମୋକ୍ଷ ପାଇଣ ଭାରଦା ହେଲା ସ୍ୱର୍ଗଗତି ।
ଭାରତର ଭବିଷ୍ୟତ ବଚନ କଥନ
ଉଦଯୋଗ ପର୍ବେ ହେଲା ଭାରଦା ଆଖ୍ୟାନ ।
ଯାହା ସୃଜନା କରିଛି ପରାଶର ବଶି
ସେ ସତ୍ୟବତୀ ନନ୍ଦନ ସଦା ମୁଁ ଗୁଣୁଛି ।
ନଉକାଯାନରେ ଯେଉଁ ମୁନିଙ୍କ ଜନମ
ମହାବିଜ୍ଞ ପଣ୍ଡିତ ସେ ମହର୍ଷି ଉତ୍ତମ ।
ଜାଣି ନାରାୟଣ ବୁଦ୍ଧି ତାଙ୍କ ତଦଭବ
ସାତକଳ୍ପପରିଯନ୍ତେ ଦେଲେ ଗର୍ଭେ ଠାବ ।
ଗର୍ଭେ ଥାଇ ଜାଣିଲେ ସେ ଭୂତ ବର୍ତ୍ତମାନ
ସ୍ୱରୂପ ଦେଖିଲ ପ୍ରାୟେ କଲ ସେ ଲିଖନ ।
ଷାଠଏ ସହସ୍ର ଗ୍ରନ୍ଥ ସୃଜନ କରନ୍ତି
ଅନ୍ତକର କହିବାକୁ କଏ ଅଛୁ କ୍ଷିତି ।
ଋଷିମାନେ ଦେଖିନେଲେ ଏ ବ୍ରହ୍ମାଣ୍ଡ ମଧ୍ୟି
ସେ ସୃଷ୍ଟି କାରଣ ନାଥ ସବୁଛନ୍ତି ସୃଜି ।
ତବ ପାଦ ଛଡ଼ା ମନେ ନ ରହୁ ଯେ ଆନେ
ମୋର କ୍ଲେଶ ଜ୍ଞାନ କହେ ବ୍ୟାସଙ୍କ ବଚନେ ।
ଯାହା ସେ ପ୍ରସନ୍ନହୋଇ ମୋତେ ଦେଲେ ବର
କୃପାଜଳର ନିଧିମା ମୋ ହୃଦୟହାର ।
କଣ୍ଠିତ ହୃଦୟା ମୋତେ ହୁଅ ମୁନି ବ୍ୟାସ
ବଦନ୍ତି ଯେ ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।
ଯାହା କହିଥିଲେ ମୋତେ ଶ୍ରୀ ଅଗସ୍ତି ମୁନି
ମୁଁ ତାହା ଲିଖିନ କଲି ବେଦବାକ୍ୟ ମାନି ।

---

## ଆତାପି ବାତାପି ଉପାଖ୍ୟାନ ଓ ସିଂହମୁଖା ଶୃଗାଳର ଭବିଷ୍ୟତ ବାଣୀ

ଏଥୁଅନ୍ତେ ପଚ୍ଛରିଲେ ବଳଙ୍କ ନୃମଣି
ପାପ ଖଣ୍ଡନ କରିବ ଶ୍ରୀ ଭାରତ ଶୁଣି ।
ଭାରଦା କହିଲା ସର୍ବ ଯୁଦ୍ଧର ବିଷୟ
ଶୁଣି ଯୁଧିଷ୍ଠି ସନ୍ତୋଷ ହେଲେ ଅତିଶୟ ।
ଅତଃପର କିସ କଲେ କଉରବମାନେ
ସେହି କଥା କହ ମୋତେ ଶୁଣିବି ହେ ମନେ
କହନ୍ତି ଅଗସ୍ତି ମୁନି ଶୁଣ ହେ ରାଜନ
କଉରବ ଯାହା କଲେ ସେହି କଥାମାନ ।
ଦୁର୍ଯ୍ୟୋଧନର ଆଗରେ କହିଲା ଶକୁନି
ଅସଂଖ୍ୟ ସାଗର ହେଲେ ଆମ୍ଭର ସଇନି ।
ଅଳ୍ପମାନ ସଇନ୍ ପାଇଲେ ପାଣ୍ଡବେ
ଶୁଣି ମହାନନ୍ଦ ହେଲେ ସର୍ବ କଉରବେ ।
ଯେତେ ଯେତେ ଆସିଥିଲେ ତହିଁ ନରନାଥ
କୁରୁନାଥ ଭୂଷଣରେ କଲା ବିଭୂଷିତ ।
ଯମୁନା କୂଳରେ ଗୃହ ଥିଲାକ ନିର୍ମିତ
ସୈନ୍ୟମାନେ ଯାଇ ତହିଁ କଲେ ଅବସ୍ଥିତ ।
ଗଜ ଅଶ୍ୱ ପଶ୍ୱାଦିଙ୍କ ଆହାରର ପାଇଁ
ଘାସ ବ୍ରୀହି ଖଞ୍ଜି ଦେଲେ ନରପତି ତହିଁ ।
ଦ୍ୱିଜ ଅମୃତ ଭୋଜନ ଦେଲେ ସମସ୍ତଙ୍କୁ
ରତନ ଯୋଗାଡ଼ ଦେଲେ ଯେମନ୍ତ ଯାହାକୁ
ପାଣ୍ଡବଙ୍କ ଛନ୍ନଶାଳା ଥିଲା ଗଙ୍ଗାକୂଳେ
ନିତ୍ୟକର୍ମ ଶେଷକଲେ ସର୍ବ ମହୀପାଳେ ।
ଗୌଣ ସଉରା ବନ୍ଧିଣା ପୁଣି ନଳକିଧି
ତନ ବିଧାନରେ ପାକ ହୋଇଅଛୁ ସିଦ୍ଧି ।

ଭୋଜନେ ତୃପତ ହେଲେ ସର୍ବ ନରଦେବ
ଗଙ୍ଗାକୂଳରେ ରହିଲେ ଯୋଦ୍ଧାମାନେ ସର୍ବ ।
କେ ବୋଲଇ ବହୁଦିନୁ ଛାଡ଼ିଲୁଣି ଘର
କେହୁ ବୋଲଇ କପାଇଁ ନ ଲଗେ ସମର ।
କେ ବୋଲଇ ଯୁଧିଷ୍ଠିର ହୃଦରେ ମନରେ
ସତେ କି ସମର ହେବ ଏଇରେ ଏଇରେ ।
କେ ବୋଲେ ପାଣ୍ଡବମାନେ ବହୁତ ସହିଲେ
ଅନେକ ଅନେକ କଷ୍ଟ ବନେ ସେ ପାଇଲେ
କେ ବୋଲେ ନିଶ୍ଚେ ସମର ହେବ କାଲପରା
କେ ବୋଲେ ବାଜସ୍ତୁ ଘୋଷ ବଜାଅ ଆମ୍ଭର
ଡାକନ୍ତି ହାକନ୍ତି କେହୁ କେ ହାନ୍ତି ହାମୋଲ
କେହୁ ବୋଲନ୍ତି ଆସରେ ଲଗାଇବା କଳ ।
ରାଜାଏ ବସିଲେ ଯାଇ ପାଇଣ ଆଦର
ମାନ୍ୟ ଧର୍ମ କଲେ ତାଙ୍କୁ ଦେବ ଯୁଧିଷ୍ଠିର ।
ମୁକୁଟ କୁଣ୍ଡଳ ଦେଲେ ଶିରେ ଶିରମଣି
ହସ୍ତକୁ ବଳୟ ପାଦେ ନୂପୁର ବାଜେଣି ।
ଗଳାକୁ ରତ୍ନହାର ଦେଲେ ପଞ୍ଚସର
ଆନନ୍ଦିତ ହେଲେ ଉପହାର ପାଇକର ।
ବସାଇଣ ସତାଶୋଇ ସହସ୍ର ନୃପତି
ପୃଚ୍ଛାର୍ଥରେ କହଇ ମାନଚକ୍ରବର୍ତ୍ତୀ ।
ଦୁଷ୍ଟ ରାଜାଏ ବୋଇଲେ କରିଅ ସମର
ସଞ୍ଜୟକୁ ପଚାରଇ ଅମ୍ବିକା କୁମର ।
କେଉଁ ବିଷୟ ଘଟିଲା ପାଣ୍ଡବଙ୍କ ଆଗେ
ସେହୁ କଥାକୁ ପ୍ରକାଶି କହ ମୋ ନିକଟେ ।
ସଞ୍ଜୟ ବୋଇଲା ମନ୍ତ୍ରୀ ବୃଦ୍ଧଏ ପାଇଲା
ଭରଦ୍ୱାକୁ ଆଣି ଶୁଭ ଖମ୍ବରେ ବାନ୍ଧିଲା ।
ସିଂହମୁଖା ଶୃଗାଳ ସେ ଭର୍ଯ୍ୟାକୁ ଘେନିଣ
କହିଲା କୁରୁ ପାଣ୍ଡବ ରଣ ବିବରଣ ।
ଶୁଭଖମ୍ଭ ତଳେ ପଡ଼ି ଶୁଣିଲା ଭରଦ୍ୱା
ଜମ୍ବୁକ କହଇ ପୁଚ୍ଛେ ତାହାର ପ୍ରମଦା ।
ତାହା ଶୁଣି ପୃଚ୍ଛାକଲେ ଅନ୍ଧନୃପତି ପରଣ
କିସ ସେ କହିଲା କହ ସଂକ୍ଷେପି କରଣ ।
ସଞ୍ଜୟ ବୋଇଲେ ଶୁଣ ଅମ୍ବିକା ତନୟ
କୌରବ ହାରିବେ ରଣେ ପାଣ୍ଡବଙ୍କ ଜୟ ।
ତାହା ଶୁଣି ଧୃତରାଷ୍ଟ୍ର ପୁଣିହିଁ ପୁଚ୍ଛଇ
ଶୃଗାଳ କହିଲା ଯାହା ସତ କି ଅଟଇ ।

ସଞ୍ଜୟ ବୋଇଲା ତାର ସବୁକଥା ସତ
ଶୃଗାଳ ଜାଣଇ ଜାଣ ସମସ୍ତ ଆଗତ ।
ଶୁଣି ଧୃତରାଷ୍ଟ୍ର ବୋଲେ ଆଶ୍ଚର୍ଯ୍ୟ ହୋଇଣ
ବଡ଼ ଅଲୌକିକ ସେହି ଶିବା ବିବରଣ ।
ସେ ସିଂହମୁଖା ଶୃଗାଳ ପୂର୍ବେ ଥିଲା କିଏ
ସଂକ୍ଷେପିଣ କହ ମୋତେ ସେ କଥା ସଞ୍ଜୟେ
ସଞ୍ଜୟ ବୋଇଲା ଶୁଣ ହସ୍ତିନା କରତା
ସତ୍ୟଯୁଗ ଚରିତ ଏ ବହୁଦିନ କଥା ।
ବ୍ରହ୍ମାଙ୍କ ନନ୍ଦନ ନାମ ମୁନି ପଉଲସ୍ତ୍ୟ
ପ୍ରେମରେ ମଜ୍ଜିଲେ ପ୍ରିୟମ୍ବଦାର ସହିତ ।
ପ୍ରିୟମ୍ବଦା ବୋଲିକରି ଯେଉଁ ଅପସରୀ
ପ୍ରତିରମ୍ଭା ବୋଲି ତାକୁ ବୋଲେ ବଜ୍ରଧାରୀ
ସେ ପ୍ରମଦା ଭୁଲେ ମୁନି କରିଲେ ସେ ପ୍ରୀତି
ତାଙ୍କ ବୀର୍ଯ୍ୟେ ବେନିପୁତ୍ର ହେଲେ ଉତପତ୍ତି ।
ଯଜନ ଯାଜନ ବୋଲି ନାମଦେଲେ ବେନି
ଅନେକ ବେଦମନ୍ତ୍ର ଯେ ଶିଖାଇଲେ ମୁନି ।
ବେଦମନ୍ତ୍ରେ ପାରଙ୍ଗମ ସେ କୁମର ହେଲେ
ମାରକଣ୍ଡ ମୁନି ତାଙ୍କୁ ଜିଣି ନ ପାରିଲେ ।
ବୃହସ୍ପତି ପୋଷିଥିଲେ କୁରଙ୍ଗୀ ଗୋଟିଏ
ବଡ଼ାଇ ସୁସଞ୍ଚ ତାର ଅଟଇ ସେ କାୟେ ।
ସେହୁ ପାଣି ପିଇଗଲା ବ୍ରହ୍ମାଙ୍କ କୁଣ୍ଡକୁ
ଯଜନ ଯାଜନ ଥାଇ ଦେଖିଲେ ତାହାକୁ ।
ଏକା କୁରଙ୍ଗୀ ଦେଖିଲେ କେ ନାହିଁ ସନ୍ନିଧେ
ପୌଲସ୍ତ୍ୟ ନନ୍ଦନ ତାକୁ ଧଇଲେକ କ୍ରୋଧେ ।
ଅନେକ ହିରଣ୍ୟଥିଲା ସେ କୁରଙ୍ଗୀ କାୟେ
କାଢ଼ି ଘେନିଲେ ତାହାକୁ ସ୍ତମ୍ଭର ପରାୟେ
ସେ ରତ୍ନ ଘେନି କୁରଙ୍ଗୀ ପକାଇଲେ ମାରି
ନନ୍ଦନବନେ ଖାଇଲେ ତାକୁ ପୋଡ଼ିକରି ।
ସଉରୀ ବିଧିମତରେ କରିଲେ ରନ୍ଧନ
ପୋଡ଼ାବଳକ ଖାଇଲେ ସେ ଋ : ନନ୍ଦନ ।
ତାହାକୁ ଭୁଞ୍ଜିଣ ଦୁହେଁ ହୋଇଲେ ତୃପତ
ଆଚମନ ସାରି ସୁଖେ ତହିଁ ବସିଛନ୍ତି ।
ବୃହସ୍ପତି ବୋଇଲେ ଯେ ନାରଦ ହକାରି
ମୃଗୁଣୀ ଗୋଟିଏ ଆଣ ଯାଇ ଲେଉଟକରି ।
ବୃହସ୍ପତି ବଚନରେ ଦେବପ୍ରିୟ ଋଷି
ବ୍ରହ୍ମାଖଣ୍ଡ ନନ୍ଦନରୁ ...

ଦେଖିଲେ ଯେ ବେନଭାଇ ତହିଁ ଛନ୍ତି ବସି
ତାହାଙ୍କୁ ଭେଟିଲେ ଯାଇ ନାରଦ ମହର୍ଷି ।
ନାରଦ ବୋଇଲେ ତୁମ୍ଭେ ଶୁଣ ମୋ ବଚନ
ବୃହସ୍ପତି ପଠାଇଲେ ମୋତେ ଯେ ବହନ ।
ସେ କୁରଙ୍ଗୀ ଲୋଡ଼ି ଲୋଡ଼ି ଅଇଲି ମୁଁ ଖରେ
ଦେଖିଲ କି ଚରୁଥିଲା ଏହି ବନସ୍ତରେ ।
ତୁମ୍ଭେ ଦୁହେଁ ବସିଅଛ ଆଚମନ ସାରି
ଅଗ୍ନି ଘଡ଼ରୁ ଖାଇଲ ତାକୁ ପୋଡ଼ିକରି ।
ନାରଦ ବୋଇଲେ ଯହୁଁ ବହୁତ ଆକ୍ରୋଶି
ସ୍ତମ୍ଭୀଭୂତ ହେଲେ ଦୁହେଁ କିଛିହିଁ ନ ଭାଷି ।
ପୁଣି ପ୍ରଶ୍ନବାକ୍ୟ ତହୁଁ କରିଲେ ନାରଦ
ଜାଣିଲଇଁ ତୁମ୍ଭେ ଦୁହେଁ କରିଅଛ ମନ୍ଦ ।
ଭୟଗ୍ରସ୍ତ ହୋଇ ତହୁଁ ଉଠିଲେ ସେ ବେନି
ନାରଦଙ୍କ ପାଦତଳେ କରିଲେ ଦଇନ୍ୟ ।
ବୋଇଲେ ନ ଜାଣି ଆମ୍ଭେ କଲୁ ମନ୍ଦକୃତ୍ୟ
ଗୋପନ କରନ୍ତୁ ସ୍ୱାମି ନ କର ବ୍ୟକତ ।
ବନସ୍ତର ଜୀବ ବୋଲି ତାକୁ ଆଣି ଧରି
କ୍ଷୁଧାର୍ତ୍ତେ ଖାଇଲୁ ତାକୁ ଶୌଚବିଧି କରି ।
ଶୁଣିକରି ମହାମୁନି ତହୁଁ ଗଲେ ବେଗେ
କହିଲେ ସମସ୍ତ କଥା ବୃହସ୍ପତି ଆଗେ ।
ପୌଲସ୍ତିଙ୍କ ବେନିସୁତ ଯଜନ ଯାଜନ
କୁରଙ୍ଗୀ ଗୋଟିକି ପୋଡ଼ି କଲେ ସେ ଭୋଜନ
ତହୁଁ କୋପେ ବୃହସ୍ପତି କଲେ ବଡ଼ କୋହ
ବୋଇଲେ ବ୍ରହ୍ମରାକ୍ଷସ ତୁମ୍ଭେ ବେନି ହୁଅ ।
ସଞ୍ଜୟ ବୋଇଲେ ତୁମ୍ଭେ ଶୁଣ ଧୃତରାଷ୍ଟ୍ର
ଗୁରୁଙ୍କ ଶାପେ ସେମାନେ ହେଲେ ମତିଭ୍ରଷ୍ଟ
ଜ୍ଞାନଭ୍ରଷ୍ଟ ହୋଇଲେ ସେ ହେଲେ ମହାପାପୀ
ବ୍ରହ୍ମରାକ୍ଷସ ହେଲେ ସେ ଆତାପି ବାତାପି ।
ବନସ୍ତେ ବୁଲନ୍ତି ଦୁହେଁ ଭୂତ ପ୍ରେତ ଜାଣି
ବହୁ ଉପଦ୍ରବ କଲେ ସେହି ଦୁଇ ପୁଣି ।
ନାନାଦି ଜୀବଜନ୍ତୁଙ୍କୁ ଆଣନ୍ତି ସେ ଧରି
ସୌଚ ବିଧିରେ ଖାଆନ୍ତି ତାକୁ ପାକକରି ।
ନରନାରୀ ଭକ୍ଷନ୍ତି ସେ ଯା ଦେଖନ୍ତି ବନେ
ଅଦ୍ଭୁତରେ ଖାଆନ୍ତି ସେହି ବେନିଜନେ ।
ପ୍ରୟାଗ ଯିବାକୁ ପଥ ଭଇରବ ବନ
ମଧ୍ୟରେ ଗୋଟିଏ ତହିଁ କଲେ ବେନିଜନ ।

ସେ ବନସ୍ତ ମଧ୍ୟେ ପାଣି ନ ମିଳଇ ବାଟେ
ଗ୍ରାମ ମଧ୍ୟ ନାହିଁ ପାଞ୍ଚ ଯୋଜନ ନିକଟେ ।
ସେ ସ୍ଥାନେ ଯାଇ ରହିଲେ ଆତାପି ବାତାପି
ପ୍ରୟାଗ ତୀର୍ଥେ ଆସନ୍ତି ଯେତେ ଯେତେ ତପୀ
କଦା ପଥିକ ଆସନ୍ତି ଜାଣ ସେହିବାଟେ
ମାନବ ଗମନ ନାହିଁ ତାହାର ନିକଟେ ।
ଶ୍ରମ ପାଇଣ ବସନ୍ତି ଭଲସ୍ଥାନ ଦେଖି
ଆତାପି ପୁରାଣ ପଢ଼େ ବସିଣ ତହିଁକି ।
ବାତାପି ହୋଇଣ ଥାଏ ଏକଗୋଟି ମୃଗୀ
ପିଣ୍ଡା ଆଢ଼େ ବନ୍ଧାଥାଏ ବେକେ ପଘା ଲାଗି
ବେଳ ଅବସାନ ହେଲେ ରୁହାଇ ପୁରାଣ
ପଥିକଙ୍କୁ ବୋଲେ ଆଜ ରହ ହେ ବ୍ରାହ୍ମଣ
ବଡ଼ ଗୌରବ ଅର୍ଚ୍ଚନା ତାହାଙ୍କର ଦେଖି
ଯାଇ ନ ପାରିଣ ତହୁଁ ରହନ୍ତି ପଥିକ ।
ତାଙ୍କୁ ରଖାଇଣ ଦେଇ ନ ପାରଇ ସଞ୍ଜା
ବୋଲଇ କୁରଙ୍ଗୀ ମାରି ଆଜ କ୍ଷୁଧା ବଞ୍ଚା
ନିଜେ ଉଠିଯାଇ ତାକୁ ମାରଇ ସେ ବନ୍ଧ
ସଉଚ ବିଧିରେ ପୁଣ ପାକ କରେ ସିଝି ।
ଭୁଞ୍ଜାଇ ବସାଇ ତାଙ୍କୁ ପରଷଇ ମାଂସ
ସ୍ୱାଦୁ ପାଇକରି ଜନେ କରନ୍ତି ତା ଗ୍ରାସ ।
ପୁଷ୍ଟ ଭୋଜନ ପାଇଣ ଆଚମନ ସାରି
ସୁଖ ଭାବରେ ବଞ୍ଚନ୍ତି ତହିଁ ସେ ସର୍ବରୀ ।
କଲ୍ୟାଣ କରି ଚଳନ୍ତି ହୁଅନ୍ତେ ପ୍ରଭାତ
ଆତାପି ଗୋଡ଼ାଇ ଯାଏ କିଛିଦୂର ପଥ ।
ବାହୁଡ଼ ପଣ୍ଡାଏ ବୋଲି ବୋଲଇ ପଥିକ
ଆତାପି ଡାକଇ ତାର ଭାଇ ବାତାପିକି ।
ଗର୍ଭର ଭିତରେ ସେହି ପୁରୁଷେକ ହୋଇ
ପଞ୍ଜରା ବିଦାରି ପୁଣି ବାହାରି ଆସଇ ।
ସେହିଠାରେ ସେ ପଥିକ ପଡ଼େ ପ୍ରାଣଘାତେ
ତା ମାଂସ ପୋଡ଼ି ଖାଆନ୍ତି ସେହି ବେନିଭ୍ରାତେ
ଏହିରୂପେ ଗତହେଲା ସେ ସତ୍ୟଯୁଗେକ
ତ୍ରେତାଯୁଗେ ନାଶ କଲେ ସେ ପୁଣି ଅନେକ ।
ତ୍ରେତାଯୁଗେ କନ୍ୟାମାସ ଦଶମୀର ତିଥି
ଧନିଷ୍ଠା ନକ୍ଷତ୍ର ତିଥି ବାର ବୃହସ୍ପତି ।
ତୈତିଳ ନାମେ କରଣ ଧୃତନାମେ ଯୋଗ
ଅଗସ୍ତି ମହାଋଷି ଯେ ଚଳଲେ ପ୍ରୟାଗ ।

ଚଳିଯାଇ ପ୍ରବେଶିଲେ ଭଇରବ ବନ
ଉପସ୍ଥିତ ହେଲେ ଯେନ୍ହ ଦୈତ୍ୟଙ୍କ ସଦନ।
ଶ୍ରମ କାତରେ ବସିଲେ ଯାଇଣ ପିଣ୍ଡାରେ
ଦେଖିଣ ଆତାପି ବହୁ ଗଉରବ କରେ।
ପୁରାଣ ପୁସ୍ତକ ଫେଇ ଶୁଣାଏ ତକ୍ଷଣ
ଅଗସ୍ତି ଶୁଣନ୍ତି ତାହା ହରଷ ହୋଇଣ।
ବେଳା ଉତ୍ତର ହୁଅନ୍ତେ କରି ଗଉରବ
ବୋଲନ୍ତି ଏ ବନସ୍ଥରେ କେଉଁପରି ଯିବ।
ଅଗସ୍ତି ବୋଇଲେ ହେଲା ବେଳ ଅବସାନ
ରହିବାକୁ ବାଞ୍ଛା ହୁଏ ତୁମ୍ଭର ଭୁବନ।
ଆତାପି ଦୈତ୍ୟ ବୋଇଲା ଭୋଜନ ବିଧାନ
କିଛି ନ ମିଳଇ ଏଥେ ଅନ୍ନାଦି ବ୍ୟଞ୍ଜନ।
କୁରଙ୍ଗୀ ଗୋଟିଏ ମାତ୍ର ଆମ୍ଭେ ଅଛୁ ବାନ୍ଧି
ତାହାକୁ ମାରି ତୁମ୍ଭଙ୍କୁ ଆଜ ଦେବୁ ରାନ୍ଧି।
କୁରଙ୍ଗୀ ମାରିଣ ତହିଁ ପୋଡ଼ି ଅଗ୍ନି କୁଣ୍ଡେ
ସଉରା ବିଧି ଯୋଗାଡ଼େ ରାନ୍ଧିଲା ସେ ଖଣ୍ଡେ।
ନିତ୍ୟକର୍ମ ସାରି ତହୁଁ ଭୁଞ୍ଜନ୍ତି ଅଗସ୍ତି
ପରଷଇ ଆତାପି ଯେ ହୋଇ ତୋଷମନ୍ତ।
ଭୋଜନ କରି ତୃପତ ହେଲେ ମୁନିବର
ବହୁ ବିନୟ କରଇ ଆତାପି ଅସୁର।
ଆଚମନ ଶେଷକରି ବିଜୟ ଅଗସ୍ତି
ଯୋଗଲୟ କରୁ କରୁ ପାହିଗଲା ରାତି।
ଚଳିଗଲେ ମହାତମା ଅରୁଣ ପ୍ରକାଶେ
ଆତାପି ଗୋଡ଼ାଇ ଅଛି ମୁନି ପାଶେ ପାଶେ।
ଅଗସ୍ତି ବୋଇଲେ ଏଥୁ ବାହୁଡ଼ି ପଣ୍ଡାଏ
ଗହନ ବନେ ଆସିବ କେତେଦୂର ଯାଏ।
ତହୁଁ ଆତାପି ବାହୁଡ଼େ ଆପଣାର ପୁରେ
ବାତାପି ବାତାପି ବୋଲି ଡାକେ ଉଚ୍ଚସ୍ୱରେ
ଅଗସ୍ତି ଯେ ଚଳିଗଲେ ପ୍ରୟାଗ ତୀର୍ଥକୁ
ବାତାପି ନଇଲା ଆଜ ଆତାପି ଡାକକୁ।
ଯା ପେଟେ ବଡ଼ବାନଳ ହୋଇଗଲା ଧ୍ୱଂସ
ତାଠାରେ କେତେକ ମାତ୍ର ବାତାପିର ମାଂସ
ଅଗସ୍ତିର ଗର୍ଭେ ଭସ୍ମ ହୋଇଗଲା ସର୍ବ
ଆବର ସେ ବାତାପିକି କାହୁଁ ସେ ପାଇବ।
ବାତାପିକୁ ଜୀର୍ଣ୍ଣକରି ଚଳିଲେ ଅଗସ୍ତି
ଆତାପି ଆମୋକ୍ଷ ହୋଇ ବୁଲେ ଚଉକତି।

ସମସ୍ତେକ ପ୍ରାଣତ୍ୟାଗୀ ହୋଇଲା ଆତାପି
ଯମ ଧର୍ମ ପୁରାଣରେ ହେଲା ମହାପାପୀ।
ସଂଯମନୀ ନାଥ ତାକୁ କୋପଭରେ ଶପି
ଆବର ମଞ୍ଚରେ ତୁହେ। ଶୃଗାଳ ହୁଅସି
ଆହେ ଧୃତରାଷ୍ଟ୍ର ସେହୁ ଜନ୍ତୁପତି ଶାପେ
ସିଂହମୁଖା ଶୃଗାଳ ସେ ହୋଇଲା ସ୍ୱରୂପେ।
ସେ ହେତୁ ବିହାର କରେ ଏହି ମଧ୍ୟ ସ୍ୱର୍ଗେ
ସର୍ବଥା ଆସଇ କୁରୁକ୍ଷେତ୍ର ମଧ୍ୟଭାଗେ।
ଅନ୍ତସୁଖେ ମହୁମାଂସ କରଇ ସେ ଭୋଗ
ସଞ୍ଜୟ କହିଲା ଧୃତରାଷ୍ଟ୍ରଙ୍କର ଆଗ।
ଧୃତରାଷ୍ଟ୍ର ବୋଲେ ବାବୁ ସେ ସାଧୁ ମହନ୍ତ
ତାଙ୍କର ବଚନ ମୁହିଁ ଶୁଣିବି କେମନ୍ତ।
ସଞ୍ଜୟ ଚଳିଲେ ତହୁଁ ଘେନି ଧୃତରାଷ୍ଟ୍ରେ
ପ୍ରବେଶ ହୋଇଲେ ଯାଇ ବେଣୀନଦୀ ତଟେ
ବିଜୟ ନାମେ ପର୍ବତ ବେଣୀନଦୀ କୂଳେ
ଗୁପ୍ତେ ରହିଲେ ଶିଂଶପା ବୃକ୍ଷ ବୁଦା ମୂଳେ।
ଶୃଗାଳ ଶୃଗାଳୀ ବସିଅଛନ୍ତି ପର୍ବତେ
ଶୃଗାଳୀ ବୋଇଲା ମିଛ କହୁଅଛ ମୋତେ।
ଭକ୍ଷିବାର ମାଂସ ମୋତେ ନାହିଁ କଲ କାଲି
ତୁମ୍ଭର ବଚନ ମୁହିଁ ମେଣ୍ଟି ନ ପାରିଲି।
ସ୍ୱାମି ସଙ୍ଗେ ଏଡ଼େ ଯୁଦ୍ଧ ହୋଇବ କି ଏଥ
ଅଦୃଷ୍ଟ କଥାକୁ କିଏ କରିବ ବା ସତ।
ଭରତକୁ ନିନ୍ଦାକରି ଶୃଗାଳୀ କହିଲା
ତତକ୍ଷଣେ ତାର ବେନିଚକ୍ଷୁ ଫୁଟିଗଲା।
ଶୃଗାଳ ବୋଇଲା ସଖି ମୋତେ କଲୁ ଭଣ୍ଡ
ତତକ୍ଷଣେ ଫଳିଲା ସେ ଦଇବର ଦଣ୍ଡ।
ଶୃଗାଳୀ ବୋଇଲା ସ୍ୱାମି ମୁହିଁ ବଡ ପାପୀ
ଏଥିରୁ କେମନ୍ତେ ପାରି ହୋଇବି ଅଦ୍ୟାପି
ଶୃଗାଳ ବୋଇଲା ଯେବେ ଲଭିବୁ କାରଣ
ତେବେ ଏକଲୟେ ମହାଭାରତ ତୁ ଶୁଣ।
ଜାଣି ଶୁଣି ଭାରତ ତୁ ନିନ୍ଦା କଲୁ ଯେବେ
ତାହାର ଦୋଷ ନିମନ୍ତେ ଅନ୍ଧ ହେଲୁ ଏବେ
ପୁଣିହିଁ ବୋଇଲା ଯେବେ କଲୁ ତୁ ପରତେ
ପୁଣି ଭାରତ କହିବି ତୋହର ଅଗ୍ରତେ।
ଶୁଣ ସଖି ଅନୁଭବ ନାମେ ସତ୍ୟଯୁଗ
ହେତ୍ୟା ଯୁଗର ନାମ ଅଟେ ଏହି ସ୍ୱର୍ଗ।

ଚନ୍ଦ୍ରବ୍ରହ୍ମ ବୋଲିକରି ଦ୍ୱାରକାକୁ ବୋଲି
ସେ ଅବତାରୁ ସତ୍ତୁରି ଯୁଗ ମଟଣେ କାଲି ।
ସେ ଦ୍ୱାପର ଭାଦ୍ରମାସେ ହୋଇଲା ସମର
କୁରୁ ପାଣ୍ଡବଙ୍କ ଯୁଦ୍ଧ ହେଲା ଏ ଭୂମିର ।
ବାରୁଣୀ ଗିରି ଚଉଦ ଯୋଜନ ଉତ୍ସର୍ଗ
ପଞ୍ଚବିଂଶ ଦିନ ହେଲା ତହିଁ ରଣଯାଗ ।
ମେଦ ମାଂସ ରକତରେ ପୂରିଲା ମେଦିନୀ
ଏହି ପର୍ବତ ଉପରେ ଉଠିଲେ ରେ ଧନି ।
ଏହି ପର୍ବତ ସମାନ ଗୁଡ଼ିଗଲେ ଶବ
ଏଥି ବସି ଖାଇଲି ମୁଁ ବହି ପ୍ରୀତିଭାବ ।
ପୁଣିହିଁ ବୋଇଲା ସଖି ଶୁଣ ତୁହି ହାଦେ
ମନୁ ଅନ୍ତେ ପୁଣି ହେଲା ଭାରତର ଯୁଦ୍ଧେ ।
ଯେତେବେଳରେ ସମର ହୋଇଲା ଭାରତ
ଅଠର ଦିନ ମାଉଁସ ଖାଇଲି ବହୁତ ।
ଆରେ ସଖି ଏବେ ମୁହିଁ କହୁଅଛି ତୋତେ
ଆହାର ନୁହଇ ମୋର ଯୁଦ୍ଧ ପରଯନ୍ତେ ।
ମୋର ମନୋଗତ ଭାବ ଫେଡ଼ିଣ କହିଲି
ପୁଣି ଯୁଦ୍ଧେକ ହୋଇଲା ଶମ୍ଭୁ ମନୁ ବୋଲି ।
କଷିତ ବୋଲି କରିଣ ଏକ ସତ୍ୟଯୁଗେ
ଯାହା ଘଟିଥିଲା ତାହା କହୁଛି ତୋ ଆଗେ ।
ଖଣ୍ଡିଇ ପାତକମାନ ଭାରତର ବାଣୀ
ଶୁଣିଲେ ଅନ୍ଧପଟଳ ଫିଟିଯିବ ପୁଣି ।
ବୈଲୋଚନ ତ୍ରେତାଯୁଗ ହୋଇଲା ଅତୀତ
ନିଧାପ ବୋଲି ଦ୍ୱାପର ଯୁଗର ଆଗତ ।
ସେହି ଦ୍ୱାପର ଯୁଗରେ ତୁଳମାସ ମଧ୍ୟେ
ଶ୍ରୀମହାଭାରତ ହେଲା ଆବରହିଁ ଯୁଦ୍ଧେ ।
ପୃଥ୍ୱୀରେ ଠାବ ନୋହିଲା ରହିଲ ପର୍ବତେ
ରକ୍ତ ମୃତ ପିଣ୍ଡ ମାଂସ ପୂରିଲା ଜଗତେ ।
ପର୍ବତ ଉପରେ ଥିଲା ଶାଳ ତରୁବର
ଗିରି ବୁଡ଼ନ୍ତେ ଉଠିଲି ତାହାର ଉପର ।
କାତରେ ମୁଁ ଉଠିଲଇଁ ଶାଳବୃକ୍ଷ ଡାଳେ
ଅଷ୍ଟାଦଶ ଦିନାନ୍ତରେ ଗଦାଯୁଦ୍ଧ ଗୋଳେ ।
ରକ୍ତ ଉଧୁଚ ଲାଗିଲା ଡାଳେ ସୈନ୍ୟମାନ
ତାହା ଦେଖିଣ ମୋ ତନୁ କମ୍ପିଲା କେବଳ ।
ଏଡ଼େ ଯୁଦ୍ଧ ହୋଇଗଲା ସେ କାର୍ତ୍ତିକ ମାସେ
ଡାଳେ ଥାଇ ଭକ୍ଷିଲି ମୁଁ ସେ ମାଂସ ହରଷେ ·

ପୁଣିହିଁ ବୋଇଲା ଶୁଣ ଆଗୋ ସଙ୍ଗାତୁଣି ।
ବିଧିପୂର୍ବ ବୋଲି ମନୁ ଗତହେଲା ପୁଣି ।
ମନୁହର ବୋଲିକରି ଏକ ସତ୍ୟଯୁଗେ
ରୁଦ୍ରପିଙ୍ଗଳ ବୋଲିଣ ତ୍ରେତାଯୁଗ ଭାଗେ ।
ପୁଣି ସେ ଦ୍ୱାପର ନାମ କାଳଚନ୍ଦ୍ର ବୋଲି
ଅନେକ କାଳର କଥା ବୁଝି ତୁ କହିଲି ।
ସେକାଳେ ମହାଭାରତ ଯୁଦ୍ଧେକ ହୋଇଲା
ଏ ଶାଳବୃକ୍ଷ ସହି ଗୋ ଅର୍ଦ୍ଧେକ ବୁଡ଼ିଲା ।
ବସିବାକୁ ଠାବ ତହିଁ ନ ପାଇଲି ମୁହିଁ
ଭାସି ମନ୍ଦର ପର୍ବତେ ଲାଗିଲଇଁ ଯାଇଁ ।
ଚଇତ୍ର ମାସେ ସମର ହୋଇଲା ସେକାଳେ
ଏ ପର୍ବତ ବୃକ୍ଷ ସଖି ବୁଡ଼ିଲା ସମୂଳେ ।
ନିରଞ୍ଜନ ବୋଲିକରି ଏକ ମନୁ ନାମ
ଦ୍ୱାପର ମିଥୁନମାସେ ହୋଇଲା ସଂଗ୍ରାମ ।
ଗଙ୍ଗା ଯମୁନା ଆବର ସରସ୍ୱତୀ ନଦୀ
ରକ୍ତମାଂସ ମିଶାମିଶି ବହିଲେ ଏ ଭେଦି ।
ଏମନ୍ତ ମହାଭାରତ ହୋଇଲା ସତ୍ତୁର
ଶୁଣିଲୁ କି ଏକମନେ ତୁହି ହେଉକରି ।
ଆଉ ସତ୍ତୁରି ଭାରତ ମୋତେ ହେଲା ଜ୍ଞାତ
ଆଗତ ଭାରତ କଥା ଶୁଣ ତୁ ସଙ୍ଗାତ ।
ଏମନ୍ତ କହେ ଶୃଗାଳ ଭବିଷ୍ୟତ ଜ୍ଞାତା
ଅସଂଖ୍ୟ ସାଗରକୁ ତା ଗୃହିଣୀ ଯେ ଶ୍ରୋତା ।
ଭାରତ ନନ୍ଦନେ ଚକ୍ଷୁ ଯାଇଥିଲା ଫୁଟି
ପୁଣି ଶୁଣନ୍ତେ ପ୍ରାପତ ହେଲା ବେନି ଦୃଷ୍ଟି ।
ଏ ମହାଭାରତ ପଦ ଅମୃତ ସମାନ
ଲେଖିଲେ ଶାରଳାଦାସ ହୋଇ ସାବଧାନ ।

---

## ତୁଳସୀବଣ ବାଘ ଓ ତୁଳାମୁହାଁ କାଙ୍କର ବିବରଣ

ଶୁଣ ଆହେ ଧୃତରାଷ୍ଟ୍ର କହନ୍ତି ସଞ୍ଜୟ
ଏଡ଼େ ବଡ଼ ବିଷୟକୁ ନିନ୍ଦେ ତୋର ପୁଅ ।
ଏବେ ଆହେ କୁରୁନାଥ ଜାଣି କର କାର୍ଯ୍ୟ
ପାଣ୍ଡବ ବିବାଦି ହେଲେ ନ ପାଇବ ରାଜ୍ୟ ।
ଯେବେ ଇଚ୍ଛୁ ତୋର ବଂଶ କରିବାକୁ ରକ୍ଷା
ତେବେ ପାଣ୍ଡବ ସଙ୍ଗରେ ନ କର ତୁ କକ୍ଷା ।

ଧୃତରାଷ୍ଟ୍ର ଭବିଷ୍ୟତ ଜାଣିଲେକ ସନ୍ତ
ସଞ୍ଜୟ ସଙ୍ଗେ ବାହାର ବେଗେ ହେଲେ ତହୁଁ
ଚଳିଗଲେ ଧୃତରାଷ୍ଟ୍ର ଘେନି ସଞ୍ଜୟକୁ
ବାହାରେ ବାହାରେ ଗଲେ କୌରବ ସଭାକୁ
ଧୃତରାଷ୍ଟ୍ରଙ୍କୁ ଦେଖିଣ ହସିଲା ଶକୁନି
ମିସ ତସ କଥା ଶୁଣି ଆସିଛନ୍ତି ଘେନି ।
ମନ୍ତ୍ରୀ ବୋଲେ ପ୍ରାଣୀଙ୍କର ଧର୍ମ କଲାବେଳେ
ତହିଁକ ଯେ ବୁଦ୍ଧି ଘଟେ ଧର୍ମର ଅବଳେ ।
ଯେତେବେଳେ ଧୃତରାଷ୍ଟ୍ର ନିକଟ ଆସ୍ଥାନେ
ଧାଇଁକାରେ ଉଠିଲେ ସେ ସର୍ବ ଯୋଦ୍ଧାମାନେ
ସଞ୍ଜୟର କରେ ହସ୍ତ ଦେଇ କୁରୁରାୟ
ଆସ୍ଥାନର ଉପରକୁ କରିଲେ ବିଜୟ ।
ଧୃତରାଷ୍ଟ୍ର ବୋଲେ ତୁମ୍ଭ ଶୁଣରେ ଶକୁନି
ଏଥେ ଆସିଲୁଣି ରାଜାମାନଙ୍କୁ ତ ଘେନି ।
କି ଉପାୟ କରିବାକୁ କରନ୍ତୁ କି ବୁଦ୍ଧି
ଲକ୍ଷେ ରାଜା ଥାଇ ଆମ୍ଭେ କରାଇବା ସନ୍ଧି ।
ଶକୁନି ବୋଇଲା ଫଳ ବୃକ୍ଷରୁ ଖସିଲେ
ସନ୍ଧି ହୋଇପାରେ ଫଳ ପୁଣି ଲେଉଟିଲେ ।
ବଢ଼ିଲା ନଦୀରେ ଯେବେ ରହିବଟି ବନ୍ଧ
ତଥାପି ହୋଇବ କୁରୁ ପାଣ୍ଡବଙ୍କ ଯୁଦ୍ଧ ।
ଅନ୍ଧ ବୋଲେ ଗଙ୍ଗାକୂଳେ ଗଲି ଏହିକ୍ଷଣି
ଶୃଗାଳଠୁଁ ଶୁଣିଲଇଁ ଭବିଷ୍ୟତ ବାଣୀ ।
ଦେଖିଲି ଶୃଗାଳ ଭବିଷ୍ୟତ ବକ୍ତା ଯେତ
ଭାରତ ସମର ହେଲେ ମାଂସ ଖାଇ ବର୍ତ୍ତି ।
ପୁଣି ଭାରତ ସମର ହୁଏ ମନ୍ୱନ୍ତରେ
ଏତେକାଳ ଥାଏ ସେହି ହୋଇ ଅନାହାରେ
ଭାରତ ଯୁଦ୍ଧକୁ ଚାର ନାଶି ନିନ୍ଦା କଲା
ସେହିକ୍ଷଣି ବେନି ଚକ୍ଷୁ ଭାର ଫୁଟିଗଲା ।
ସତ୍ୟର ଭାରତର ସେ କହିଲା ବାରତା
ଶୁଣି ପୁଣି ଚକ୍ଷୁ ପ୍ରାପ୍ତ ହେଲା ତା ବନତା ।
ଶକୁନି ବୋଇଲା ଅନ୍ଧ ଶ୍ରେଷ୍ଠ କୁଜାମାନେ
ବଞ୍ଚି ରହିବାକୁ ସଦା ଇଚ୍ଛନ୍ତି ଏମାନେ ।
ଶୃଗାଳ ପାମର ଜନ୍ତୁ ଅଟେ କୁଲକ୍ଷଣ
ସେ ଯୁଗର କହିବ ପୁଣି ଯୁଦ୍ଧ ବିବରଣ ।
ଶୁଣି ଧୃତରାଷ୍ଟ୍ର ହୋଇ ଅତି କୋପଭର
ବୋଇଲେ ଶୁଣ ରେ ମନ୍ତ୍ରୀ କହିବା ମୋ ଗିର

ତସ୍କରମାନଙ୍କର ଯେ ଥିଲା ସର୍ବାଟିଏ
ପୁରାଣ ଫେଇଲେ ତହୁଁ ଗୋବିନ୍ଦ ପଣ୍ଡାଏ ।
ଅନେକ ଦୋଷ ଗାଆନ୍ତେ କୋପେ ପରଚଣ୍ଡା
ଉପହାସ କରି ଖେଦି ଦେଲେ ମାରି ଦଣ୍ଡା ।
ଗୋଟିଏ ନାଚିଲା ତହୁଁ ଭଣ୍ଡଗୀତ ଗାଇ
କେଶକୁ ମୁକୁଳା କରି ଜିହ୍ୱାକୁ ହଲାଇ ।
କୌତୂହଳରେ ଯେ ତହୁଁ ସମସ୍ତେହେଁ ବସି
ବସ୍ତ୍ର ଅଳଙ୍କାର ଦେଲେ ତାକୁ ହୋଇ ତୋଷି
ଧୃତରାଷ୍ଟ୍ର ବଚନରେ ରାଜାଏ ହସିଲେ
ଶକୁନି ବୋଇଲା ଅନ୍ଧ ଯାହା ତାହା ବୋଲେ
ଜନ୍ତୁଙ୍କରେ ହୀନ ଅଟେ ଶୃଗାଳ ଶୃଗାଳୀ
ତାହା ସ୍ତୁର କଥାକୁ କି ଘେନି କେହ୍ନ ଛଳା ।
ଏମନ୍ତ କହି ଶକୁନି ହାସ୍ୟରେ କହଇ
ଅନ୍ଧ ଧୃତରାଷ୍ଟ୍ର ବୁଢ଼ା ହୋଇଲାଣି ବାଇ ।
ତୁଳସୀ ବଣୁଆ ବାଘ ପରି ସ୍ୱାର ଆଣ୍ଠ
ବସିଣ କେତେ ବସ୍ତୁର କରେ ବୁଢ଼ା ଖେଣ୍ଟ ।
ଶୁଣ କହୁଅଛି ଥିଲା ଗୋଟିଏ ମର୍କଟ
ତାକୁ ଖାଇବାକୁ ବ୍ୟାଘ୍ର ହେଲା ଛଟପଟ ।
କେମନ୍ତେ ଖାଇବ ତାକୁ କରେ ଅନୁମାନ
ସେଥିପାଇଁକି ସତର୍କ ଥାଏ ରାତ୍ରିଦିନ ।
ଗ୍ରାମର ଅନ୍ତରେ ଥିଲା ଗୋଟାଏ ପଦର
ତହିଁ ମଧ୍ୟେ ଥିଲା ଏକ ଦୀର୍ଘ ତରୁବର ।
ସେ ବୃଦ୍ଧମର୍କଟ ସେହି ବୃକ୍ଷରେ ବଞ୍ଚଇ
ରାତ୍ରିକାଳେ ଥାଏ ସେହୁ ତହିଁ ଏକା ହୋଇ ।
ସେହି ବୃକ୍ଷ କତୁଦୂରେ ତୁଳସୀର ବଣ
ବ୍ୟାଘ୍ର ତହିଁ ବସି କରେ ସମୟ କ୍ଷେପଣ ।
କପଟରେ ବଇଷ୍ଣବରୂପେ ହେଲେ ଖ୍ୟାତ
ରହିଲା ସର୍ବଦା ତହିଁ ହୋଇ ମୌନବ୍ରତ ।
ଦିନ ଅର୍ଦ୍ଧ ଶେଷେ ସେହୁ ହୁଅଇ ବାହାର
ଭୂମି ଫୁଙ୍କି ଫୁଟି ସେହୁ ପକାଏ ପୟର ।
ଖଣ୍ଡେଦୂର ଯାଇ ସେହୁ କରେ ଜଳପାନ
ପୁଣି ଧୀର ଧୀର ହୋଇ କରେ ଆଗମନ ।
ଏହି ପରକାରେ ତହିଁ କେତେଦିନ ଗଲା
କପିରାଜ ଏକଦିନେ ତାହାକୁ ପୁଚ୍ଛିଲା ।
ଆହେ ପଶୁପତି ଶୁଣ ମୋ କହିବା ଗିର
କିପାଁ ଭୂମି ଫୁଙ୍କି ଫୁଙ୍କି ପକାଅ ପୟର ।

ଏହି ପରକାରେ ଗତ କରୁଛ କପାଇଁ
ମୋହର ସନ୍ଦେହ ତତ୍ତ୍ୱ ଶାନ୍ତ କର କହି ।
ଏହା ଶୁଣି ସେହି ବ୍ୟାଘ୍ର କରିଲା ଉତ୍ତର
ଆହେ କପିବର ଶୁଣ ମତ କରି ସ୍ଥିର ।
ସବୁ ତେଜି ଆଶ୍ରାକଲି ଏ ତୁଳସୀ ବଣ
ମାୟା ମୋହ ସଂସାରରେ ଅଛି କି କାରଣ ।
ସେଥିପାଇଁ ଘୋଷା କଲି ଏ ବୈଷ୍ଣବ ଧର୍ମ
ଶାସ୍ତ୍ରର ଯେରୂପେ ମୋକ୍ଷ ହେବ କଲେ କର୍ମ ।
ଜୀବ ବଧ କରିବାକୁ ଆମ୍ଭେ ଭୟପାଉଁ
ସେଥିପାଇଁ ଭୂଇଁ ଫୁଙ୍କି ପାଦକୁ ପକାଉଁ ।
ନ ପୁଣ କୀଟ ପତଙ୍ଗ ପାଦତଳେ ପଡ଼ି
ଦଳହୋଇ ଯାଇ ତାଙ୍କ ଜୀବ ଯିବ ଛାଡ଼ି ।
ଏହି ପରକାରେ କରି ରଖିଛୁ ଜୀବନ
ଜଳ ପବନ କେବଳ ଆମ୍ଭର ଭୋଜନ ।
ଶୁଣି ମର୍କଟ ବିଚାରେ ଆପଣା ମନରେ
ଏବେ ବୈଷ୍ଣବ ଦେଖିଲି ମୋ ଭାଗ୍ୟ ବଳରେ
ଏମନ୍ତ ବିଚାରି କପି ବୋଇଲା ବଚନ
ମୋତେ ସଙ୍ଗେ ସଙ୍ଗ କର ଆହେ ତପୋଧନ
କିଛି ଜ୍ଞାନ ଉପଦେଶ କରି ବିଚରଣ
ଏ ପଶୁଜନ୍ମରୁ ବେଗେ କର ପରିତ୍ରାଣ ।
ଏହା କହି ସେ ବାନର ବୃକ୍ଷରୁ ଓହ୍ଲାଇ
ବ୍ୟାଘ୍ର ଚରଣେ ପ୍ରଣାମ କରିଲାକ ଯାଇ ।
ମହାଆନନ୍ଦେ ସେ ବ୍ୟାଘ୍ର ବସିଲାକ ମାଡ଼ି
ବାନର ତଣ୍ଟିକୁ ବେଗେ ଧରିଲା କାମୁଡ଼ି ।
କପି ବୋଇଲା ଧନ୍ୟ ରେ ତୋ ବୈଷ୍ଣବପଣ
ମୋ ତଣ୍ଟି ମୋଡ଼ିଣ ମାଂସ କରିବୁ ଭକ୍ଷଣ ।
ଏ କଥା ଶୁଣି ସେ ବ୍ୟାଘ୍ର ହସିଲା କିଞ୍ଚିତ
କୋହଲ ପାଇ ମାଙ୍କଡ଼ ପଳାଏ ତୁରିତ ।
ଧର୍ମରେ ଦୃଢ଼ ବିଶ୍ୱାସ ତାହାର ଥିବାରୁ
ପ୍ରାଣ ପାଇ ପଳାଇଲା ବ୍ୟାଘ୍ର କବଳରୁ ।
ସେ ଦେବ ତୁଳସୀବଣ ବାଘ ଏହି ଅନ୍ଧ
ଏହାଯୋଗୁ ସବୁକଥା ନଷ୍ଟେ ହେବ ମନ୍ଦ ।
ଏହୁ ବିଚାର କରଇ ନାଶଯିବେ ସର୍ବ
ଏକାକୀ ବସି ଏ ବୁଢ଼ା ବିସ୍ମା ଦରିଣ୍ଡି ବ ।
ସର୍ବଦା ପାଣ୍ଡବଙ୍କର ହିତରେ ଏ ଥାଇ
ଆମ୍ଭମାନଙ୍କ ଅହିତ କଥାକୁ ଚିନ୍ତଇ ।

ଶିବା କହିଲା ବାସ୍ତବ ଦେଖିଛୁ ଭରତ
ଏ ଅନ୍ଧ କଥାକୁ ଦେବ କପାଁ କର ସତ ।
ଶୁଣି ଧୃତରାଷ୍ଟ୍ର କୋପେ ହୋଇ ପରଚଣ୍ଡ
ବୋଇଲେ ଶୁଣ ଶକୁନି ରେ ପାପିଷ୍ଠ ଭଣ୍ଡ ।
ଶୁଣରେ ଶକୁନି ତୁହି କରୁ ମନ୍ତ୍ରିପଣ
ତୁଳାମୁହାଁ କାଙ୍କପରି ତୋର ଆଚରଣ ।
ଏକ ସରୋବରରେ ବହୁ ଜଳଜନ୍ତୁ ଥିଲେ
ସେ ସ୍ଥାନେ ରହି ଆନନ୍ଦେ କାଳ କାଟୁଥିଲେ ।
ବୃକ୍ଷ ଏକ ଥିଲା ସେହି ସରୋବର କୂଳେ
ନୀଡ଼କରି ଏକ କାଙ୍କ ରହିଲା ତା ଡାଳେ ।
ଜଳଜୀବେ ପଚାରିଲେ ତାକୁ ଏକଦିନେ
ତୋତେ ଦେଖି ଆମ୍ଭେମାନେ ଭୟପାଇ ମନେ
ଗଭୀର ଜଳରେ ଯାଇ ରହିଅଛୁ ଲୁଚି
ତୁମ୍ଭେ ତ ଆହାର ପୁଣି କରୁନାହଁ କିଛି ।
ଜଳ ଯେବେ ପିଉଅଛ ମୁଖେ ତୁଳାଦେଇ
ଏଥିର କାରଣ କହ ଆମ୍ଭଙ୍କୁ ବୁଝାଇ ।
ଶୁଣି ତୁଳାମୁହାଁ କାଙ୍କ କରଇ ଉତ୍ତର
ଆମ୍ଭେ ଏକ ଧର୍ମ ଆତ୍ମା ଶୁଣ ଜଳଚର ।
କେବଳ ମାତ୍ର ଆମ୍ଭର ଅଟେ ଜଳପାନ
ଜଳଛଡ଼ା ଅନ୍ୟ କିଛି ନ କରୁ ଭୋଜନ ।
ଜଳ ସଙ୍ଗରେ ବହୁତ କୀଟ ଥାନ୍ତି ରହି
ନ ପୁଣ ଆମ୍ଭ ଉଦରେ ପଶାନ୍ତି ସେ ଯାଇ ।
ସେଥିପାଇଁ ତୁଳା ଦେଇ ଜଳପାନ କରୁ
ତୁଳାମୁହାଁ କାଙ୍କ ନାମ ହେଲା ସେ ହେତୁରୁ ।
ଏହା ଶୁଣି ଜଳଜୀବେ ହୋଇ ଅତି ତୋଷ
କ୍ରମେ କ୍ରମେ ତାହାଠାରେ କରିଲେ ବିଶ୍ୱାସ ।
ତହୁଁ ନିର୍ଭୟରେ ସର୍ବେ କଲେ ବିଚରଣ
ଏହିରୂପେ ବହିଗଲା କେତେଦିନ ଜାଣ ।
ଏକଦିନେ କାଙ୍କ ହୋଇ ବିରସ ବଦନ
ବୋଇଲା ଏପରି ଜଳଜନ୍ତୁ ସନ୍ନିଧାନ ।
ତୁମ୍ଭମାନଙ୍କ ନିକଟୁ ହେଉଛି ଅନ୍ତର
ଏବେ ସୁଖେ ରହିଥାଅ ଆହେ ଜଳଚର ।
ଶୁଣି ଜଳଚରମାନେ ହୋଇଣ ବିରସ
ବୋଇଲେ ତୁମ୍ଭ ନିକଟେ କାସ କଲୁ ଦୋଷ ।
ସେଥିପାଇଁ ଛାଡ଼ି ତୁମ୍ଭେ କରୁଛ ଗମନ
ଶୁଣି ତୁଳାମୁହାଁ କାଙ୍କ ବୋଇଲା ବଚନ ।

ତୁମ୍ଭମାନଙ୍କୁ ମନରୁ ନ ପାରେ ମୁରୁଛି
ଅକର୍ତ୍ତବ୍ୟ ପଡ଼ ଯିବା ଏଠାରୁ ଯାଉଛି ।
ଅପାଳକ ହେବ ଆଉ ଅଳପ ଦିନରେ
ଏ ହ୍ରଦ ଜଳ ଶୁଖିବ ଜାଣ ସମୂଳରେ ।
ଜଳ କେବଳ ଅଟଇ ଆମ୍ଭର ଆହାର
ସେଥିପାଇଁ ଯାଉଅଛୁ ମାନସରୋବର ।
ସେ ଜଳ ଗଭୀର ପୁଣି ଅତ୍ୟନ୍ତ ନିର୍ମଳ
ସୁସ୍ୱାଦୁରେ ଯାତକୋଶ ନୁହେ ସମତୁଲ ।
ବାଲୁକାମୟ ତା ତଟ ନୁହଇ କାଦୁଅ
ସେ ସ୍ଥାନେ ରହିଲେ ସୁଖ ହେବ ଅତିଶୟ ।
ଜୀବମାନେ ତାହା ଶୁଣି ହୋଇଲେ ବିରସ
ବୋଇଲେ ଆମ୍ଭମାନଙ୍କ ଦଶା ହେବ କିସ ।
ଜଳ ଶୁଖିଲେ ସରବେ ପାରିବୁ କି ରହି
ଦୟାକରି ଏ ବିପଦୁଁ ବାରେ କର ସାହି ।
ତୁମ୍ଭେ ସୁଦୟା ନ କଲେ ଏ ସ୍ଥାନରେ ପଡ଼ି
ଜଳଚରା ସର୍ବେ ମରି ନଷ୍ଟେଁ ଯିବୁ ସଡ଼ି ।
ଏହା କହି ଜୀବମାନେ ପଡ଼ିଲେ ଚରଣେ
ବୋଇଲେ ତୁମ୍ଭେ ସମର୍ଥ ଶରଣ ରକ୍ଷଣେ ।
ତୋଷହୋଇ ତାଙ୍କୁ ବୋଲେ କେଉଁପରିନେବା
ଜଣ ଜଣକରି ତହିଁ ଥୁଡ଼ଣ ଆସିବା ।
ସମସ୍ତେ ବୋଇଲେ ମୋତେ ନେଉଥିଲ ଆଗ
ଏହି ପରକାରେ ତହିଁ କଲେ ଗୋଳଯୋଗ ।
ତାଙ୍କ ସୁଯୋଗ ପାଇଣ ଅଙ୍ଗରେ ସ୍ଥାପିଣ
ମହାଅରଣ୍ୟକୁ ନିଏ ଉଡ଼ି ଜଣ ଜଣ ।
ବୃକ୍ଷରେ ବସି ତାହାକୁ ଆହାର କରଇ
ପୁଣି ସରୋବରୁ ଆଉ ଜଣକୁ ନିଅଇ ।
ଏହିରୂପରେ ବିଶ୍ୱାସ ଦେଖାଇ ତାହାଙ୍କୁ
ଉଦରସ୍ଥ କଲା ନେଇ ସକଳ ଜୀବଙ୍କୁ ।
ସର୍ବଶେଷକୁ ରହିଲା ଗୋଟିଏ କର୍କଟ
ତାକୁ ମଧ୍ୟ ନେଇଗଲା ସେହି ଡାଙ୍କଖଣ୍ଡ ।
ଯେଉଁ ବୃକ୍ଷଡାଳେ ବସି କରେ ସେ ଭୋଜନ
କଙ୍କଡ଼ାକୁ ମଧ୍ୟ ନେଇଗଲା ସେହି ସ୍ଥାନ ।
ସେ ବୃକ୍ଷମୂଳରେ ଅସ୍ଥି ଦେଖି କୁଡ଼ କୁଡ଼
କଙ୍କଡ଼ା ଆପଣା ମନେ ବିଚାରିଲା ଦୃଢ଼ ।
ଏହି ଭୁଳାମୁହାଁ ଡାଙ୍କ କରି କୂଟାଚାର
ସର୍ବ ଜଳଜନ୍ତୁ ଆଣି କଲାଣି ଆହାର ।
ମୋତେ ମଧ୍ୟ ଏ ସ୍ଥାନରେ କରିବ କବଳ
ଏହା ବିଚାରି ମାରିବା କରିଲା କୌଶଳ ।
ତାର ଦୁଇବାହୁ ଦୃଢ଼େ ଛନ୍ଦିଲା ତଣ୍ଟିରେ
ତାଙ୍କ ମୁଣ୍ଡ ଛିଡ଼ିଯାଇ ପଡ଼ିଲା ତଳରେ ।
ଏ ଶକୁନ ଭୁଳାମୁହାଁ ଡାଙ୍କ ପରକାର
ରେ ସୁତ କୌଶଳେ ବଂଶ କରିବ ସଂହାର ।
ଆରେ ବାବୁ ଏହା କଥା କଲେ ତୁ ବିଶ୍ୱାସ
ନିଶ୍ଚୟ କରିବ ଏହୁ ସମୂଳେ ବିନାଶ ।
ସର୍ବଶେଷେ ଆପେ ମଧ୍ୟ ହୋଇବ ନିଧନ
ଏଥିରେ କହୁଛି ମିଥ୍ୟା ନାହିଁରେ ନନ୍ଦନ ।
ବେଳ ଥାଉଁ ଥାଉଁ ଏବେ କର ତୁ ଉପାୟ
ଏ ମହାସଙ୍କଟୁ ନିଷ୍ଟେଁ ତରିବୁ ତନୟ ।
ସାକ୍ଷାତରେ ବେନି କର୍ଣ୍ଣେ ଶୁଣିଅଛୁ ଯାହା
ଆନ କି ହୋଇବ କେବେ ଆରେ ବତ୍ସ ତାହା ।
ସିଂହମୁଖା ଶୃଗାଳର କଥା ଭବିଷ୍ୟତ
ସଞ୍ଜୟଙ୍କୁ ପୁଛି ସେହୁ କରିବ ବ୍ୟକତ ।
ଶୃଗାଳ ଧରଣୀ ନେତ୍ର ଫୁଟି ଯାଇଥିଲା
ସାକ୍ଷାତେ ଦେଖିଲ ପୁଣି ତା ନେତ୍ର ପାଇଲା ।
ଏ ସର୍ବ ଶୁଣି ଶକୁନି ବୋଇଲା ବଚନ
ତୁତ ବୁଢ଼ା ଶୁଣିଥିଲୁ ନୋହିଲା ଲୋଚନ ।
ଏହି କାରଣରୁ ମୋତେ ହେଉଅଛି ଜଣା
ଯାହା ତୁ କହୁଛୁ ସବୁ ମନର କଳ୍ପନା ।
ଆହେ କୁରୁପତି ତୁମ୍ଭେ ଶୋଚନା ନ କର
ବାଇ ଚେଷ୍ଟା ହୋଇ କହେ ପିଅର ତୁମ୍ଭର ।
କାକ ଶ୍ୱାନ ଚଣ୍ଡାଳରେ ଯେ ହୁଏ ମିଳନ
ତାଙ୍କ ସ୍ୱଭାବ ଲଭନ୍ତି ସେହି ଯେ ରଜନ ।
ସାମାନ୍ୟ କଥାକୁ ଶୁଣି କରିଥାନ୍ତି ଗଣ୍ଡି
ସମସ୍ତେ ପଡ଼ିଲେ କହି ଧରନ୍ତି ସେ ତଣ୍ଡି ।
ଏହି ଅନ୍ଧବୁଢ଼ା ମଧ୍ୟ ସେହି ପରକାର
ଏହାର କଥାରେ କେହି ବିଶ୍ୱାସ ନ କର ।
ଏହି ପରକାରେ ଶୁଣି ଅନ୍ଧ ନରପତି
ବୋଇଲେ ତୋ ମନ୍ତ୍ରୀପଣେ ଦେଲୁ ଏ ଦୁର୍ଗତି
ତୋର ବଂଶ ମରାଇଛି ଦୁର୍ଯ୍ୟୋଧନ ମାନି
କୂଟେ ତା ବଂଶ ମରାଇ ଫୁଟିବୁ ଶକୁନି ।
ବଂଶମର ବୁଦ୍ଧି ତାକୁ ଦେଉଛୁ ପାମର
ସତ୍ୟକଥା ଭଣ୍ଡ ବୋଲି କହୁଛୁ ଡଗର ।

ଆରେ ଶକୁନି ତୁ ମଧ୍ୟ ରଣେ ଯିବୁ ନାଶ
କାଳେ କାଳେ ଏ ମହୀରେ ରଖିଲୁ ଅଯଶ ।
ଏ କଥା ଶୁଣି ଶକୁନି କହିଲା ଉତ୍ତର
ତୁମ୍ଭେ ତେରଜଣ ପଣ୍ଡ ହୋଇଛ ଅମର ।
ପାଣ୍ଡବଙ୍କୁ ଦେନି ଏବେ ରାଜ୍ୟ କର ଭୋଗ
ତୁମ୍ଭଙ୍କୁ ଶୃଗାଳ ପରା କହୁଅଛୁ ଯୋଗ ।
ଆରେ କୁଳକ୍ଷୟ ଅନ୍ଧ ଥାଉ ତୋ ବିଚାର
ଏବେ ଏ ସ୍ଥାନରୁ ଚଳ ନଗରେ ସତ୍ୱର ।
ପୁଣିହିଁ ବୋଲେ ଶକୁନି ଶୁଣ ଧୃତରାଷ୍ଟ୍ର
ବାତ୍‌ଦେଲେ ହେଲାକଥା ହୋଇଯାଏ ନଷ୍ଟ ।
ନ ପାରିବାର ଲୋକର ଏ ସିନା ବିଧାନ
ଲଗ୍ନଭଙ୍ଗା ଅଟନ୍ତି ଯେ ସିନା ପାପୀଜନ ।
ଆସ୍ଥାନ ମଣ୍ଡଳୀଯାକେ ଗଲେ ସବୁ ଦୁଷ୍ଟ
ହଲେ ହସ୍ତ ମାରେ ଧର୍ମ ସୁତ ଧୃତରାଷ୍ଟ୍ର ।
ସଞ୍ଜୟ ବୋଇଲା ରାଜା ନ ଭାଳ ତୁ ଆନ
ଅବଶ୍ୟ ଭୁଞ୍ଜିବା ସିନା କପାଳ ଲିଖନ ।
ଆସ୍ଥାନରୁ ଉଠିଗଲେ ତହୁଁ ଧୃତରାଷ୍ଟ୍ର
ବୋଇଲେ ବୃଦ୍ଧକାଳକୁ ହେଲା ପୁତ୍ରକଷ୍ଟ ।
ଜୟ ତୁ ମଧୁସୂଦନ ଦେବଙ୍କ ମୂର୍ଚ୍ଛନା
ଜୟ ଜୟ ତୁ ମାଧବ ସକଳ ଧାରଣା ।
ଜୟ ଜୟ ଦୀନବନ୍ଧୁ ପତିତପାବନ
ଶାରଳା ଦାସ ପଶଇ ତୋ ପାଦେ ଶରଣ ।

---

## ବୀର ହନୁମାନଙ୍କୁ ଆମନ୍ତ୍ରଣ ନିମନ୍ତେ ଭୀମସେନଙ୍କର ଗମନ ଓ ଅପମାନ

ଜନ୍ମେଜୟ ମନୁରାଜା ମହାବଂଶଧର
ହେ ଅଗସ୍ତି ମୁନିବର ପ୍ରସାଦୁ ତୁମ୍ଭର ।
ମହାଭାରତ ଆଖ୍ୟାନ କଲି ମୁଁ ଶ୍ରବଣ
ତେଣୁକରି ଚିତ୍ତ ମୋର ହୋଇଲା କାରଣ ।
ଧୃତରାଷ୍ଟ୍ର ଚଳିଗଲେ ପାଇ ଅପମାନ
ତଦପରେ କେଉଁ କାର୍ଯ୍ୟ କଲେ ଜନାର୍ଦ୍ଦନ ।
ସେହି କଥା ଶୁଣିବାକୁ ବଳଇ ମାନସ
ତାହା ଶୁଣି କହନ୍ତି କୁମ୍ଭମୁନି ଶିଷ୍ୟ ।
ବିଜେ ଯୁଧିଷ୍ଠିର ଇନ୍ଦ୍ରପ୍ରସ୍ଥର ଆସନ
ଦିନସ୍ତେ ପୁଚ୍ଛା କରନ୍ତି ଶୁଣ ଜନାର୍ଦ୍ଦନ ।
ସ୍ଥାନବଳ ଧନବଳ ଦଳବଳବନ୍ତା
କୌଣସି ଗୁଣରେ ମୁହିଁ ନୁହଇ ଶକତା ।
ଧନ ଆଗମେ ଅକ୍ଷମ ଅଟେ ମୁଁ ଯୁକତ
ତୁମ୍ଭେ ଜଗନ୍ନାଥ ଆଉ ଆମ୍ଭେ ପଞ୍ଚଭ୍ରାତ ।
ସ୍ଥାନ ଆବୋରି ରହିଲେ ଧୃତରାଷ୍ଟ୍ର ସୁତେ
ମୁଁ କି ବଳବନ୍ତ ଭୀଷ୍ମ ଦ୍ରୋଣାଦି ଥାଆନ୍ତେ
ସଙ୍ଗେ ବଳବନ୍ତ ଯୋଦ୍ଧା ଅଛନ୍ତି ତାଙ୍କର
ତାଙ୍କୁ ଜିଣିବାକୁ ନାହିଁ ବୁଦ୍ଧିବଳ ମୋର ।
ବଳବନ୍ତ ହୋଇ ଆଉ କେଉଁ ଯୋଦ୍ଧା ଅଛି
ତାକୁ ନିମନ୍ତ୍ରିବା ପାଇଁ ବିଚାର ଶ୍ରୀବତ୍ସି ।
ତାହା ଶୁଣିଣ ମାଧବ ପରମ ହରଷେ
ଭୀମଙ୍କୁ ଡକାଇ ନେଲେ ଆପଣାର ପାଶେ ।
ବୋଇଲେ ଅସ୍କନ୍ଦ ବନେ ଭୀମ ଯାଅ ଆଜ
ଆପଣା ଶ୍ରୀହସ୍ତେ ଏକ ଅର୍ଘ୍ୟଥାଳ ସାଜ ।
ମହାବୀର ହନୁମାନ ଅଛନ୍ତି ସେ ବନେ
ତାହାଙ୍କୁ ତୁ ନେଇଆସ ଯାଇଣ ବହନେ ।
ଶୁଣି ବୃକୋଦର କରେ ନବେଶିଣ କର
ଅସ୍କନ୍ଦ ବନକୁ ବେଗେ ହୋଇଲା ବାହାର ।
ନବସହସ୍ର ନଅଶ ଯୋଜନ ସେ ବାଟ
ଭୀମସେନ ଚଳଯାଏ ଗଣ୍ଡୁକୀର ତଟ ।
ହନୁମନ୍ତ ଲମ୍ବକର ଚଳଇ ପାବନ
ହନୁ ସେ କଥା ଜାଣିଲେ ନିଜ ଲମ୍ବ ଦେନି ।
ବିଚାରିଲେ ଆସେ ଭୀମ ନିମନ୍ତ୍ରିବ ମୋତେ
ଗୋବିନ୍ଦ ପେଷିଲେ ତାକୁ ଯୁଦ୍ଧର ନିମନ୍ତେ ।
କେତେଦିନେ ଆସିବ ସେ ଯିବ କେତେଦିନେ
ଯୁଦ୍ଧକୁ ଦୁର୍ବଳ ହେବ ଆହାର ବିହୁନେ ।
ଏମନ୍ତ ବିଚାରି ହନୁ ଆସିଲାକ କ୍ଷେପି
ତେର ସହସ୍ର ଯୋଜନେ ଗଣ୍ଡୁକୀରେ ବ୍ୟାପି ।
ଅମ୍ଳାନ ପର୍ବତ ତଳେ ପଡ଼ିଛି ବିପଥ
ତହିଁ ଜରାବସ୍ଥାରୂପେ ରହେ ହନୁମନ୍ତ ।
ଲାଙ୍ଗୁଳ ପାଦେ ଆବୋରିଲା ତହିଁ ପଥଯାକ
ପ୍ରାଣଗଲା ପ୍ରାୟ ପଡ଼େ ଯେହ୍ନେ ଅତି ଦୁଃଖ ।
ଯାଉଁ ଯାଉଁ ଭୀମସେନ ତା ନିକଟେ ଭେଟି
ବୋଲେ ବାଟେ ନିଦ୍ରାଯାଉଛୁରେ କପିଗୋଟି
ମୁହିଁ ଯାଉଅଛି ଜାଣ ଅସକନ୍ଦ ବନ
ହନୁମନ୍ତଙ୍କୁ ନେଇଣ ଆସିବି ବହନ ।

ପାଣ୍ଡବ କୌରବଙ୍କର ହୋଇଲା ଅପ୍ରୀତି
ପାଣ୍ଡବ ଥାଟରେ ସେନ୍ହି ହେବ ସେନାପତି ।
ଭୀମ କଥା ଶୁଣି ହନୁ କହେ ମୁଁ ଅଶକ୍ତ
ଆଡ଼ ହୋଇ ନ ପାରଇ ପ୍ରାଣ କଣ୍ଠାଗତ ।
ମୋର ବଳେ ମୁହିଁ ଆଡ଼ହୋଇ ନ ପାରଇ
କାର୍ଯ୍ୟବନ୍ତ ପୁରୁଷ ତୁ ଯାଅ ମୋତେ ଡେଇଁ ।
ଭୀମ ବୋଇଲେ ଅଜ୍ଞାନ ପ୍ରାୟେ କଥା କହୁ
ଦେହରେ ଜୀବନ ଥିଲେ ଡେଇଁଯିବି କାହୁଁ ।
ଜ୍ୟେଷ୍ଠ ହେଲା କି ଅଥବା କନିଷ୍ଠହିଁ ହେଉ
ଦେହେ ଚରଣ ଲାଗିଲେ କ୍ଷୀଣ ହୁଏ ଆୟୁ ।
ମନୁଷ୍ୟ ପଶୁ ଅଥବା ପତଙ୍ଗାଦି ହେଉ
ଯତ୍ର ଜୀବ ତତ୍ର ଶିବ ଶାସ୍ତ୍ର ବାକ୍ୟ ଏହୁ ।
ଯଦ୍ୟପି କାହାର ହେଉ ଅଙ୍ଗେ ପ୍ରାଣ ଥିଲେ
ଅର୍ଦ୍ଧାୟୁ ଭୁଞ୍ଜଇ ତାର ତାକୁ ଡେଇଁଗଲେ ।
ବନ୍ଧନ ଜୀବର ଯେହ୍ନେ ଡଅଇଁ ଦଉଡ଼
ସର୍ପ ହୋଇ ପରଜନ୍ମ ସେହ୍ନଥାଏ ପଡ଼ ।
କାର୍ଯ୍ୟ ଅକାର୍ଯ୍ୟରେ କେହି ଡିଙ୍ଗାଇଲେ ନର
ଦୋଷ ହୁଏ କଲେ ଯେତେ ପୁଣ୍ୟ ଶିରଚ୍ଛେଦ
ପର ଶୃଙ୍ଗାର ଦେଖିଣ ଡଙ୍ଗେ ଯେଉଁ ପ୍ରାଣୀ
ଲଙ୍ଗ ଭଗ୍ନ ଦୋଷପାଏ ପ୍ରତ୍ୟକ୍ଷରେ ଜାଣି ।
ହେ କପି ଜୀବନ ଅଛୁ ତୋହର ସେ ହୃଦେ
ଜ୍ଞାନ ଥାଉଁ ଡେଇଁଣ ମୁଁ ପଡ଼ିବି ପ୍ରମାଦେ ।
ଏମନ୍ତ ଶୁଣି ବୋଇଲା ସେ ବୃଦ୍ଧ ମର୍କଟ
ଡେଇଁ ଯେବେ କି ନ ଯିବୁ ଆଡ଼ଯାଅ ବାଟ ।
ଭୀମସେନ ବୋଇଲେକ ଜାଣେ ସର୍ବକଥା
କ୍ଷତ୍ରୀ ବାଟ ଛାଡ଼ିଦେବା ନୁହଇ ବ୍ୟବସ୍ଥା ।
ହନୁ ବୋଲେ ନ ଡେଇଁବୁ ଆଡ଼ ନ ହୋଇବୁ
ତେବେ ମୋତେ ଆଡ଼କରି ଚାଲିଯାଅ ବାବୁ ।
ଏ କଥା ଶୁଣି ସାନନ୍ଦ ହୋଇଲା ପାବନ
ଗଦାକୁ ଦକ୍ଷିଣ କରେ ଧଇଲାକ ପୁଣି ।
ବାମକରରେ ଲାଙ୍ଗୁଡ଼ ଧରିଣ ସେ ଟୋଳ
ଲାଙ୍ଗୁଳ ଗୋଟିକ ତାର ନ ପାରିଲା ଟଳ ।
ଗଦା ଅର୍ଦ୍ଧ୍ୟପାଦ ପୁଣି ଥୋଇ ଭୂମିଗତେ
ଦୋନିଭୁଜେ ଟୋଳେ ତାକୁ ବଳର ସହିତେ
ଟୋଳି ନ ପାରିଲା ଭୀମ ତାର ପରିଯନ୍ତେ
ଶୋଣିତ ଫୁଟି ବାହାରେ ତାର ଲୋମେ ଲୋମେ

ବାଉନ ବାଉନ କର ଗଦା ଧରି ହସ୍ତେ
ତାଡ଼ିନ୍ତେ କମ୍ପିଲା ମେରୁ ପୃଥିବୀ ସହିତେ ।
କଠୋର ଦେଖିଣ ଭୀମ ବିସ୍ମରଇ ମନ
ନିଶ୍ଚେ ଜାଣିଲି ଅଟନ୍ତି ଏହି ହନୁମାନ ।
ବୃକୋଦର ବଳ ମୋର ସହି ନ ପାରଇ
ଲୋମ ନାସିକାରୁ ମୋର ରୁଧିର ବହଇ ।
ପୃଥିବୀ ଯା ରସାଗତ ନ ହୋଇଲା ଧର୍ମେ
ଆଉ କେ ସୃଜନ ଅଛୁ ମୋର ପରାକ୍ରମେ ।
ସ୍ୱାମି। ପୃଥିବୀ ଅନଳ ଯେବେ ଭ୍ରମନ୍ତି ମେରୁ
ବୃକୋଦର ମୂର୍ତ୍ତି ଘାତ କେହୁ ସହିପାରୁ ।
ଭୀମର ଅବସ୍ଥା ଦେଖି ଅଞ୍ଜନାର ସୁତ
ବୋଇଲେ ଏତେ ପଥ ତୁ ଆସୁ କି ନିମିତ୍ତ ।
ଭୀମ ବୋଲେ ବେନିପକ୍ଷ କୌରବ ପାଣ୍ଡବ
ଅନ୍ୟ ଅନ୍ୟ ହୋଇଛନ୍ତି ସମର ହୋଇବ ।
ପାଣ୍ଡବଙ୍କ ବଳ ଯହୁଁ ହୋଇଲା ନିର୍ଜନ
ତୋତେ ନେବାକୁ ପେଷିଲେ ମୋତେ ଭଗବାନ
ନିଜେ ଶ୍ରୀକୃଷ୍ଣ ହୋଇବେ ଅର୍ଜ୍ଜୁନ ସାରଥି
ପାଣ୍ଡବ ବଳରେ ତୁମ୍ଭେ ହେବ ସେନାପତି
ଭୀମସେନର ମୁଖରୁ ଏହିକଥା ଶୁଣି
ହନୁମନ୍ତ ହସିଲା ଯେ ନାକେ ଦେଇ ପାଣି ।
ଶୁଣ ଆରେ ଭୀମସେନ ତ୍ରେତାଯୁଗ କଥା
ସତଶ୍ରୀ ନାମେ ରାବଣ ନାରାୟଣ ବାର୍ତ୍ତା ।
ଦଣ୍ଡକାରଣ୍ୟେ ରାବଣ ହରିଏ ବୈଦେହୀ
ଲଙ୍କାକୁ ବେଢ଼ିଲେ ରାମ କପିବଳ ନେଇ ।
ଜାମ୍ବବର ମନ୍ତ୍ରିପଣ ସୁଗ୍ରୀବର ବୁଦ୍ଧି
ପର୍ବତେ ବାନ୍ଧିଲୁ ସର୍ବେ ଅଗାଧ ପୟୋଧି ।
ଶତେ ଚଉବଂଶ ଯୁଣ ବନ୍ଧ ଅଟେ ଦୀର୍ଘ
ବତିଶ ଯୋଜନ ପ୍ରସ୍ତ ଦ୍ୱାଦଶ ଉତ୍ସର୍ଗ ।
ରାବଣ ଲଙ୍କାରେ ଆମ୍ଭେ ସୁବଳ ପର୍ବତେ
ଚବିଶ ଦିବସ ଯୁଦ୍ଧ ହେଲା ତା ସହିତେ ।
ବତିଶ ଅର୍ବୁଦ ସୈନ୍ୟେ ଆସେ ଦଶାନନ
ପୂରିଲା ପୃଥିବୀ ଶଏ ବତିଶ ଯୋଜନ ।
କିସ ସମର ତୁମ୍ଭର ଏ ଭାରତ ଯୁଦ୍ଧ
ତାହା ମୋତେ କହୁଅଛ କରିବାକୁ ସାଧ ।
ତୁହି କହୁ ସେନାପତି ପଣେ ଯିବୁ ଯେନ
ଉଭୟ ବଳରେ କେତେ ହୋଇବ ସଇନ୍ୟ ।

ଭୀମସେନ ବୋଇଲେକ ଶୁଣ ରଣ ଷଡ଼ଣୀ
ହନୁମନ୍ତ ହାସ୍ୟକଲେ ଭୀମକଥା ଶୁଣି ।
ବୋଇଲେକ ଆଉ ତୁମ୍ଭେ କାହିଁପାଇଁ ଯିବ
ଏହିଠାରେ ଥାଇ ତୁମ୍ଭ ଶତ୍ରୁ ସଂହାରିବ ।
ଲଞ୍ଜା ବଢ଼ାଇଣ ମୁହିଁ ଦେବଇଁ ତୁମ୍ଭଙ୍କ
କ୍ଷଣକେ ବାନ୍ଧିବ ଅହୋବଳ ସଇନକ ।
ଏକାବେଳକେ ଗୃପିବ ସବୁଙ୍କୁ ପାତାଳେ
ନିଶ୍ଚିନ୍ତେ ବସିବେ ଯାଇ ସମର ମଣ୍ଡଳେ ।
କସ ସେ ତୁମ୍ଭର ବଳ କେତେକ ମାତର
କେଉଁ ପ୍ରୟୋଜନ ଅଛି ଯିବାକୁ ମୋହର ।
ପୁଣି ବୋଇଲେ ଅଇଲୁ ଏତେ ଦୁଃଖେ ପଡ଼ି
କାର୍ଯ୍ୟ ନ ପାଇ କେମନ୍ତେ ଚଳିବୁ ବାହୁଡ଼ି ।
ଏହା ବୋଲି କାଛେଟାରୁ ଦଶୀନାଡ଼େ ଘେନି
ବୋଇଲେ ହଅ ତୁ ନେଇ କୃଷ୍ଣ ଫାଲଗୁନ ।
ମୋହର ସଦୃଶ କରି ପିଭୁଲଏ ସର୍ଜ
ଏହା ନେଇ ଥୁଅ ପାର୍ଥ ନନ୍ଦିଘୋଷ ଧ୍ୱଜ ।
କ୍ଷଣେ କ୍ଷଣେ ଆନ ମୂର୍ତ୍ତି ହେଉଥିବ ତାର
କପିକେତନ ନାମରେ ହୋଇବ ପ୍ରଚୁର ।
ଅସ୍ତ୍ର ଶସ୍ତ୍ର ନ ମିଳବ ତାହାରହିଁ କତ
ଦୂରରୁ ଥାଇ ହାସିବେ ରଥୀ ମହାରଥୀ ।
ଭୀମସେନ ବୋଇଲେ ମୁଁ କରିବି କେମନ୍ତ
ଏହା ନେଲେ ଉପହାସ ପାଇବ ବହୁତ ।
ଅନେକ ଯତ୍ନେ ପେଷିଲେ ମୋତେ ବାସୁଦେବ
ଆମ୍ଭ ବନ୍ଧୁମାନେ ସ୍ୱାର ଏତେକ ଗରବ ।
ଜିଣିବା କି ନ ଜିଣିବା ଆମ୍ଭେ ତ ସମର
ଏହା ପାଶକୁ ପେଷିଲେ କପାଁ ଦାମୋଦର ।
ଘେନ ବୋଲି ହନୁମନ୍ତ ଛଡ଼େ ସୂତାନାଡ଼ି
ଭୀମସେନ ମୂର୍ଚ୍ଛା ହେଲା ହୃଦେ ସୂତା ପଡ଼ି ।
ହନୁ ବୋଇଲେ ବାବୁ ତୁ ହେଲୁ ଅସାଷ୍ଟମ
ବଜ୍ରକାଛେଟି ନିନ୍ଦିଲୁ ମନେ ବହି ଭ୍ରମ ।
ପ୍ରତି ହାରତେ ହଅଇ ନାଡ଼େକ ଛିଣ୍ଡାଇ
ଏରୂପେ କାଛେଟି ଦଶୀ ଅଧେ ମୋର ନାହିଁ
ଭାରତ ଯୁଦ୍ଧ ହୁଅଇ ନୂଆଁବେଳେ ପୃଥ୍ୱୀ
ପ୍ରତି ଭାରତରେ ବସି ନ୍ୟନ୍ତି ଦାଶରଥି ।
ତ୍ରେତ୍ରର ହାରତେ କେତେ ଦେବ ଦେହତ୍ୟାଗୀ
ଏହି ଦେହେ ଏ କାଛଟା ମୋର ଅଛି ଲାଗି ।

ମୋର କାଛଟା ନିନ୍ଦିଲୁ ତୁହି ହୃଦଗତେ
ଜଗତର ନିନ୍ଦନୀୟ ନୁହେଁ କଦାଚତେ ।
ଯାଅରେ ମାରୁତି ତାକୁ ମସ୍ତକରେ ତୋଳି
ଏହା ତଦନ୍ତ ଜାଣନ୍ତି ପ୍ରଭୁ ବନମାଳୀ ।
ସେ ସୂତା ନାଡ଼କ ଘେନି ଚଳେ ଭୀମସେନ
ଅମ୍ଳାନ ବନକୁ ଗଲେ ବୀର ହନୁମାନ ।
କୋଇନ୍ତା ନନ୍ଦନ ତହୁଁ ଗଲେ ଅତିବେଗେ
ପ୍ରବେଶ ହୋଇଲେ ଯାଇ ନାରାୟଣ ଆଗେ ।
ଗୋବିନ୍ଦ ବୋଇଲେ କପାଁ ହରସ ତୋ ମନ
ନ ଆସେ କି ଅନ୍ୟ ଯୁଦ୍ଧ ମଣି ହନୁମାନ ।
ଭୀମ ବୋଇଲେ ହାରନ୍ତେ ପଛେ ନାରାୟଣ
ଗର୍ବୀ ନିକଟେ ପେଷିଲୁ କପାଁ ଅକାରଣ ।
ଯେମନ୍ତେ ଗର୍ବ କରଣ କହିଲା ସେ କଥା
ଭୀମର ବଳେ ଏହା କି କେବେ ସୁହାଯାନ୍ତା ।
ହରି ହେ ଆମ୍ଭର ହାଇ ପୁଣି ତୁମ୍ଭ ଆଜ୍ଞା
ସେହି ନିମନ୍ତେ ସହିଲି ତାହାର ପ୍ରତିଜ୍ଞା ।
ସ୍ୱାମି ଇନ୍ଦ୍ର ଦେବ ଯେବେ ଗର୍ବରେ କହିବ
ଭୀମ ଦେହେ ପ୍ରାଣ ଥିଲେ ତାହା କି ସହିବ ।
ସ୍ୱାମି ଯେତେ କଥା ମୋତେ କହିଲା ବିତଣ୍ଡ
ଆନ ହୋଇଥିଲେ ନିଶ୍ଚେ ମୋଡ଼ନ୍ତା ମୁଣ୍ଡ ।
ଭୀମସେନର ମୁଖରୁ ଏହିପରି ଶୁଣି
ହଦଯୁକ୍ତ ମଧୁରସୁ କୋମଳରେ ବାଣୀ ।
ତୁହି ଭୀମ ଶୁଣିନାହୁଁ ତା ବିଷୟ କେବେ
ତା ଚରିତ କହୁଅଛି ଶୁଣ କି ନା ଏବେ ।
ତ୍ରେତୟା ଯୁଗରେ ଆମ୍ଭେ ରାମଚନ୍ଦ୍ର ରୂପ
ଜାନକୀଙ୍କୁ ହରିନେଲା ରାବଣ କୌଣପ ।
ଜାମ୍ବବ ମନ୍ତ୍ରୀ ଦେଲେକ ମୋତେ ସବୁ ବୁଦ୍ଧି
ଗିରିବର ଉପାଡ଼ିଣ ବାନ୍ଧିଲୁ ବାରିଧି ।
ପର୍ବତ ଆଣ ବୋଲିଣ ବୋଇଲୁ ସେ ହାଦେ
ହରଷ ଚିତ୍ତେ ଚଳିଲେ ତହୁଁ କପିବୃନ୍ଦେ ।
ପୁଣିହିଁ ବୋଇଲୁ ଆମ୍ଭେ ସମସ୍ତେ ଯେ ଯାନ୍ତୁ
ତେରଜଣ ମାତ୍ର ଆମ୍ଭ ସଙ୍ଗତରେ ଥାନ୍ତୁ ।
ସୁଗ୍ରୀବର ନଳ ନୀଳ ଜାମ୍ବବ ସୁଷେଣ
ଶତବଳ ଅଙ୍ଗଦହିଁ ବୀର ହନୁମାନ ।
ଏହିମାନଙ୍କୁ ଲକ୍ଷ୍ମଣ ରଖିଲେ ଯତନେ
ଅଠରପଦ୍ମ ଗଲେ ଯେ ଗିରି ଆନୟନେ ।

ଚଳନ୍ତେ ବାନର ଦଳ କଳକଳା ନାଦେ
ବନ ଉପର ସକଳ ପୂର୍ଣ୍ଣ ହେଲା ନାଦେ ।
ଶୁଣି ବିରସ ହୋଇଲା ପବନ ନନ୍ଦନ
ବୋଇଲା ଜୀବନେ ଆଉ କିସ ପ୍ରୟୋଜନ ।
ଅହୋ ବଳବୀର୍ଯ୍ୟ ଥାଇଁ ହେଲି ଦର୍ପହୀନ
କ୍ଷତ୍ରିୟମାନଙ୍କ ମଧ୍ୟେ ନୋହିଲି ଲକ୍ଷଣ ।
ଶ୍ରୀରାମଚନ୍ଦ୍ରଙ୍କଠାରେ ଅବା ଦ୍ରୋହ କଲି
ସେଥିପାଇଁ ଗିରି ଆଣି ଆଜ୍ଞା ନ ପାଇଲି ।
ସ୍ୱାମି କୋପ ଯେବେ ପ୍ରାଣେ ପ୍ରୟୋଜନ କିସ
ଜୀବନ ତେଜିବା ପାଇଁ ଖାଇବଇଁ ବିଷ ।
ଲକ୍ଷ୍ମଣ ବୋଇଲେ ଶୁଣ କମଳଲୋଚନ
ବିଷ ପାନ କରି ଲଢେ ପବନ ନନ୍ଦନ ।
ତାହା ଶୁଣିଣ ଆମ୍ଭେ ଯେ କଲୁ ଆଲିଙ୍ଗନ
ବୋଇଲୁ ହନୁରେ କାହିଁ ହେଉଛୁ ଦୀନ ।
କରପତ୍ର ଯୋଡ଼ି ତହୁଁ ବୋଲେ ବାତସୁତ
ଆଜ୍ଞା ମୋତେ ନ ହୋଇଲା ଆଣି ପରବତ ।
ଆମ୍ଭେ ଯେ ବୋଇଲୁ ତୁମ୍ଭ ପାଇଅଛୁ ଦୁଃଖ
ଲଙ୍କାରେ ଅସୁର ଭୁଲେ ଯୁଝିବୁ ଅନେକ ।
ସେ ଘେନ ପର୍ବତ ଆଣି ତୋତେ ନ ବୋଇଲୁ
ଏଥିକି ମନରେ କାହିଁ ବିରସ ହୋଇଲୁ ।
ଛାଡ଼ି ଅଭିମାନ ଏବେ ଯାଅ ଏହିକ୍ଷଣି
କପିବଳ ଘେନ ଗିରି ବେଗେ ବହିଆଣି ।
ଆମ୍ଭର ବଚନ ଶୁଣି ଚଳେ ବାତଶି ।
ପର୍ବତ ଆଣିଲ ଯାଇ ବନ୍ୟମାନେ ପଶି ।
ନଳଧାଇ ତା ପର୍ବତ ଧରେ ବାମକରେ
ଅପମାନ ପାଇ ହନୁ ଗଲେ କୋପଭରେ ।
ବୋଲେ ଆରେ ନଳ ତୋତେ କେ ଅନ୍ତରଙ୍ଗା
ବନ୍ଧର ମଧ୍ୟରେ ଆଜ କରିବଇଁ ପୋତା ।
ଅପମାନ ପାଇ ହନୁ ଚଳେ ଅତି ବେଗେ
ବିଶ୍ୱରୂପ ଧରି ସେହୁ ଘୋଟେ ଶୂନ୍ୟମାର୍ଗେ ।
ବିଶ୍ୱରୂପରେ ଗଗନେ ପ୍ରକାଶନ୍ତେ କାୟେ
ପର୍ବତମାନେ ଦିଶିଲେ କଣ୍ଟକୋଳ ପ୍ରାୟେ ।
ମେରୁ ଉପାଡ଼ିବା ପାଇଁ ଉଦ୍ୟତ ହୁଅନ୍ତେ
ବ୍ରହ୍ମା ଆଜ୍ଞାରେ ଛାଡ଼ିଲ ସଂସାରର ହିତେ ।
ମନ୍ଦର ପର୍ବତେ ତହୁଁ ହେଲେ ଉପସ୍ଥିତ
ଅନେକ ବିନୟ କରି କହେ ପୁରୁହୂତ ।

ବାସବ ବଚନେ ହନୁ ତାହାଙ୍କୁ ଛାଡ଼ିଲ
ଲୋକାଲୋକ ପର୍ବତକୁ ଉପାଡ଼ି ଲଙ୍ଘଇ ।
ମାଗିଣ ଘେନଲେ ତହିଁ ତାକୁ ବୃହସ୍ପତି
ହିମବନ୍ତ ଉପାଡ଼ନ୍ତେ ମାଗିଲେ ପାର୍ବତୀ ।
ଗିରିଜାଙ୍କର ପିଅର ହନୁମାନ ଅଜା
ତାହା ଘେନ ହନୁମନ୍ତ ତାକୁ କଲେ ତେଜ୍ୟା ।
ପୁନର୍ବାର ଉପାଡ଼ନ୍ତେ ଯାଇ କପିଳାସ
ବନ୍ଦ ବନସ୍ୟେ ରଖିଲେ ତାକୁ ବିଶ୍ୱବାସ ।
ଗନ୍ଧମାଦନ ପର୍ବତ ଉପାଡ଼ନ୍ତେ ହନୁ
ଅଶ୍ୱିନୀକୁମାର ମାଗେ ଆଦିତ୍ୟଙ୍କ ସୂନୁ ।
ମହା ମହା ପର୍ବତକୁ ମାଗିଣ ଘେନନ୍ତେ
ପ୍ରଜ୍ୱଳିତ ହୋଇ ହନୁ ବିସ୍ମରିଲ ଚିତ୍ତେ ।
ବ୍ରହ୍ମାଦି ମାଗିଲେ ଏବେ ନିଶ୍ଚୟେ ମାରିବ
ନ ମାଇଲେ ରାମଚନ୍ଦ୍ର ପାଦେ ଦ୍ରୋହୀ ହେବ
ତେତିଶକୋଟି ଦେବତା ନ ଅଇଲେ ଭୟେ
ଇଚ୍ଛାଏ ଗିରି ଉପାଡ଼େ ପବନ ତନୟେ ।
ପଞ୍ଚକୋଟି ପରବତ ବସାଇଲେ ଶିରେ
ଦଶସହସ୍ର ବସାଏ ଉଭୟ କନ୍ଧରେ ।
ରୋମ ରୋମକେ ପର୍ବତ ଗୁନ୍ଥିଲ ପାବନି
ଏହିରୂପରେ ଉପାଡ଼େ ଗିରି କୋଟି ତିନି ।
ବେନିଲକ୍ଷ ଗିରି କଲା ଗଳେ ଗଳାମାଳା
ବାଇଶ କୋଟି ଜଡ଼ିଲା କଟିରେ ମେଖଳା ।
ଲାଙ୍ଗୁଳରେ ବାନ୍ଧିଲା ନେଇ ଗିରି ବେନିକୋଟି
ଶତ ଶତ ଗିରି ବାନ୍ଧେ ପ୍ରତ୍ୟେକ ଅଙ୍ଗୁଷ୍ଠି ।
ଏମନ୍ତେ ଦକ୍ଷିଣ କରେ ଅନେକ ଆଣିଲ
ଏକ ଅଙ୍ଗେ ଏତେ କରି ଘେନିଣ ଆସଇ ।
ଆମ୍ଭଙ୍କୁ ଭେଟିଲା ଆସି ବେଳ ଦଣ୍ଡ ତିନି
ଦେଖି ଆଶ୍ଚର୍ଯ୍ୟ ହୋଇଲୁ ତହୁଁ ଆମ୍ଭେ ପୁଣି ।
ବୋଇଲୁ ଅଧିକେ ଏତେ ନ ଆଣ ବୋଇଲୁ
ଆମ୍ଭ କେଉଁ ଅବଗୁଣେ କୁପିତ ହୋଇଲୁ ।
ଏକା ଯାତ୍ରିକେ ଆଣିଲୁ ଏତେକ ପର୍ବତ
ଆଶ୍ୱାସ ପ୍ରଦାନ କଲୁ କହିଣ ଏମନ୍ତ ।
ହନୁମନ୍ତ ବୋଲେ ଦେଖୁ ତୋର ଆଜ୍ଞା ନାହିଁ
ତେଣୁକରି ବପୁକ୍ଷୀଣ ହୋଇଅଛି ମୁହିଁ ।
ତୁମ୍ଭର ସୁଦୟା ଆଜ୍ଞା ଯେବେ ହୋଇଥାନ୍ତା
ଆହୁରି ପର୍ବତ ଆଣି ଭରି ଯାମଉଥା ।

ବହୁତ ଆନନ୍ଦ ହେଲୁ ଶୁଣି କଥା ତାର
ହନୁ ମହିମା କେମନ୍ତେ ଜାଣିଲୁ ରେ ବୀର ।
ହନୁ ଦେହରୁ ପର୍ବତ କପି ନେଲେ ବହି
ନଳ ବରୁଣର କରେ ବେଗେ ଦ୍ୟନ୍ତ ନେଇ ।
ବତିଶ ଯୋଜନ ପ୍ରସ୍ଥ ଦ୍ୱାଦଶ ଉତ୍ସର୍ଗ
ଶତ ଚଉବନ ଯୂଣ ବନ୍ଧର ଯେ ଦୀର୍ଘ ।
ଏକଧାନ୍ତି ପରବତେ ଏଡ଼େ ବନ୍ଧ ହେଲା
ନବଲକ୍ଷ ପରବତ ପୁଣି ଉଗୁଳିଲା ।
ବନ୍ଧର ଚରିତ ଭୀମ କହିଲ ମୁଁ ତୋତେ
ରଣକଥା ନ ସରିବ ପୁସ୍ତକ ଲେଖନ୍ତେ ।
ଲଙ୍କାଗଡ଼ ମୂର୍ଚ୍ଛିଗତ ହୋଇଲା ଯାହାକୁ
ଭାରତ ସମର କିସ ମାନ ଅଟେ ତାକୁ ।
ଏମନ୍ତ ଚରିତ କହି ଭୀମସେନ ଆଗେ
ବୋଇଲେ ନିଷ୍ଟସ୍ପୃ ନାଶ ଯାନ୍ତୁ ତାର ଲାଗେ
ପାଞ୍ଚଜନ୍ୟ ଶଙ୍ଖ ଧରି ଦେବ ଦାମୋଦର
ହନୁମନ୍ତକୁ ଡାକଲେ ନାମ ଧରି ତାର ।
ପାଞ୍ଚଜନ୍ୟ ଶଙ୍ଖ ଯହୁଁ ବାଜେ ଘୋରସ୍ୱନେ
ହନୁର ଆସନ କମ୍ପେ ଅସ୍କନ୍ଦର ବନେ ।
ଧ୍ୟାନରେ ଜାଣିଲା ସେହୁ କପିକୁଳ ଶ୍ରେଷ୍ଠ
ନାରାୟଣଙ୍କୁ ନିଷ୍ଟସ୍ପୃ ପଡ଼ିଲା ସଙ୍କଟ ।
ଦଧିମୁଖ କପି ଚୌଦଶଙ୍ଖ ସଙ୍ଗେ ଘେନି
ବାମେ ତରୁ ଦକ୍ଷେ ଗିରି ଧଇଲା ପାବନି ।
କଳକଳା ରବଦେଇ ସର୍ବ କପିବୀରେ
ଗର୍ଜି ଉଠିଲେ ସମସ୍ତେ ହନୁ ସହିତରେ ।
କ୍ଷେପିଲା ସେ ହନୁମନ୍ତ ଅସ୍କନ୍ଦର ବନୁ
ଇନ୍ଦ୍ରପ୍ରସ୍ଥରେ ପଡ଼ିଲା ବେଗେ ମନଯାନୁ ।
ଶ୍ରୀକୃଷ୍ଣଙ୍କ ପଦ୍ମପାଦେ ହୋଇ ପରଣାମି
ବୋଇଲେ କିସ ଅସାଧ ହେଲା ତୋତେ ସ୍ୱାମି
ଗୋବିନ୍ଦ ବୋଇଲେ ଶୁଣ ଲଙ୍କାଯୁଦ୍ଧକାଳେ
ଅନେକ ଦୈତ୍ୟ ମାଇଲୁ ତୋର ଭୁଜବଳେ
ଦେବତା କଷ୍ଟ ହରିଲୁ ରାବଣକୁ ଧ୍ୱଂସି
ସେ ଦେବ କହିଲେ ବ୍ରହ୍ମହତ୍ୟା ଦୋଷେ ଦୋଷି
ବ୍ରହ୍ମା ବଚନରେ ଆମ୍ଭେ କଲୁ ସିନ୍ଧୁଶଯ୍ୟା
କଂସରଭୟ ଯେକାଳେ ପାଇଲେ ବଡ଼ୋଜା
ପୁଣି ସେ ଦେବତାଗଣ ବସୁଧାକୁ ଘେନି
ଅନେକ ସ୍ତୁତି ବାଦନ କରେ ପଦ୍ମଯୋନି ।

ପିତା ବଚନରେ ରଙ୍ଗାଅବତାର ମୂର୍ତ୍ତି
ପୁତନାକୁ ଶୋଷି ପୁଣି ହେଲୁ ତ୍ରିଶାଧାଷ୍ଠି ।
ଯାମଳା ବକା ଗୃଣୁର ଆଉ ଷଣ୍ଢାସୁର
ସ୍ତ୍ରୀହତ୍ୟା ଗୋହତ୍ୟା ଆଦି କଲୁଣି ଅପାର ।
ସୋଦର ମାମୁଁ ମାଇଲୁ ଯେହୁ କଂସ କେଶୀ
ସବୁ ପାତକ ଭାରତ ଯୁଦ୍ଧେ ହେବ ଧ୍ୱଂସି ।
ଭାରତେ ଭରୋଇମଲ୍ଲ ଅଟେ ସବ୍ୟସାଚୀ
ମୁଁ ତାର ସାରଥି ହୋଇ ରଥ ବାହୁଅଛି ।
ତୋ ଆସନ ହେବ ନନ୍ଦିଘୋଷ ରଥ ଧ୍ୱଜ
ଭାର ନିବାରିବା ଆମ୍ଭେ ଦେବତାଙ୍କ କାର୍ଯ୍ୟ ।
ଶ୍ରୀକୃଷ୍ଣ ବଚନ ଶୁଣି ସାନନ୍ଦ ମାରୁତି
ବୋଇଲା ଯେ ଆଜ୍ଞା ପ୍ରଭୁ ହେଲା ମୋର ପ୍ରୀତି
ଦଧିମୁଖ କପିବଳ ଚୌଦଶଙ୍ଖ ଘେନି
ବାରୁଣାବନ୍ତ ପର୍ବତେ ରହିଲେ ପାବନି ।
ନମସ୍ତେ ନମସ୍ତେ ପ୍ରଭୁ ଅନାଦି ପୁରୁଷ
ଅପାର ମହିମା ତୋର ଅଟଇ ଅଶେଷ ।
ତୁମ୍ଭର ଯେ ଇଚ୍ଛା ଆହେ ଇଚ୍ଛାମୟ ହରି
ଶାରଳାଦାସ ସେ ପାଦେ ଅଛି ଅନୁସରି ।

---

## କର୍ଣ୍ଣକୁ ଆଣିବା ନିମନ୍ତେ କୁନ୍ତୀଙ୍କର ଅଙ୍ଗଦେଶେ ଗମନ ଓ ନୀଳଭୁଜବାଣ ଦକ୍ଷିଣା ସ୍ୱରୂପ ଆନୟନ

ଅଗସ୍ତିଙ୍କ ପାଦଧରି ମନୁ ଦଣ୍ଡଧର
ବୋଲନ୍ତି କୃତାର୍ଥ ହେଲି ଶୁଣି ତୁମ୍ଭ ଗିର ।
ତଦପରେ ଜଗନ୍ନାଥ କେଉଁ କୃତ୍ୟକଲେ
ହନୁ ଆସି ବାରୁଣାର ପର୍ବତେ ରହିଲେ ।
ସେହି କଥା ଶୁଣିବାକୁ ବଳଇ ମୋ ଚିତ୍ତ
କହନ୍ତି ଅଗସ୍ତି ଋଷି କୁମ୍ଭମୁନି ସୁତ ।
କୃଷ୍ଣାର୍ଜ୍ଜୁନ ଯୁଧିଷ୍ଠିର ରହିଛନ୍ତି ବସି
ସନ୍ନିଧେ କୋଇନ୍ତାଦେବୀ ପ୍ରବେଶିଲେ ଆସି
ବୋଇଲେ ସେ ଆରେ ବାବୁ ଶୁଣ ତୁ ଶ୍ରୀରଙ୍ଗ
ସଂଗ୍ରାମ ହୋଇବ ସନ୍ଧି ନ ହୋଇଲା ଯୋଗ ।
ଗୋବିନ୍ଦ ବୋଇଲେ ବହୁ ବିନୟେ କହିଲି
ଦୁଇକୁଳ ଯୁଦ୍ଧ ଯେହ୍ନେ ନ ବାଧିବ ବୋଲି ।
ମାନଗୋବିନ୍ଦ ବୋଲିଣ ଅଟେ ଯାର ନାମ
ଅହର୍ନିଶି ବୋଲଇ ସେ କରିବ ସଂଗ୍ରାମ ।

ଏମନ୍ତକଥା ଶୁଣି ପୁଣି କୋଇନ୍ତା ବୋଇଲେ
କଏ ସଂଗ୍ରାମ କରିବ କାହା କାହା ତୁଲେ ।
ଗୋବିନ୍ଦ ବୋଇଲେ ଦୁର୍ଯୋଧନକୁ ଯୁଧିଷ୍ଠି
ଭୀମ ସଙ୍ଗେ ଦୁଃଶାସନ କର୍ଣ୍ଣକୁ କିରୀଟୀ ।
ବିକର୍ଣ୍ଣେ ନକୁଳ ସହଦେବଙ୍କୁ ଶକୁନି
ଆଉ ଆଉମାନେ ସର୍ବେ ହେବେ ଅନ୍ୟେ ଅନ୍ୟ
କୋଇନ୍ତା ବୋଇଲେ କର୍ଣ୍ଣ ମୋର ଜ୍ୟେଷ୍ଠପୁତ୍ର
ତା ସଙ୍ଗେ କରିବ ରଣ ଏ ବଡ଼ ବିଚିତ୍ର ।
କର୍ଣ୍ଣ ଅର୍ଜ୍ଜୁନ ଏ ଦୁହେଁ ଜାତ ମୋର ଗର୍ଭୁଁ
କେଉଁରୂପରେ ତାହାକୁ ନାଶିବୁ ରେ ବାବୁ ।
ଗୋବିନ୍ଦ ବୋଇଲେ ବୁଦ୍ଧି କର ଆଜ ମଧ୍ୟେ
କାଲି ପ୍ରଭାତେ ପଶିବେ ଦୁଇପକ୍ଷ ଯୁଦ୍ଧେ
କୋଇନ୍ତା ବୋଇଲେ ଯିବ ନିଶାକାଳେ ଆଜ
କର୍ଣ୍ଣକୁ ମୁଁ ଘେନିଆସେ ତାକୁ କରି ରାଜ ।
ଗୋବିନ୍ଦ ବୋଇଲେ ମାଗୋ ତୁମ୍ଭର ଯେ ଆଜ୍ଞା
କାହାବଳେ କରିପାରେ ସେ କଥା ଅବଜ୍ଞା ।
ବଷ୍ଠ ଶୁକ୍ଳ ଏକାଦଶୀ ପୁଣି ଚନ୍ଦ୍ର ବାରେ
ରେବତୀ ନକ୍ଷତ୍ର ଭୋଗ ଅଟେ ସେ ଦିନରେ ।
ବାଣିଜ୍ୟ ନାମେ କରଣ ବରୀୟାନ ଯୋଗ
ସେ ଦିନ କୋଇନ୍ତାଗଲେ ଅଙ୍ଗଦେଶ ବେଗ ।
ରଜନୀର ଷୋଳଦଣ୍ଡ ବୁଧଙ୍କର ବେଳେ
ଚଳନ୍ତି କୋଇନ୍ତା ଅଙ୍ଗଦେଶର ମଣ୍ଡଳେ ।
ବିଦୁର ନିବାସ ଅଟେ ମିଥିଳା ନଗରୀ
ତହିଁ ପ୍ରବେଶ ହୋଇଲେ ଭୋଜର କୁମାରୀ ।
ଦେଖିଣ ବିଦୁର କଲା ବହୁମତେ ପୂଜା
କହିଁ ଆଗମନ ତୁ ଗୋ ପଣ୍ଡୁଙ୍କ ଭାରିଯା ।
କୋଇନ୍ତା ବୋଇଲେ ବାବୁ ନ କର ଚହଳ
କର୍ଣ୍ଣର ଭବନ ଯିବା ଆସ ଏହି ବେଳ ।
କାହାର କଥା ନ ଶୁଣେ ଗାନ୍ଧାରୀତନୟ
କୌରବେ ଜଣକପାଇଁ ଛନ୍ତି ନିଃସଂଶୟ ।
କର୍ଣ୍ଣ ମୋର ଜ୍ୟେଷ୍ଠପୁତ୍ର ଯେ କାଳେ ଅଟଇ
ମୁହିଁ ପାଉଅଛି ତାକୁ ଆଣିବାର ପାଇଁ ।
ଏବେ ଚଳ ବାବୁ ଯିବା କର୍ଣ୍ଣ ନିଜପୁରେ
ତାହାକୁ ଭେଟାଇ ଦେବା ଆଣି ଯୁଧିଷ୍ଠିରେ ।
ବିଦୁର ବୋଇଲ ମାଗୋ ଯା କହିଲ ସତ
କର୍ଣ୍ଣ ବୀରର ଚରିତ ନୁହଇ ଏମନ୍ତ ।

ବାଲ୍ୟକାଳରୁ ପୀରତି ତାହାର ଅଭେଦ
ଏତେବେଳେ ନ ଛାଡ଼ିବ ସେ ମାନଗୋବିନ୍ଦ ।
କୋଇନ୍ତା ବୋଇଲେ ଯେବେ ସେକରେ ନିରାଶ
ତା ଭୁଜକୁ ଯୁଧିଷ୍ଠି ଯେ କରଅଛି ଆଶ ।
ମୁଁ ଗ ଡଣୀ ଅଟେ ଯେଣୁ ତାର ଗର୍ଭଧାରୀ
ଜୀବ ଥିବ ଯାଏ ତାକୁ ମୁଚୁଛି ନ ପାରି ।
ଆସୁ କି ଅବା ନ ଆସୁ ସେହୁ ମୋର ବୋଲେ
ବିନାଶ ହୋଇବ ନିଶ୍ଚେ ମୋ କଥା ନ କଲେ
ଏସନ କହିଣ ଦେବୀ କରନ୍ତି ରୋଦନ
ବୋଲନ୍ତି ଧିକ ତା ହେଉ ମାତାଙ୍କ ଜୀବନ ।
ବିଦୁର ବୋଲଇ ମାଗୋ ତୁମ୍ଭ ବଶବର୍ତ୍ତୀ
ତୁମ୍ଭ ବୋଲ ମେଣ୍ଟିବାକୁ ନାହିଁ ମୋ ଶକତି
ରାତ୍ର ତିନିଦଣ୍ଡ ଥାଉଁ ସୋମଙ୍କର ବେଳେ
କର୍ଣ୍ଣପୁରେ ବିଜେକଲେ ବିଦୁରର ମେଳେ ।
ବିଜେ କରିଛି ରାଧେୟ ସମ୍ଭବ ଆସ୍ଥାନେ
ଖଟିଛନ୍ତି ପାରିଦଣ୍ଡ ସର୍ବ ଯୋଦ୍ଧାମାନେ ।
ମୁକୁଟ ବନ୍ଧା ଯୋଦ୍ଧାଏ କରି ପଟୁଆର
ସୁବର୍ଣ୍ଣର ଶଙ୍ଖ ତହିଁ ତୂରେ ଲକ୍ଷଗୁର ।
ଲକ୍ଷେକ ଭ୍ରମର ପୁଣି ପଡ଼େ ଚଉକତ
ତିନିଲକ୍ଷ ରଥ ଦୁଇଲକ୍ଷ ମତ୍ତହସ୍ତୀ ।
ଯେକାଳେ ଆସ୍ଥାନୁ କର୍ଣ୍ଣ ଆସୁଅଛି ଉଠି
ଦୁଇକ୍ରୋଶ ପରିଯନ୍ତେ ରତ୍ନ ହୁଏ ବୃଷ୍ଟି ।
କୋଇନ୍ତା ବିଦୁର ଛନ୍ତି ଶାଳବୃକ୍ଷ ତଳେ
ବିଜୟ ରାଧେୟ ଯାଇ ଆପଣାର ଆଳେ ।
ତିନିସହସ୍ର ବାହୁଡ଼ି ଜଳେ ଯଥାବିଧି
ବିଦୁର ବୋଇଲ ଦେଖ ତୋ ପୁତ୍ର ସମୃଦ୍ଧି ।
ମାଗୋ ଇନ୍ଦ୍ରର ପରାୟେ ଭୋଗ କରେ ବସି
ମାନଗୋବିନ୍ଦକୁ ବଳି ଏହା ସୁଖରାଶି ।
ଏଡ଼େ ବଡ଼ ସୁଖକୁ ସେ ଛାଡ଼ିବ କେମନ୍ତେ
ମୋ ବିଚାରେ ନ ଯୋଗାଏ ତୋ କଥାଯୁକତେ
ଆହେ ଚଇତନ କର୍ଣ୍ଣ ବିଜୟ ଭବନେ
ଯୋଦ୍ଧାମାନେ ଚଳିଗଲେ ଯେ ଯାହାର ସ୍ଥାନେ
ଯେତେ ଲୋକ ଥିଲେ ତହିଁ ଅତିଥି ମାଗନ୍ତା
ଇଚ୍ଛାମତେ ଦେଲ ଯେହୁ ଯେମନ୍ତେ ଯୋଗ୍ୟତା
ଭିତରେ ପ୍ରବେଶ ତହୁଁ କର୍ଣ୍ଣ ମହାରଥୀ
ସାଧୁ କର୍ଣ୍ଣ ବୋଲି ସର୍ବେ ପ୍ରଶଂସା କରନ୍ତି ।

କୋଇନ୍ତା ବିଦୁର ଦୁହେଁ ଏମନ୍ତ କାଳରେ
ପ୍ରବେଶ ହୋଇଲେ ଯାଇ ଏକାନ୍ତ ମନ୍ଦିରେ ।
ନଅବକାଶରେ କର୍ଣ୍ଣ ଜନନୀଙ୍କି ଦେଖି
ଧାତକାରେ ଉଠିଲ ସେ ଆସନ ଉପେକ୍ଷି ।
ନମସ୍କରିଲ ନମସ୍କରିଲ ବାର ବାର ବୋଲି
ସାଷ୍ଟାଙ୍ଗରେ କର୍ଣ୍ଣବୀର ପଡ଼େ ଗଡ଼ଘାଲି ।
ସୁବର୍ଣ୍ଣ ଝରିରେ କର୍ଣ୍ଣ ନିଜେ ପାଣି ଘୋଳି
କୁନ୍ତୀଙ୍କର ପାଦଦ୍ୱୟ ଦେଲ ସେ ପଖାଳି ।
ଆପଣା ମସ୍ତକେ ଦେଲ ଚରଣ ଉଦକ
ପୂଜଇ ପାଦରେ ନେଇ ଲକ୍ଷେକ ମାଣିକ୍ୟ ।
କୋଇନ୍ତା ବିଦୁରଙ୍କୁ ସେ ଆସନେ ବସାଏ
ଅମୃତ ଯୋଗାଡ଼ ପାକ ଭୋଜନ କରାଏ ।
ଭୋଜନ ବେଳରେ ହେଲ ବହୁତ କାର୍ପଣ୍ୟ
ଭୁଞ୍ଜି ସାରି କଲେ ଦୁହେଁ ଯାଇ ଆଚମନ ।
ବିଜୟ ଭୋଜନାନ୍ତେ ବହୁତ ହରଷେ
ଆଗେ ଉଭାହୋଇ କର୍ଣ୍ଣ ବଚନ ସମ୍ଭାଷେ ।
ଅନେକ ରତ୍ନ ବସନ ଦେଇଣ ଅକ୍ଷତ
ବିନୟ ଭାବେ କହଇ ବଚନ ବହୁତ ।
କରପଦ୍ମ ଯୋଡ଼ି କର୍ଣ୍ଣ ମସ୍ତକରେ ଦେଇ
ବୋଇଲେ ଜନ୍ମ ସଫଳ ଆଜ ମୋ ଅଟଇ ।
ନମସ୍କରିଲ ନମସ୍କରିଲ କହି ପୁରଃସର
ଏ ଦୀନ ପୁରକୁ ବିଜେ କରି ମାହେଶ୍ୱରୀ ।
ପୁଣ୍ୟବଳେ ପାଞ୍ଚଗୋଟି ଇନ୍ଦ୍ର କଲୁ ଜାତ
ସ୍ତ୍ରୀକୁଳେ ପବିତ୍ର ମାଗୋ ବଢ଼ାଇ ମହତ୍ତ୍ୱ ।
ନରକୁଳେ ଜନ୍ମି ମାଗୋ ଦେଖିଲେ ତୋ ମୁଖ
କାରଣ ପାଆନ୍ତି ନରେ ଫିଟେ ଜନ୍ମ ଦୁଃଖ ।
ଅପବିତ୍ର ଘର ମାଗୋ ପ୍ରତିଷ୍ଠା ହୋଇଲ
ଅନେକ କାଳ ଦୁଷ୍କୃତ ମୋର ପାରିଗଲ ।
ପୁଣି ବୋଲେ ଯହିଁକି ଗୋ କରିଛ ବିଜୟେ
ଜାଣିଲ ଉଭୟ ପକ୍ଷ ସନ୍ଧିର ବିଷୟେ ।
କୋଇନ୍ତା ବୋଇଲ ବାବୁ ଅଟୁ ତୁ ସର୍ବଜ୍ଞ
ଦାନେ ଶୂରବନ୍ତ ତୁରେ ପୁଣି ମହାବିଜ୍ଞ ।
ଭୂତ ଭବିଷ୍ୟତ ଆଦି ତିନିକାଳ ଜ୍ଞାତା
ବହୁ ବିଚକ୍ଷଣ ପର ମନକୁ ଜାଣନ୍ତା ।
କୁରୁପାଣ୍ଡବ ସମରେ କରିବେ ଯେ ସନ୍ଧି
ଯେଣୁକରି ଘଟିଅଛି ତାଙ୍କର ଦୁର୍ବୁଦ୍ଧି ।
ସନ୍ଧି କରାଇବା ଅଟେ ଅତିଶୟ ଧର୍ମ
ଯେ କରେ ସେ ନିରଞ୍ଜନ ପୁରୁଷ ଉତ୍ତମ ।
କର୍ଣ୍ଣ ବୋଲେ ମାତା ତୁମ୍ଭେ ପରଂମାହେଶ୍ୱରୀ
ଦ୍ରୌପଦୀଙ୍କ ଘେନି ଭାର ନିବାରିବେ ହରି ।
ରାବଣକୁ ବଧକଲେ କ୍ଷୀରାର୍ଣ୍ଣବଶାୟୀ
ପୁଣି ବସୁଧା ଗୁହାରି କରିଲ ସେ ଯାଇଁ ।
କଂସ ଅଷ୍ଟମଲ୍ଲ ଭାର ସହି ନ ପାରଇ
ଦୈତ୍ୟ ନାଶି ମହାଭାର ନାଶି ଭବଗ୍ରାହୀ ।
ଶ୍ରୀକୃଷ୍ଣଙ୍କ ପଞ୍ଚଭୂତ ସେ ପଞ୍ଚପାଣ୍ଡବ
ଭାର ନିବାରଣ ଅର୍ଥେ ହେଲେ ସେ ମାନବ ।
ଭାର ନିବାରିବେ ହରି ସେମାନଙ୍କୁ ଘେନି
ପୂର୍ବର ଭିଆଣ ମାଗୋ ଏହା ଅଛୁ ପୁଣି ।
କୌରବଙ୍କୁ ଘେନି ମୁହିଁ କରିପାରେ ସନ୍ଧି
ଗୋବିନ୍ଦ ସହଦେବଙ୍କୁ ମୋର ନାହିଁ ବୁଦ୍ଧି ।
କୋଇନ୍ତା ବୋଇଲେ ଯେବେ ସମର ହୋଇବ
ପାଣ୍ଡବ ସପକ୍ଷ ଯେହେତୁ ତୋର ସଦା ଥିବ ।
କଦାଚ ତାଙ୍କୁ ପ୍ରମାଦ ନ ଚିନ୍ତିବୁ ତୁହି
ଏହି କଥା କହିବାକୁ ଅଇଲଇଁ ମୁହିଁ ।
ଶୁଣି କର୍ଣ୍ଣ ବୋଲେ କୃଷ୍ଣ ଯାହାକୁ ସହାୟେ
ତାହାଙ୍କୁ ପ୍ରମାଦ କାହିଁ ପଡ଼ିବ ଗୋ ମାୟେ ।
କୁନ୍ତୀଦେବୀ ବୋଇଲେ ମୁଁ ଗର୍ଭଧାରୀ ତୋର
ତୁ ଜ୍ୟେଷ୍ଠପୁତ୍ର ପାଣ୍ଡବେ କରୁଛୁ ଅନ୍ତର ।
ଆରେ ବାବୁ କର୍ଣ୍ଣ ଚାଲ ଯିବା ଇନ୍ଦ୍ରପ୍ରସ୍ଥେ
ଯୁଧିଷ୍ଠିର କହିଅଛି ବିନୟରେ ତୋତେ ।
କର୍ଣ୍ଣ ବୋଲେ କହୁଅଛ ଅସମ୍ଭବ କଥା
ରାଧା ମୋହର ଅଟନ୍ତି ଗର୍ଭଧାରୀ ମାତା ।
ତୁମ୍ଭେ ମୋର ମାତା ବୋଲି ନ ଜାଣଇଁ ମୁହିଁ
ଏ ପଞ୍ଚରାଜ୍ୟରେ ମଧ୍ୟ ନ କହନ୍ତି କେହି ।
କୋଇନ୍ତା ବୋଇଲେ କୁନ୍ତଭୋଜ ନରପତି
ତାଙ୍କର ଦୁହିତା ମୁହିଁ ନାମ ମୋର କୁନ୍ତୀ ।
ବୃଷଭ ମାସ ପଞ୍ଚମୀ ବୃହସ୍ପତି ବାର
ଗୁରୁପୁଷ୍ୟା ଯେ ଅମୃତଯୋଗ ସେ ଦିନର ।
ବବନାମେ କରଣ ଯେ ଶୁକ୍ଳନାମେ ଯୋଗ
ଦୁର୍ବାସାଋଷି ମିଳିଲେ କୁନ୍ତଭୋଜ ଆଗ ।
ବହୁତ ବିନୟୀ ହୋଇ କୁନ୍ତଭୋଜ ରାଜା
ଦୁର୍ବାସା ଋଷିଙ୍କ ପାଦେ କଲେ ଦିବ୍ୟ ପୂଜା ।

କଲ୍ୟାଣ କରଣ ମୁନି ପ୍ରଜ୍ୱଳନ୍ତ କୁଣ୍ଡଳ
ରାଜା ବୋଇଲେ ତୁମ୍ଭର ପ୍ରସାଦେ ମଙ୍ଗଳ ।
ଦୁର୍ବାସା ବୋଇଲେ ତୋର ଭକ୍ତି ଦେଖି ବାବୁ
ବର୍ଷଋତୁ ଚତୁର୍ମାସ୍ୟା ତୋ ରାଜ୍ୟେ ରହିବୁ
କୁନ୍ତିଭୋଜ ବୋଲେ ତୁମ୍ଭେ ଯା ପୁରେ ବିଶ୍ରାମି
ଏଗାର ପୁରୁଷ ତାର ହୁଏ ସ୍ୱର୍ଗଗାମୀ ।
ନିଶ୍ଚେ ମୋ ପୁରେ ରହିବ ଯେବେ ଚତୁର୍ମାସ୍ୟା
ତରିବେ କୋଟି ପୁରୁଷ ମୋର ହୁଏ ଆଶା ।
ରହ ବୋଲି କହିବାକୁ ନାହିଁ ମୋ ଶକତ
ଯାଅ ବୋଲି ବୋଲିବାକୁ ନ ବଳଇ ମତ ।
ଦ୍ୱାଦଶ ମଣ୍ଡଳେ ମୁହିଁ ଏକା ଅଧିପତି
ରାଜ୍ୟ ଚିନ୍ତାରେ ସର୍ବଦା ଥାଏ ମୋର ମତି ।
ତୁମ୍ଭଙ୍କୁ କେଉଁ ରୂପରେ ଭକ୍ତିରେ ପୂଜିବି
ନ ସେବି ପାରିଲେ ତୁମ୍ଭ କୋପେ ନାଶଯିବି ।
ଏ ଅପରାଧ ଫେଡ଼ିବା ତୁମ୍ଭେ ଦେବ ସ୍ୱାମି
ଏହା କହି ଭକ୍ତିଭାବେ ହେଲେ ପରଣାମି ।
ଦୁର୍ବାସା ବୋଇଲେ ତୋର ନାହିଁ ଅବସର
ତୋର ପ୍ରତିନିଧି ଜଣେ ଥିବ ନିରନ୍ତର ।
ପିତା ବୋଇଲେ ମୋ କନ୍ୟା ନାମ ତାର କୁନ୍ତୀ
ଅନୁବ୍ରତେ ଖଟିଥିବ କରି ସେ ଭକତି ।
ମୋ ରାଜ୍ୟେ ଅଛି ସୁବର୍ଣ୍ଣରେଖା ନାମେ ନଦୀ
ବେଦଶାସ୍ତ୍ର ପ୍ରମାଣରେ ଅଟେ ସେ ପ୍ରସିଦ୍ଧି ।
ତହିଁ ମୁନି ରହିଲେକ ରଚି ପୂର୍ଣ୍ଣକୁଟୀ
ପାଞ୍ଚ ବରଷ କାଳ ମୁଁ ତାଙ୍କୁ ଥିଲି ଖଟି ।
କ୍ଷଣେହେଁ ନ ଛାଡ଼ି ତାଙ୍କୁ ସର୍ବଦା ଖଟିଲି
ଏହିରୂପେ ପାଞ୍ଚବର୍ଷ ଅତୀତ କରିଲି ।
କୁନ୍ତିଭୋଜ ପିତା ମୋର ଅପୁତ୍ରକ ଥିଲେ
ଦୁର୍ବାସାଋଷି ପ୍ରସାଦେ ତନପୁତ୍ର ହେଲେ ।
ଦିନେ ଦୁର୍ବାସା ବୋଇଲେ ମୋହର ପିତାକୁ
ଆମ୍ଭେ ଯାଉଅଛୁ ମହୋଦଧିର ତୀର୍ଥକୁ ।
ପିତା ବୋଇଲେ ରହିଲ ତୁମ୍ଭେ ବହୁକାଳ
ଆଜ ଯିବାକୁ କପାଇଁ ହେଉଛ ଆକୁଳ ।
ମୁନି ବୋଲେ ଚତୁର୍ମାସ୍ୟା ରହିବୁ ବୋଇଲୁ
କୋଇନ୍ତା ଭକ୍ତିରେ ପାଞ୍ଚବରଷ ରହିଲୁ ।
କୁନ୍ତିଭୋଜ ବୋଲେ ଧନ୍ୟ ମୋହର ଜୀବନ
ଅଶ୍ୱମେଧ ଫଳ ପାଏ ମୋ କନ୍ୟା ରତନ ।
ତହୁଁ ଦୁର୍ବାସା ମହର୍ଷି କରିଲେ ଗମନ
ମୁହିଁ ପଛେ ଗୋଡ଼ାଇଲି ଗହନ କାନନ ।
ଥୋକେ ଦୂର ଯାଇ ମୁନି ଚାହିଁଲେ ଲେଉଟି
ବୋଇଲେ ରହ ଗୋ କୁନ୍ତୀ କପାଁ ଆସୁ ଫୁଟି
ଦୁର୍ବାସାଙ୍କ ବଚନେ ମୁଁ ହୋଇ ପରଣାମି
ବୋଇଲି ଈଶ୍ୱର ସେବି ହୋଇଲି ଅକର୍ମୀ ।
ଦୁର୍ବାସା ବୋଇଲେ ତୁହି ସେବା କରିଥିଲୁ
ପ୍ରସ୍ତାବ ଅନୁକ୍ରମରେ ପ୍ରାର୍ଥନା ନ କଲୁ ।
ମନ୍ତ୍ର ମହୌଷଧି ମୋର ସକଳହିଁ ଅଛି
ନ ମାଗିଲେ କାହାରିକୁ ନ ଦେଉ ନ ଯାଚି ।
ବୋଇଲି ବାଳକା ମୁହିଁ କସ ପାରେ ମାଗି
ଜାଣି ଅନୁଗ୍ରହ କର ମୋତେ ପରଂଯୋଗୀ ।
ମୁନି ବୋଇଲେ ସ୍ତ୍ରୀଙ୍କ ସର୍ବଦାହିଁ ଚଉ
ସୁନ୍ଦର ସ୍ୱାମୀଙ୍କଠାରୁ ଉପୁଜିବ ପୁତ୍ର ।
ଏହା କହି ଜପାମାଳୀ ଏକ ଦେଲେ ମୋତେ
ବୋଇଲେ ଯାକୁ ସ୍ମରିବୁ ପ୍ରାପ୍ତ ହେବ ତୋତେ
ବ୍ରହ୍ମା ଚନ୍ଦ୍ର ସୂର୍ଯ୍ୟ ବାୟୁ ଡାକିଲେ ତୁ ରତି
ତୋ ମନ୍ତ୍ରେ ନଇଲେ ତାର ମୂର୍ଦ୍ଧା ଯିବ ଫାଟି ।
ଜପାମାଳି ଦେଇ ମୁନି ଯାନ୍ତେ ଅନ୍ତରୀକ୍ଷେ
ପରୀକ୍ଷା କରିବି ମନେ ଚିନ୍ତିଲି ଉତ୍ସୁକେ ।
ତହିଁ ଶାଳପତ୍ର ତୋଳି ଶଯ୍ୟା ମୁହିଁ କଲି
ବିଦ୍ୟା ପରୀକ୍ଷା ନିମନ୍ତେ ସୂର୍ଯ୍ୟଙ୍କୁ ଡାକିଲି ।
ଗଗନକୁ ତେଜ୍ୟା କରି ଆଇଲେ ଭାସ୍କର
ପତ୍ନୀ ପ୍ରାପ୍ତ ମଣି ମୋତେ ଧଇଲେ କୋଳର
ବିଳାସ ମାଗନ୍ତେ ମୁଁ ଯେ କରିଲଇଁ ନାସ୍ତି
ବୋଇଲି କୁମାରୀ ମୁହିଁ ନୁହେଁ ରଜୋବତୀ ।
ଲିଙ୍ଗଭଗ୍ନ ଦୋଷ ହେବ ବାଳକା ହରନ୍ତେ
ମୁହିଁ ଅପ୍ରତିଷ୍ଠା କନ୍ୟା ହରିବ କେମନ୍ତେ ।
ଭାସ୍କର ବୋଇଲେ ଯେବେ ତୋର ଏ ଧାରଣା
ଋଷି ମନ୍ତ୍ର ଧରି କପାଁ କଲୁ ସ୍ମରଣା ।
ଋଷି ଉପରେ ଭାସ୍କର ଚେକ ଧର୍ମବାଟ
ଛପିତେ ପ୍ରବୃତ୍ତି ହେଲେ ଯମୁନାର ତଟ ।
କର୍ଣ୍ଣପଥରେ ଯହୁଁ ତୁ ହେଲୁ ଉତପନ୍ନ
କୋଳେ ଧରି ମାରତଣ୍ଡ ନାମ ଦେଲେ କର୍ଣ୍ଣ ।
ତାଙ୍କୁରେ ରୂପିଲେ ତୋର ଅଭେଦ୍ୟକ ମଣି
ଅମୃତ କୁଣ୍ଡଳ ଦେଲେ ବେନି କର୍ଣ୍ଣେ ଆଣି ।

ଅଭେଦ ଛଉଣି ଦେଲେ ଶରୀରେ ତୋହର
ବୋଇଲେ ସେ ଶୂରବନ୍ତ ହୁଅ ରେ କୁମର ।
ମେଦିନୀ କର୍ମ୍ମ ତ ହେବ ତୋହର ଗୁଳନ୍ତେ
ପୃଥ୍ୱୀ ଶତଭାର ସ୍ୱର୍ଣ୍ଣ ତୋତେ ଦେବ ନିତ୍ୟେ ।
ବର ଦେଇ ଚଳିଗଲେ ତହୁଁ ଦିବାକର
ମନ ମଧ୍ୟରେ ଚମ୍ଭୃତ ହୋଇଲି ଅପାର ।
ମାତା ପିତାଙ୍କୁ ଦୂଷଣ ଉପୁଜିବ ବୋଲି
ମଞ୍ଜୁଷେ ଭରି ନଦୀରେ ତୋତେ ମେଲିଦେଲି
ସେ ମଞ୍ଜୁଷା ଭାସି ଭାସି ଲାଗେ ଜଳଘାଟେ
ସେହି ଜଳଘାଟ ଅଟେ ହସ୍ତିନା ନିକଟେ ।
ସଞ୍ଜୟ ଦୁହିତା ଆସେ କରି ନଦୀ ସ୍ନାନ
ମକର ଶୁକଳପକ୍ଷ ପୂର୍ଣ୍ଣିମୀର ଦିନ ।
ବିଷ୍କି ନାମରେ କରଣ ଆୟୁଷ୍ମାନ ଯୋଗ
ମକର ସଂକ୍ରାନ୍ତି ତେଇଶ ଦିନ ଭୋଗ ।
ମଞ୍ଜୁଷ ଭେଦି ଦିଶଇ ତୋର ଦେହ ଜ୍ୟୋତି
ସେ ରାଧା ମଞ୍ଜୁଷା ଯାଇ ଧଇଲା ତଡ଼ିତି ।
କୂଳକୁ ମଞ୍ଜୁଷା ନେଇ କଲା ଦେନିଫାଳ
ସହସ୍ର କରଣ ଜ୍ୟୋତି ଦିଶେ ଅନର୍ଗଳ ।
କୋଇନ୍ତା ବୋଇଲେ ସେହୁ ତୋତେ ପ୍ରତିପାଳି
ବ୍ୟାସଙ୍କ ମନ୍ତ୍ରରେ ବାବୁ ହେଲୁ ମହାବଳୀ ।
ନିଶ୍ଚିନ୍ତ ହୋଇଣ ବାବୁ ଥିଲୁ ଭଲମତେ
ଯୁଦ୍ଧ ଆରମ୍ଭ ଦେଖିଣ ଭୟ ଲାଗେ ମୋତେ ।
ବାବୁ ମୁହିଁ ଅଟେ ତୋର ଜାଣ ଗର୍ଭଧାରୀ
ସମରକାଳେ ଅଇଲି ମୁହିଁ ନ ପାରି ।
ଆସ ଆସ ବୋଲି କୁନ୍ତୀ ଧଇଲେ ହସ୍ତଟି
ମାତାଙ୍କ ବଚନେ କର୍ଣ୍ଣ ପାଦତଳେ ଲୋଟି ।
କର୍ଣ୍ଣ ବୋଲେ ଶୁଣିଥିଲି ସାମାନ୍ୟ ସାମାନ୍ୟ
ମରଣକାଳେ ପାଇଲି ମୁଁ ତଥ୍ୟ ବଚନ ।
ମାଗୋ ବାଳକ କାଳରୁ ରାଧା ମୋତେ ପାଳେ
କୌରବଙ୍କ ସଙ୍ଗେ ପ୍ରୀତି ହେଲା ହେଳେମେଳେ
ପଞ୍ଚଭୂତ ଆତ୍ମା ମୋର ସେ ମାନଂଗୋବିନ୍ଦ
ମୋହର ବଳରେ ସେହୁ ଲଗାଇଛି ଦ୍ୱନ୍ଦ୍ୱ ।
ଆଗୋ ମାତ ତୋହର ଯେ କୁମର ବିଭୟ
ଆକାଶରେ ବଧ କଲା ନିବାତକବଚ ।
ଆକାଶ ଉହିବ କଲେ ତେଣୁ ସସ୍ତ୍ରଯୋନ
ଅମର ରଖିଲୁ ବର ମାଗ ଫାଲଗୁନ ।

ଅର୍ଜ୍ଜୁନ ବୋଇଲା ତାତ ଯେବେ ଦେବୁ ବର
ଅନେକ ବିବାଦ ହେବ କର୍ଣ୍ଣର ମୋହର ।
ତାକୁ କେମନ୍ତେ ବଧିବ ଆହେ ଆଖଣ୍ଡଳ
ତାହାଠାରୁ ଦେବ ମୋତେ କବଚ କୁଣ୍ଡଳ ।
ମାଗୋ ତହିଁକି ମଘବା ଦ୍ୱିଜରୂପ ହୋଇ
ତିନ ପଦାର୍ଥ ଦେଖିଲେ ସତ୍ୟକୁ କରାଇ ।
ତାକୁ ଚିରି କାଢ଼ିଦେଲି ଅଭେଦକ ମଣି
ରୁଧିର ବୃଷ୍ଟି ହୋଇଲା ଯେସନ୍ତେ ଗଙ୍ଗାପାଣି ।
ପୁଣି ଅଙ୍ଗୁ କାଢ଼ିଦେଲି ବଜ୍ରର ଛଉରି
କର୍ଣ୍ଣରୁ କାଢ଼ିଦେଲି ମୁଁ ସେ କୁଣ୍ଡଳ ଯୋଡ଼ି ।
ସ୍ୱର୍ଗକୁ ଚଳିଲେ ଘେନି ତହୁଁ ସୁରନାଥ
ପାର୍ଥପାଇଁ ଏ ପ୍ରମାଦେ ପଡ଼ିଲି ଗୋ ମାତ ।
କହୁଁ କହୁଁ ଦାମୀକର୍ଣ୍ଣ ହେଲା ମହାକ୍ରୋଧୀ
ବୋଇଲା କେଉଁକୁ କାହିଁ ହେବ ଆଉ ସନ୍ଧି ।
ମୋର ଜାଣ ସତ୍ୟ ସତ୍ୟ ଏ ଦୃଢ଼ ବଚନ
ପ୍ରଥମ ଯୁଦ୍ଧରେ ମାଗୋ ମାରିବି ଅର୍ଜ୍ଜୁନ ।
ପୁଣି ବୋଲେ ମୁହିଁ ଯେବେ ଆତ୍ମଜ ତୋହର
ମାତା ହୋଇ କେଉଁରୂପେ କଲୁ ପରିହାର ।
ଦ୍ୱିତୀୟ ପୁତ୍ରର ନାମ ଯୁଧିଷ୍ଠିର ଦେଲୁ
ଜ୍ୟେଷ୍ଠପୁତ୍ର ବୋଲି ତାକୁ ଉଦେ କରାଇଲୁ ।
ସୋଦର ହୋଇଣ ଯେବେ ମନ୍ଦ ଚିନ୍ତୁଅଛୁ
ଜ୍ୟେଷ୍ଠଜନ ହୋଇ ଯେବେ ଅଭକ୍ଷ ହୋଇଛୁ ।
ସୁନ୍ଦରୀ ଭାର୍ଯ୍ୟା ଯେବେ ହୁଏ ମନ୍ଦମତି
ମିତ୍ର ହୋଇ କରେ ଯେବେ କପଟରେ ପ୍ରୀତି
ଗୁରୁ ହୋଇକରି ଯେବେ ହୋଇବ ଅଜ୍ଞାନୀ
କୃପଣ ପ୍ରକୃତି ଯାର ହୁଏ ସେ କି ଜ୍ଞାନୀ ।
ପର ହୋଇ ଯେବେ କେହି କରେ ପ୍ରାଣରକ୍ଷା
ଅସ୍ୱାମୀ ହୋଇଣ ଯେବେ ନ କରେ ଉପେକ୍ଷା
ମାତ ଗୋ ଶାସ୍ତ୍ରେ ଅଛଇ ଏମନ୍ତ ବ୍ୟବସ୍ଥା
ପର ଦୁର୍ଯ୍ୟୋଧନ ମୋର ସୋଦର ସର୍ବଥା ।
ପୁଣି ବୋଲେ ମୋତେ ଆଉ ନ କର ଅପେକ୍ଷା
ଲକ୍ଷେ କୃଷ୍ଣ ପାଣ୍ଡବଙ୍କୁ ନ କରିବେ ରକ୍ଷା ।
କୋଇନ୍ତା ବୋଇଲେ ବାବୁ ଏଠାକୁ ଅଇଲି
କୃଷ୍ଣ ବୋଲି ମେଣ୍ଟି ମୁହିଁ ଲଜ୍ଜାକୁ ପାଇଲି ।
କର୍ଣ୍ଣବୋଲେ ଆଗୋ ମାତ ନିବାର ମୋ ସତ୍ୟ
ଆନ ଯାହା ମାଗିବୁ ତା ଦେବଇଁ ମୋ ବ୍ରତ ।

କୋଇନ୍ତା ବୋଇଲେ ତୋତେ ମାଗୁଅଛି ବାବୁ
ଯୁଧିଷ୍ଠିରାଦି ସ୍ୱରଙ୍କୁ କେବେ ନ ମାରିବୁ ।
ଅର୍ଜ୍ଜୁନ ତୋହର ଯେବେ ହୋଇଲା ଅପ୍ରିୟ
ତୁ ମାରୁ ତାକୁ ବା ସେହୁ ତୋତେ କରୁ କ୍ଷୟ
ଅର୍ଜ୍ଜୁନକୁ ମାରୁ ଯେବେ କରଣ ସମର
ତୋତେ ଘେନ ପାଞ୍ଚପୁତ୍ର ଥିବେଟି ମୋହର ।
ଅର୍ଜ୍ଜୁନ ତୋତେ ଯଦ୍ୟପି ମାରିବ ପ୍ରମାଦେ
ଯେମନ୍ତ ତେମନ୍ତ ପାଞ୍ଚପୁତ୍ର ଥିବେ ହାଦେ ।
ପୁଣି ବୋଇଲେ ବାବୁ ତୁ ମୋ ଜ୍ୟେଷ୍ଠ ନନ୍ଦନ
ସୁକତେ କରିବୁ ମୋତେ ଦକ୍ଷିଣା ପ୍ରଦାନ ।
କର୍ଣ୍ଣ ବୋଇଲା ମାତ ଗୋ ଦକ୍ଷିଣା ମୁଁ ଦେବି
ସତ୍ୟ ସତ୍ୟ କଲି ମାଗ ନାସ୍ତି ନ କରିବି ।
କର୍ଣ୍ଣକୁ ସତ୍ୟ କରାଇ ମାଗିଲେ ଯେ କୁନ୍ତୀ
ନୀଳବାଣ ଭୃଜବାଣ ଦେବୁ ତୁ ଦୁହିନ୍ତ ।
ଶୁଣି ଆଶ୍ଚର୍ଯ୍ୟ ହୋଇଲା ଆଦିତ୍ୟର ସୂନୁ
ନାରାଚ ମୁଁ ସହରଛି ଚରି ବେନି ଜାନୁ ।
ବୋଇଲା ମାତ ଗୋ ତୁହି ଜାଣିଲୁ କେମନ୍ତେ
କାହାକୁ ଗୋଚର ନାହିଁ ରଖିଛି ଗୁପତେ ।
ଦେବ ଦାନବ ଧାତାରେ ଏ ଗୋଚର ନାହିଁ
ତୁହି ମାତ ଏ ବାରତା ପାଇଲୁ ଗୋ କାହିଁ ।
ଶୁଣି କୁନ୍ତୀ ବୋଇଲେ ତୁ ଯା ପୁଚ୍ଛିଲୁ ମୋତେ
ଅଗୋଚର ହୋଇବ କ ସହଦେବ ଥାନ୍ତେ ।
କର୍ଣ୍ଣ ବୋଲେ ଜପ ଅଟୁ ତୁହି ଗର୍ଭଧାରୀ
କରୁ ଷଣ୍ଡି ପଣ ଥିଲା ତାକୁ ନେଲୁ ହରି ।
କୋଇନ୍ତା ବୋଇଲେ ତୋତେ ନ ମାଗେ ଏମାନ
ମୋ ଆଗେଟି ଠାକୁର ହେବୁ ସ୍ୱଲ ତୁ ବହନ ।
କର୍ଣ୍ଣ ବୋଲେ ଦୁର୍ଯ୍ୟୋଧନେ ଛାଡ଼ି ନ ପାରଇ
ମଇତ୍ରକୁ ଛାଡ଼ିବାକୁ ଚିତ୍ତ ନ ବଳଇ ।
ବୋଲନ୍ତି ଅଗସ୍ତି ତୁମ୍ଭେ ଶୁଣ ବୈଶ୍ୱ ମନୁ
କୋଇନ୍ତା ଗର୍ଭରେ କର୍ଣ୍ଣ ଚରେ ବେନି ଜାନୁ
ଡାହାଣ ଜାନୁରେ ତାର ଥିଲା ନୀଳବାଣ
କାଢ଼ନ୍ତେ ତେଜ ଲଗିଲା ତିନିଲୋକେ ଜାଣ ।
ଭୃଜବାଣ ରହିଥିଲା କର୍ଣ୍ଣ ବାମଜାନୁ
ଯମରାଜ ତ୍ରାସ କଲା ଆପଣା ଭୃବନୁ ।
ତ୍ରୈଲୋକ୍ୟ ଯାକରେ ହେଲା ଉଲ୍କାପାତ ପ୍ରାୟେ
ବୃନ୍ଦାରକମାନେ ପାଇଲେ ମନେ ବଡ଼ ଭୟେ ।
ବଜ୍ରଧରଲେ ଇନ୍ଦ୍ର ନେଲା କବଚ କୁଣ୍ଡଳ
ତେଣୁ କର୍ଣ୍ଣ ନାଶୁଛି କ ଆକାଶ ମଣ୍ଡଳ ।
କର୍ଣ୍ଣହସ୍ତେ ନୀଳବାଣ ଭୃଜବାଣ ଦେଖି
ତେଣୁ ଦେବେ ପଳାଇଲେ ଆସନ ଉପେକ୍ଷି ।
ବ୍ୟାସଦେବେ ଅନୁସରି ଶ୍ରୀଶାରଳା ଦାସ
ଭାଷା ପ୍ରବନ୍ଧେ ରଚିଲେ ଏ ଭାରତ ରସ ।

---

## କଲ୍ପାସୁର ସହିତ କର୍ଣ୍ଣର ଯୁଦ୍ଧ ନୀଳବାଣ ଓ ଭୃଜବାଣର ଉତ୍ପତ୍ତି

ଅଗସ୍ତିଙ୍କୁ ପୁଚ୍ଛା କଲେ ବୈବସ୍ୱତ ମନୁ
କର୍ଣ୍ଣ କାହିଁ ପାଇ ଅସ୍ତ୍ର ରଖେ ଚରି ଜାନୁ ।
ଏଥିର ଚରିତ କହ ହେ ମୁନି ପଣ୍ଡିତ
ତାହା ଶୁଣି ତୃପ୍ତି ହେବ ମୋର ପଞ୍ଚଭୂତ ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ପଞ୍ଚବଟୀ ବନେ ହରି ହରଙ୍କର ସ୍ଥିତି ।
ବହଇ ଦାବାଗ୍ନି ଧାର ନଦୀ ବୈତରଣୀ
ତ୍ରିଶୂଳେ ଗିରି ବୁହାଇଛନ୍ତି ଶୂଳପାଣି ।
ବୈଶାଖ ଶୁକ୍ଳପଞ୍ଚମୀ ମୃଗଶିରା ବୃଷ
ଗୁରୁବାର ଯେ ବାଳବକରଣ ପ୍ରତ୍ୟକ୍ଷ ।
ମେଷ ସତର ଦଣ୍ଡକୁ ଅନ୍ତ ଗଣ୍ଡଯୋଗ
ବିଜୟ ଶ୍ରୀହରିହର ଅମରାଧି ସ୍ୱର୍ଗ ।
ସମସ୍ତେ ବସିଛନ୍ତି ସେ ଅମରଙ୍କ ସ୍ୱର୍ଗେ
ବାସୁଦେବଙ୍କୁ ପୁଚ୍ଛିଲେ ଈଶ୍ୱର ସରାଗେ ।
ବଢ଼ିଇ ଅନୀତି କଲା କଳପା ଦାନବ
ତାର ପ୍ରତିକାର କରି କେମନ୍ତେ ମରିବ ।
ସମସ୍ତ ଋଷିମାନଙ୍କୁ ଖାଇଲା ସେ ମୋଡ଼ି
ଋଷିମାନେ ପଳାଇଲେ କପିଳାସ ଛାଡ଼ି ।
ଯାଗଯଜ୍ଞ ନ ହୋଇଲା ସେ ଅସୁର ଡରେ
ତାର ଭୟେ ଇନ୍ଦ୍ର ବୃଷ୍ଟି ନ କଲେ ସଂସାରେ
ଏମନ୍ତ ବଜ୍ରର କରୁ ପ୍ରବେଶିଲା ନିଶି
ଅନ୍ଧାରି ବଳେ କରିଲା କଲ୍ପାସୁର ଆସି ।
ଦଲଦଲ ହୋଇ ତହୁଁ କମ୍ପିଲା ଭୂଖଣ୍ଡ
ଗିରିବର କମ୍ପେ ଆଉ ହାସିଲା ମାର୍ତ୍ତଣ୍ଡ ।
ମୃଗୟା ବିନୋଦେ କର୍ଣ୍ଣ ତହିଁ ଥିଲା ଆସି
କଲ୍ପାସୁର ବ୍ୟାପିଗଲା କାଯ୍ୟାକୁ ପ୍ରକାଶି ।

କଳ୍ପ ବୋଲେ ରେ ମାନବା ମୋର ଅଟୁ ଭକ୍ଷ
ହୋଇଲୁ ମୋହର ବଳ କେ ତୋର ସପକ୍ଷ ।
କଳପାସୁର ଧରିଛି ପଞ୍ଚଧାର ଶୂଳ
କର୍ଣ୍ଣଙ୍କୁ ଘୋଟିଲା ଆସି ହୋଇ କୋପାନଳ ।
ଅସୁରର ମୂର୍ତ୍ତି ଦେଖି ଆଦିତ୍ୟର ବାଳ
କରେ ଧନୁଶର ଧରେ ତେଜେ ଅନର୍ଗଳ ।
ରାଧାର ନନ୍ଦନ ଯେହ୍ନ କକ୍ଷା ଜଗଜ୍ଜେଠି
ଆକର୍ଣ୍ଣ ପୂରାଇ ଶର କରିଲେକ ବୃଷ୍ଟି ।
ଆଦିତ୍ୟର ବଳେ ଦୈତ୍ୟ ଅଟେ ବଳବନ୍ତା
କଲ୍ପେ ଆୟୁ ଦେଇଛନ୍ତି ମିହିର ଦେବତା ।
ଯୁକତେ କର୍ଣ୍ଣ ଅଟଇ ଆଦିତ୍ୟ ନନ୍ଦନ
ଦୁହେଁ ସମକକ୍ଷ କେହି ନ ହୁଅନ୍ତି ଆନ ।
ଅଭେଦ କବଚ ଆଦି ଯାହା ଅଛି ସଙ୍ଗେ
ଅଲୌକିକ ବର ଦେଇ ଅଛନ୍ତି ବିରଞ୍ଚି ।
ଆକାଶୁ ଛୁଡ଼ିପଡ଼ଇ ଯେସନେ ନିର୍ଘାତ
କର୍ଣ୍ଣ ବାଣଘାତେ ପୃଥ୍ୱୀ ହୁଏ ସେହିମତ ।
ଈଶ୍ୱର ପୁଚ୍ଛା କଲେକ ଶୁଣ ହେ ଗୋବିନ୍ଦ
ଗିରିବର ଟଳିଯାଏ କଏ ଏ ଶବଦ ।
ଗୋବିନ୍ଦ ବୋଇଲେ ଶୁଣ ଆହେ ଦେବରାଜ
କଳ୍ପ ଦାନବ ଅହ୍ଲାଦ କରିଥିଲା ବିଜେ ।
କର୍ଣ୍ଣ ଆସିଥିଲା ବେଣ୍ଟ ପାରିଧି ନିମନ୍ତେ
ତାର ଭୁଲେ କରେ ଯୁଦ୍ଧ ଦୈତ୍ୟ କୋପଚିତ୍ତେ ।
ରୁଦ୍ର ବୋଇଲେ ବିରଞ୍ଚି ଦେଇଛନ୍ତି ବର
କଲ୍ପେ ପରଯନ୍ତେ ସେହୁ ହୋଇବ ଅମର ।
କର୍ଣ୍ଣର ହସ୍ତରେ ବଧ ହୋଇଲା କଳପା
କର୍ଣ୍ଣର ତାହାର ଦ୍ୱନ୍ଦ୍ୱ ହେଲା ଏବେ କପାଁ ।
ଗୋବିନ୍ଦ ବୋଇଲେ କର୍ଣ୍ଣ ଆଦିତ୍ୟଙ୍କ ସୁତ
କର୍ଣ୍ଣ କଳପା ଏ ଦୁହେଁ ସମ ବଳବନ୍ତ ।
ହରିହର ଦେଖୁଛନ୍ତି ଗିରିଶିଖେ ଉଠି
ଅହ୍ଲାଦ ବଦ୍ଧାର କର୍ଣ୍ଣ କରେ ଶରବୃଷ୍ଟି ।
ଆଦିତ୍ୟ ବରରେ କଳ୍ପ ଅଟେ ମହାବୀର
ଶସ୍ତ୍ରରେ ନ ଭେଦଇ କର୍ଣ୍ଣ ତୀକ୍ଷ୍ଣଶର ।
ଆଦିତ୍ୟ ଉଦୟ ଆସି ହେଲା ପୂର୍ବଦିଗେ
ପୃଥ୍ୱୀ ନ ସହେ ଦୁହିଙ୍କ ଘୋର ରଣଯୋଗେ
କଳପାସୁର ମାଇଲା ପଞ୍ଚଧାର ଶୂଳ
ଘାଏ ଅସାଷ୍ଟାମ ହେଲା ରାଧାର ଦୁଲାଳ ।

ଦେଖିଣ ପ୍ରତିଜ୍ଞା କଲା ସେ ଦୈତ୍ୟ ଚଣ୍ଡାଳ
ବୋଇଲା ମୋ ସଙ୍ଗେ ରଣ କପାଁ କଲୁ ବାଳ
ଆଦିତ୍ୟ ଦେବତା ରଶ୍ମି ତେଜରେ ପ୍ରକାଶି
କୁଣ୍ଡଳୁ ଅମୃତ ସ୍ରବ କର୍ଣ୍ଣ ତୁଣ୍ଡେ ପଶି ।
ଅମୃତ ରସ ପିବନ୍ତେ ହେଲା ବଡ଼ ତେଜ
ଦୁଇଗୁଣେ ହେଲା ତାର ତହୁଁ ତେଜବୀର୍ଯ୍ୟ ।
ସାଷ୍ଟାଙ୍ଗରେ କର୍ଣ୍ଣବୀର ହୋଇଣ ସଚେତ
ଶୀଘ୍ରରେ ଉଠିଲା କରି ପ୍ରତିଜ୍ଞା ବହୁତ ।
ତାହା ଦେଖି ବାହାନାଦ କରିଲା କଳପା
ବୋଇଲା ଆରେ ମାନବା ଏଡ଼େ ଗର୍ବ କପାଁ
କୁଳିଶ ଚନ୍ଦ ପରାୟ ଶକ୍ତିକୁ ବୁଲାଇ
କର୍ଣ୍ଣର ଉପରେ ବେଗେ ପିଟିଲାକ ନେଇ ।
ବଜ୍ରାଘାତ ପ୍ରାୟ କର୍ଣ୍ଣ ହେଲା ଅଶକତ
ସନ୍ନିଧେ ପ୍ରବେଶ ହେଲା ଆସି ସେ ଦଇତ ।
କଠୋର ନୟନେ ଗୃହେଁ ଦେବତା ଅରିର
କର୍ଣ୍ଣ ହସ୍ତରୁ ଧନୁକୁ ନେଲା ସେ ଓଟାରି ।
ମୁକୁଟ କୁଣ୍ଡଳ ଆଦି ଯାହା ଯାହା ଥିଲା
ନିର୍ଦ୍ଦୟ ଦାନବ ସବୁ ଛଡ଼ାଇ ଘେନିଲା ।
ବୋଇଲା ଆରେ ମାନବା ବୃଥା ଗଲୁ ନାଶ
କାଲି ପ୍ରଭାତେ ଭକ୍ଷିବି ତୋହର ମାଉଁସ ।
ଏତେ ବୋଲି ଉପେକ୍ଷିଣ ଚଳିଗଲା ଦୈତ୍ୟ
ପୁଣି ପ୍ରଭାତେ ଉଦୟ ହୋଇଲେ ଆଦିତ୍ୟ ।
ଦିନକରଙ୍କ କିରଣ କର୍ଣ୍ଣ ଦେହେ ଲାଗି
ଅମୃତ ସ୍ରବନ୍ତେ ବୀର ଉଠିଲାକ ବେଗି ।
ଚେତନା ପାଇଣ ବୀର ଗୃହେଁ ଚଉକତି
ଧନୁ ତୋଣ ନ ଦେଖିଣ ବିରସ ତା ମତି ।
ଏକ୍ଷଣି ଆସିଲେ ମୋତେ ମାରିବ ଦଇତ
ଭାଳଇ ସେ କର୍ଣ୍ଣବୀର ହୋଇଣ ଚକିତ ।
ଏମନ୍ତ ସମୟେ ହରି ହର କଲେ ବିଜେ
ବ୍ରାହ୍ମଣ ରୂପେ ଭେଟିଲେ ମାର୍ତ୍ତଣ୍ଡ ଆତ୍ମଜେ ।
କର୍ଣ୍ଣ ଦେଖିଣ ବୋଲଇ କଏ ତୁମ୍ଭେ ଅଟ
ମୋତେ କଷ୍ଟ ଦେଲା କଳ୍ପ ଅସୁର ପାପିଷ୍ଠ ।
ମୋତେ ମାରିଣ ପ୍ରତିଜ୍ଞା କରିଅଛି କାଲି
ଏହିକ୍ଷଣି ମୋର ମାଂସ ଖାଇବ ସେ ବୋଲି ।
ପୁଣି ବୋଲେ ମୃତମାଂସ ମୁଁ ଅଟେ ଯୁକତେ
ତୁମ୍ଭଙ୍କୁ ପାଇଲେ ସେହୁ ଛାଡ଼ିଦେବ ମୋତେ ।

ଦ୍ୱିଜେ ବୋଇଲେ ଶୁଣତେ ତୁ ଶାସ୍ତ୍ରେଇମଲ୍ଲ
କସ ପ୍ରମାଦ ଆମ୍ଭଙ୍କୁ ଥିଲେ ତୋର ଭୁଲ ।
କର୍ଣ୍ଣ ବୋଲଇ ସେ ମୋତେ ମାଇଲା ଦିଘାନ୍ତ
ଏ ଘାନ୍ତ ମୋ ଧନୁ ତୂଣ ନେଲା ମନେ ଚନ୍ତ ।
ଈଶ୍ୱର ବୋଇଲେ ତୋତେ ଧନୁଶର ଦେଲେ
ଆମ୍ଭଙ୍କୁ ତୁ ରକ୍ଷାକର ପାରବୁ କ ଭଲେ ।
କର୍ଣ୍ଣ ବୋଇଲେ ପଣ୍ଡାଏ ଦ୍ରୋଣ ମୋର ଗୁରୁ-
ପର୍ଶୁରାମ ସବୁ ବିଦ୍ୟା ଆମ୍ଭେ ଶିକ୍ଷାକରୁ ।
ସେ ଅସ୍ତ୍ର ତା ଅଙ୍ଗେ ପଡ଼ି ହୋଇଗଲା ଚୂର
ସମର କରନ୍ତେ ଧ୍ୱଂସ ନୋହିଲା ଅସୁର ।
ଅଭେଦ କବଚ ମୋର ପିତାର ପ୍ରସନ୍ନେ
ଆଉ କସ ଅସ୍ତ୍ର ଦେବ ତୁମ୍ଭେ ଦେବଜନେ ।
ପୁଣି ବୋଲେ କହୁ ତୁମ୍ଭେ ନ କହୁଛ ଭଲ
କ୍ଷଣେହେଁ ନ ଥାଇ ଏଥି ପଳାଇବା ଭଲ ।
ବ୍ରାହ୍ମଣ ବୋଇଲେ ଆମ୍ଭେ ପଳାଇବୁ ଡରେ
କ୍ଷତ୍ରୀ ହୋଇ ତୁ କେମନ୍ତେ ଝୁଞ୍ଜିବୁ ସମରେ ।
କର୍ଣ୍ଣ ବୋଲେ କ୍ଷତ୍ରିୟଙ୍କ ଏହି ଅଟେ ଧର୍ମ
ହାରିବା ଜିଣିବା ସିନା ଅଟେ ଏହା କର୍ମ ।
ଅଜଗବ ଧନୁକୁ ସେ ସୁମରିଲେ କାଶୀ
ଆର୍ଦ୍ରା ବିଳ ସମାନେ ସେ ପ୍ରବେଶିଲା ଆସି ।
ଈଶ୍ୱର ବାମ କନିଷ୍ଠ ଅଙ୍ଗୁଳି ନଖଟି
ନବନଶି କୁଠାରରେ ପକାଇଲେ କାଟି ।
ସେହି ନଖ ଗୋଟିକ ସେ ହୋଇଲା ନାରାଚ
ସେ ଅସ୍ତ୍ରର ନାମ ତହୁଁ ହେଲେ ବାଣେଶ୍ୱର ।
କୃଷ୍ଣଙ୍କ ବାମ କନିଷ୍ଠ ଅଙ୍ଗୁଳିର ନଖ
ସେ ଅସ୍ତ୍ର ହୋଇଲା ନଳବାଣ ନାମେ ତାକ ।
ହରି ହର ନେଇ ଦେଲେ ଦେଇ କର୍ଣ୍ଣ କର
ବୋଇଲେ ଏ ଅସ୍ତ୍ର ଘେନ ଅସୁରକୁ ମାର ।
କର୍ଣ୍ଣ ବୋଇଲା ପଣ୍ଡା ହେ ଦ୍ରୋଣ ଆମ୍ଭ ଗୁରୁ
ଅନ୍ୟ ଲୋକ ଅସ୍ତ୍ର ଆମ୍ଭେ ଗ୍ରହଣ ନ କରୁ ।
ତୁମ୍ଭ ଅସ୍ତ୍ରକୁ ଗ୍ରହଣ ମୁହିଁ ନ କରିବି
ତୁମ୍ଭେ ବେନି କଏ ଆଗ ସ୍ୱରୂପ ବୁଝିବି ।
ଈଶ୍ୱର ବୋଇଲେ ବୁଝେଁ ଏଥୁ ହରିହର
କଳ୍କି ଭୟେ ଲୁଚିଅଛୁ ଆସି ବନସ୍ତର ।
କର୍ଣ୍ଣ ବୋଲେ ତୁମ୍ଭେ ଯେବେ ହରିହର ବେନି
ଦୈତ୍ୟ ବଧି ନ ପାରିଲ ଏହି ଶସ୍ତ୍ର ଘେନି ।

ଶିବ ଭଣି ବରଦେଲ ତୋ ପିତା ବିରଞ୍ଚି
ଦେବେ ଦାନବେ ଅବଧ ବୋଲି ମାଗିଅଛି ।
ମନୁଷ୍ୟ ତାହାର ଭକ୍ଷ ଜାଣି ସେହୁ କନା
ତୁଚ୍ଛକରି ନ ମାଗିଲା ନ କରି ଗଣନା ।
ଈଶ୍ୱର ବୋଇଲେ ତୁହି ନରକୁଳେ ଜାତ
ବିଶେଷେ ଦେଇଛୁ ବର ହୋଇଣ ଯାଚିତ ।
ଆହୁରି ବର ଦେଇଛୁ ତୋହର ପିଅର
ଅସ୍ତ୍ର ଶସ୍ତ୍ର ନ ଭେଦିବ ଶରୀରେ ତାହାର ।
ଅସ୍ତ୍ରେ ଶସ୍ତ୍ରେ ବଧ ତହୁଁ ନୁହେଁ ଯାତୁଧାନ
ତେଣୁ ଅଙ୍ଗୁଷ୍ଠିର ନଖ କରିଲୁ ଛେଦନ ।
କର୍ଣ୍ଣ ବୋଇଲେ ତୁମ୍ଭଙ୍କୁ ଚହ୍ନି ନ ପାରିଲି
ନାନାବିଧ ତୁକାର ବାକ୍ୟ ତେଣୁ ମୁଁ ବୋଇଲି
ସ୍ୱାମି ହେ ଅଜ୍ଞାନ ଦୋଷ ମୋହର କ୍ଷମିବ
ଦୈତ୍ୟ ବଧଯାଏ ମୋତେ ଦୃଷ୍ଟି ଦେଉଥିବ ।
ଏହା କହି ତାଙ୍କ ପାଦେ ହେଲା ପରଣାମି
ଦୈତ୍ୟକୁ ମାର ବୋଲିଣ ଆଜ୍ଞା ଦେଲେ ସ୍ୱାମି
ଯେତେ ଦୂର ପଡ଼ନ୍ତେ ଦିଶିବ ବଇରୀ
ବିନ୍ଧିଲେ ଅସ୍ତ୍ର ଭେଦିବ ଭଣି ହରିହର ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ତେଣୁକରି ଦୃଷ୍ଟିଭେଦୀ ହେଲା କର୍ଣ୍ଣରଥୀ ।
ବରଦେଇ ଲୁଚିଗଲେ ମନ୍ଦର ଗିରିରେ
କଳ୍କି ଅସୁର ମିଳିଲା କର୍ଣ୍ଣର ଛାମୁରେ ।
ଦୂରୁ ଦେଖି କଳ୍କାସୁର ବିସ୍ତାରିଲା ମୂର୍ତ୍ତି
ଦେଖେ ମହାତେଜେ ତେଜ କର୍ଣ୍ଣ ମହାରଥୀ
କର୍ଣ୍ଣର ଧନୁରେ ଦୈତ୍ୟ ପୁରାଇ ନାରାଚ
ରେ ରେକାର ଶବଦରେ ବିନ୍ଧିଲା ଦନୁଜ ।
ଅଭେଦ୍ୟ ବଜ୍ର ଛତିଶ ନିର୍ମିତ ଯା କାୟେ
ଆବରିଛି ହରିହର କଲେ ବରଦାୟେ ।
ସଂଗ୍ରାମେ ଶ୍ରେଷ୍ଠେଇ ମଲ୍ଲ କର୍ଣ୍ଣ ମହାରଥୀ
କ୍ଷତ୍ରକୁଳ ଅନ୍ତକ ଯାହାର ଶକତି ।
ନଳବାଣ ଭୂଜବାଣ ଗୁମ୍ଫରେ ବସାଇ
ଦୈତ୍ୟ ଉପରକୁ କର୍ଣ୍ଣ ପ୍ରହାରିଲା ନେଇ ।
ମଧ୍ୟ ଆକାଶରେ ଆସି ବଜେ ଦିନମଣି
ଆକାଶରେ ଥାଇ ଦେବେ କଲେ ଶୂନ୍ୟବାଣୀ
ଆରେ କର୍ଣ୍ଣ ଅଟେ ଏହୁ ଯେଣୁ ଦେବଶର
ଏକାବେଳେ ଅସୁରକୁ କରିବୁ ପ୍ରହାର ।

ଏ ଦୈତ୍ୟ ପୂର୍ବେ ମୋଠାରୁ ମାଗିଥିଲେ ବର
ବୋଇଲା ଶରୀର ବଜ୍ର ହୋଇବ ମୋହର ।
ତପବଳେ ମୁଁ ତାହାକୁ ବଜ୍ର କରି କ୍ଷେପି
ଅଭିଷେକ ପ୍ରାୟ କରି ଅଙ୍ଗେ ଦେଲି ଲେପି ।
କଣ୍ଠ ଜାନୁ ନାଭି ପଦ୍ମ ଏହି ସନ୍ଧିସ୍ଥାନ
ଏହି ସ୍ଥାନକୁ ନ ଲେପି କରିଛି ଗୋପନ ।
ଏବେ ଯେବେ ଦେବଶର ପେଷିବୁ ରାଧେୟ
ଏକ ବାଣକରେ ନାଶ ହୋଇବ ନିଶ୍ଚୟ ।
ମାଳାବାଣ ପ୍ରହାରିବୁ ନେଇ କଣ୍ଠତଟେ
ଭୂଜବାଣକୁ ମାରିବୁ ପୁଣି ନାଭିହୋଟେ ।
ବେଦବାଣ ବେଦସ୍ଥାନେ ପ୍ରହାର ତୁ କର
ମରୁ ମରୁ ସେ ଅସୁର ଯାଉ ପୃଥ୍ୱୀଘର ।
ଆଦିତ୍ୟଙ୍କ ବାଣୀ ଶୁଣି ମହାବୀର କର୍ଣ୍ଣ
ମାଳବାଣ ଭୂଜବାଣ ବନ୍ଧିଲା ତକ୍ଷଣ ।
ଦନୁଜ ନାଭି କଣ୍ଠକୁ କର୍ଣ୍ଣ କରି ଦୃଷ୍ଟି
ନାରାଚକୁ ପେଷିଦେଲା କରି ଦୃଢ଼ମୁଷ୍ଟି ।
ଦୃଷ୍ଟିଭେଦ ବର ତାକୁ ଦେଲେ ହରିହର
ଦୃଷ୍ଟି କରି ବନ୍ଧିଦ୍ୟନ୍ତେ ଭେଦେ ଦୁଇଶର ।
ନାଭିକଣ୍ଠେ ପ୍ରବେଶନ୍ତେ ହୋଇ ଧରାଶାୟୀ
ଗର୍ଭରେ ଶର ଭେଦନ୍ତେ କମ୍ପେ ସାତମହୀ ।
କଣ୍ଠତଟେ ବାଜି ବାଣ ପିଠିଗଲା ଫୁଟି
ରସାତଳ ପରଯନ୍ତେ ସେହୁ ଗଲା କଟି ।
କଳ୍ପୀ ପଡ଼ନ୍ତେ ଆନନ୍ଦ ହୋଇ ମହୀସ୍ଥଳୀ
କର୍ଣ୍ଣ ନିକଟେ ପ୍ରବେଶ ଶ୍ରୀଗୋବିନ୍ଦ ଶୂଳୀ ।
ହରିହର ବୋଇଲେ ହେ ବର ମାଗ କର୍ଣ୍ଣ
ଏ ମହାସୁରକୁ ତୁ ଯେ କଲୁ ନିସୂଦନ ।
ଋଷି ତପୀଙ୍କୁ ଦେଖିଲେ ନାଶେ କଉଣପ
ତୁହି ବାବୁ ରକ୍ଷାକଲୁ ସବୁ ଜପ ତପ ।
ରାଧେୟ ବୋଇଲା ବର ନ ମାଗଇ ଆନ
ମାଳବାଣ ଭୂଜବାଣ ମୋତେ କର ଦାନ ।
ଶ୍ରୀହରି ବୋଇଲେ ଯେବେ ମାଗୁ ତେବେବେଳୁ
ଅପାଲଟ ଶର ଏହୁ କାହିଁ ସହରିବୁ ।
ଦାନେ ଶୂରବନ୍ତ ତୁହି ଅଟୁରେ ରାଧେୟ
ଦୈତ୍ୟମାଗି ଦେବବେ ଯେ ଧରି ନିଜକାୟ
ଏହି ଅସ୍ତ୍ରକୁ ପାଇଲେ ହୋଇବ ସେ କଳ୍ପୀ
ତେଣୁକରି ନାଶିବେ ସେ ବିପ୍ର ଋଷି ତପୀ ।
ତୋ ଜାନୁ ଶର ସହରି ଏହି ଅସ୍ତ୍ର ବେନି
କଠୋର ସମର ହେଲେ ବାନ୍ଧିବୁ ତୁ ଘେନି
ବ୍ରହ୍ମା ମଘବା କୁବେର ପୁଣି ଚନ୍ଦ୍ର ସୂର୍ଯ୍ୟ
ଯମ ବରୁଣ ଅନଳ ହୋଇବେ ଦହ୍ୟ ।
ଦେବଲୋକ ନାଗଲୋକ ନର ଆଦିକରି
ଏ ଅସ୍ତ୍ର ଯୋଖିଲେ କେହି ନ ହୋଇବ ସରି
ଏକଗୋଟି କଥା ତୋତେ ମାଗୁଅଛୁ ବାବୁ
ହରିହର ଦୁହିଙ୍କୁ ଏ ଅସ୍ତ୍ର ନ ମାରିବୁ ।
ଯେତେବେଳ ଯାଏ ଅସ୍ତ୍ର ଥିବ ତୋର ଜାନୁ
ପଞ୍ଚଭୂତ ଆତ୍ମା କେବେ ନ ଛାଡ଼ିବ ତନୁ ।
ବରଦେଇ ଅନ୍ତର୍ହିତ ହେଲେ ହରିହର
ଜାନୁ ଶର ସେ ବାଣକୁ ରଖେ କର୍ଣ୍ଣବୀର ।
ଶୁଣ ବୈବସ୍ୱତ ମନୁ ବୋଲନ୍ତି ଅଗସ୍ତି
ସେ ଦୁଇବାଣ ମାଗିଲେ ଯାଇ ଦେବୀ କୁନ୍ତୀ
ସତ୍ୟବାଦୀ ଜିତେନ୍ଦ୍ରିୟ ଦାନେଶ୍ୱର କର୍ଣ୍ଣ
କୁନ୍ତୀଙ୍କୁ ସେ ଦୁଇ ଅସ୍ତ୍ର କରିଲେ ପ୍ରଦାନ ।
ଅସ୍ତ୍ର ଘେନି ଇନ୍ଦ୍ରପ୍ରସ୍ଥେ ଗଲେ ପଣ୍ଡୁରାଣୀ
ପ୍ରବେଶ ପାଣ୍ଡବ ସଙ୍ଗେ ଯହିଁ ଚକ୍ରପାଣି ।
କର୍ଣ୍ଣର ସମସ୍ୟାଯାକ ତାହାଙ୍କୁ କହିଲେ
ଅର୍ଜ୍ଜୁନ ହସ୍ତରେ ସେହି ଦୁଇଅସ୍ତ୍ର ଦେଲେ ।
ଅସ୍ତ୍ର ଦେଖିଣ ହରଷ ହୋଇଲେ ଅର୍ଜ୍ଜୁନ
ସେ ଅସ୍ତ୍ରକୁ ନିଜତୂଣେ କରିଲେ ସ୍ଥାପନ ।
ତୁ ଯେ ବୈବସ୍ୱତ ମନୁ ପଚାରିଲୁ ମୋତେ
ଅଳପ ଅଳପ କରି କହିଲଇଁ ତୋତେ ।
ଜୟ ତୁ ଜୟ ତୁ ସୃଷ୍ଟି କରତା ବିରଞ୍ଚି
ଛପନକୋଟି ଜୀବଙ୍କୁ ସଦା ଅଛୁ ସଞ୍ଚି ।
ପୃଥ୍ୱୀ ଜନ ଚିନ୍ତାମଣି ତୁହି ଦିନମଣି
ଶାରଳା ଦାସ ତୋ ପାଦେ କରଇ ବିନତୀ ।

## ମହାକ୍ଷତ୍ରୀମାନଙ୍କର ବଳାବଳ ଓ ଯୁଦ୍ଧର ନିୟମ

ଅଗସ୍ତିକୁ କହୁଛନ୍ତି ମନୁ ନୃପନାଥ
ହେ ମୁନି କୃତାର୍ଥ କଲ ଶୁଣାଇ ଭାରତ ।
ଆଉ କେଉଁ କଥା ଅଛି କରନ୍ତୁ ପ୍ରକାଶ
ତାହା ଶୁଣିବାକୁ ମୋର ବଳଇ ମାନସ ।

ଅଗସ୍ତି ମୁନି କହନ୍ତି ଆହେ ମୁନିବର
ଯାହା ମୁଁ କହୁଛି ଶୁଣ ମନକର ସ୍ଥିର ।
ସମସ୍ତ ନୃପତି ଘେନି ରାଜା ଦୁର୍ଯ୍ୟୋଧନ
ସଭାରେ ବିଜୟ କରି ବୋଲଇ ବଚନ ।
ଆହେ ନରପତିଗଣ ଶୁଣ ମୋର ଗିର
ତୁମ୍ଭମାନଙ୍କ ବଳରେ କରିବି ସମର ।
ପଞ୍ଚ ପାଣ୍ଡବେ ଅଟନ୍ତି ଅତ୍ୟନ୍ତ ଦୁର୍ଦ୍ଧର୍ଷ
ସେମାନଙ୍କୁ ମାରି ରଟ ମହୀସ୍ଥଳେ ଯଶ ।
ତେବେ ଯାଇ ଅଭିମାନ ରହିବ ମୋହର
ଶୁଣି ରାଜାମାନେ ତହୁଁ କରିଲେ ଉତ୍ତର ।
ଶୁଣିମା ହେଉ ହେ ଦେବ ନୃପ ଚୂଡ଼ାମଣି
ପାଣ୍ଡବମାନେ ସ୍ୱଭାବେ ବୀରଙ୍କ ଅଗ୍ରଣି ।
ପୁଣି ଶ୍ରୀକୃଷ୍ଣ ତାଙ୍କର ଅଟନ୍ତି ସହାୟ
ଏମନ୍ତ ସ୍ଥଳେ କରିବ କିଏ ପରାଜୟ ।
ତୁମ୍ଭ ଅଭିମାନ ଘେନି କରିବୁ ସମର
ଏ ରଣ ମହାଯାଗରେ ତେଜିବୁ ଶରୀର
ନନ୍ଦିଘୋଷ ରଥ କୃଷ୍ଣ କରି ଦରଶନ
ଯୁଦ୍ଧେ ପଡ଼ି ମୋକ୍ଷଧାମେ କରିବୁ ଗମନ ।
ତାହା ଶୁଣି କୁରୁପତି ବିଜେ ଭୀଷ୍ମ ତହିଁ
ବୋଇଲା ପାଣ୍ଡବ ସଙ୍ଗେ ଯୁଦ୍ଧ କରିବଇଁ ।
ବଡ଼ ବଡ଼ ରାଜାମାନେ ଘେନି ନିଜ ସୈନ୍ୟ
ଆମ୍ଭ ସପକ୍ଷରେ ଆସି ଦେଲେ ଯୋଗଦାନ ।
ଆମ୍ଭ ସୈନ୍ୟମାନେ ପୁଣି ବଳେ ବଳୀୟାର
ଅଳ୍ପମାତ୍ର ସୈନ୍ୟଛତ୍ର ଯୁଧିଷ୍ଠିରଙ୍କର ।
ହେ ଗାଙ୍ଗେୟ ରଣେ ତାଙ୍କୁ କରିବା ନାଶ ତ
ଏ ସକଳ କଥା କହ କରି ମୋତେ ସତ ।
ଏପରି ଶୁଣି ଗାଙ୍ଗେୟ ବୋଇଲେ ବଚନ
ଶୁଣ ମାନଚକ୍ରବର୍ତ୍ତୀ ରାଜା ଦୁର୍ଯ୍ୟୋଧନ ।
ମେଳହେଲେ ଏତେ ସୈନ୍ୟ ଆସି ଏ ସ୍ଥାନରେ
ସମର ହୋଇବ ଯେବେ ବିନା ଉଦ୍ବୋଧରେ
ତେବେ ତିନିଦିନ ଅର୍ଦ୍ଧ ଦିବସ ସମୟେ
ଭୂରିଶ୍ରବା ଯୁଝି ପେଷିଦେବେ ଯମାଳୟେ ।
ଉଦ୍ବୋଧ ନ କରି କୃତବର୍ମା କଲେ ଯୁଦ୍ଧ
ତିନିଦିନେ ସମସ୍ତଙ୍କୁ କରିଦେବେ ଦଗ୍ଧ ।
ଶଲ୍ୟ ମହାରଥୀ ବେନି ଦିବସରେ ଜାଣ
ଯୁଦ୍ଧକରି ସମସ୍ତଙ୍କ ଘେନିବେ ପରାଣ ।

ବୀର ଅଶ୍ୱତ୍ଥାମା ଦ୍ରୋଣ ଗୁରୁଙ୍କର ସୁତ
ଏକଦିନେ କରିଦେବେ ସମସ୍ତଙ୍କୁ ହତ ।
କର୍ଣ୍ଣ ଯେବେ ନିଉଦ୍ବୋଧେ କରିବ ସମର
ତିନି ପ୍ରହରେ ସେ ପେଷିଦେବ ଯମପୁର ।
ନିଉଦ୍ବୋଧେ ଦ୍ରୋଣଗୁରୁ ପଶିଲେ ସମରେ
ଅବଶେଷ ନ ରହିବ ଦୁଇ ପ୍ରହରରେ ।
ମୁହିଁ ଯେବେ ଧନୁ ଧରି ସମର କରିବି
ଏକ ପ୍ରହର ମଧ୍ୟରେ ସର୍ବ ବିନାଶିବି ।
ଉଦ୍ବୋଧ ନ କରି ପାର୍ଥ ଧରିଣ ଗାଣ୍ଡିବ
ରଣ କଲେ ମୁହୂର୍ତ୍ତକେ ସର୍ବ ନାଶଯିବ ।
ଭୀଷ୍ମଙ୍କ ବଚନ ଶୁଣି ରାଜା ଦୁର୍ଯ୍ୟୋଧନ
ବୋଇଲା ସକଳେ ଶ୍ରେଷ୍ଠ ହୋଇଲା ଅର୍ଜ୍ଜୁନ ।
ଦ୍ରୋଣଙ୍କର ଶିଷ୍ୟ ହୋଇ ଦ୍ରୋଣଙ୍କୁ ଜିଣିଲା
ଆଉ କେଉଁପରି ଯୁଦ୍ଧେ ଜୟୀ ହେବ ଭଲା ।
ପୁଣି ଭୀଷ୍ମଦେବ ତହୁଁ କରିଲେ ଉତ୍ତର
ରଣ କଲେ କମେ ସୃଷ୍ଟି ଆଉ ମୋର କର
ଦ୍ରୋଣ କର୍ଣ୍ଣଙ୍କର ହସ୍ତୁ ହୁଏ ଦକଦକ
ଏହି ପ୍ରକାରେ ଅଟନ୍ତି ଧାନୁଷ୍କ ଯେତେକ ।
କେବଳ ଅର୍ଜ୍ଜୁନ ଅଟେ ନିସ୍ତମ ଶରୀର
ଅବ୍ୟର୍ଥ ଶର ସନ୍ଧାନ ଅଟେ ତେଣୁ ତାର
ସତୁରି ସହସ୍ର ବଳ କାହା ଧନୁ ଜାଣ
ଅଶୀ ନବେ ପଞ୍ଚାଣୋଇ ପର୍ଯ୍ୟନ୍ତ ପ୍ରମାଣ ।
ଏତେକ ବଳରେ ଧନୁ ଅଟେ ସେନାଙ୍କର
ମାତ୍ର ଲକ୍ଷେବଳ ଅଟେ ଗାଣ୍ଡିବ ଧନୁର ।
ତେଣୁକରି ରଣେ ସେହୁ ଅଟଇ ଅଜେୟ
ତାହା ପ୍ରତ୍ୟକ୍ଷ କରିଛୁ ଆହେ କୁରୁରାୟ ।
ବୋଲଇ ଦ୍ରୋଣଙ୍କ ଶିଷ୍ୟ ଅଟଇ ଅର୍ଜ୍ଜୁନ
ସେ କଥାକୁ କିଏ ଅବା କରିବ କି ଆନ ।
ତାହା ହେଲେ କିସ ହେନ୍ତା ଆହେ ନୃପବର
ଈଶ୍ୱରଙ୍କୁ ଜୟ କଲା କରିଣ ସମର ।
ତହୁଁ ଦେବ ଦେବ ହର ହୋଇ ତୋଷମନ
ପାଶୁପତ ଅସ୍ତ୍ର ତାକୁ କରିଲେ ପ୍ରଦାନ
ପୁଣି ଖାଣ୍ଡବ ବନକୁ ଯେ କାଳେ ଦହିଲେ
ସେକାଳେ ଇନ୍ଦ୍ରାଦି ଦେବେ ସକଳେ ହାରିଲେ
ତହୁଁ ଇନ୍ଦ୍ରାଦି ଦେବତା ହୋଇଣ ଏକତ୍ର
ପ୍ରଦାନ କରିଲେ ତାକୁ ନାନା ଦେବଅସ୍ତ୍ର ।

ସୁଭଦ୍ରା ହରଣ କାଳେ ଦେଖିଛ ତ ପୁଣ
ରାମ ହାରିଗଲେ ତାଙ୍କ ସଙ୍ଗେ କରି ରଣ ।
ଶତଧନୁ ଯେ କାଳରେ ଶରଣ ପଶିଲା
ତା ଛଳେ ହରିଅର୍ଜୁନ ସମର ହୋଇଲା ।
ନିଜେ ନାରାୟଣ ତହୁଁ ହେଲେ ପରାଜୟ
ଗୋଧନ ହରଣ କାଳେ ଦେଖିଛ ତ ରାୟ ।
ମନଭେଦୀ ଶରକୁ ସେ ପେଶିଲେ ସେକ୍ଷଣି
ମୁହୂର୍ତ୍ତିକେ ସର୍ବେ ସୈନ୍ୟ ଲୋଟିଲେ ଧରଣୀ ।
ଏ ସର୍ବ ବଚନ ଶୁଣି ରାଜା ଦୁର୍ଯ୍ୟୋଧନ
ବୋଇଲେ ସମର ଆଉ ହୋଇବ କେସନ ।
ଅର୍ଜୁନକୁ କିଏ ଅବା କରିପାରେ ଜୟ
ଶୁଣି ଭୀଷ୍ମ ବୋଲୁଛନ୍ତି ଅଛି ତା ଉପାୟ ।
ଏହି ଭାରତ ସମରେ ନିୟମ କରିବା
ଦେବତା ପ୍ରଦତ୍ତ ଶର କେହି ନ ମାରିବା ।
ଯେ ଅସ୍ତ୍ର ଶିକ୍ଷା ହୋଇଛି ଗୁରୁଙ୍କ ମୁଖରେ
ସେ ସବୁ ଅସ୍ତ୍ର ପ୍ରୟୋଗ ହୋଇବ ସମରେ ।
ଶକୁନି ମନ୍ତ୍ରୀକୁ ଏବେ ପେଷ ହେ ରାଜନ
ଡକାଇ ଆଣ ପାଣ୍ଡବମାନଙ୍କୁ ଏ ସ୍ଥାନ ।
ମଣାଇ କହିବା ତାଙ୍କୁ ନାନାଦି ପ୍ରକାରେ
ସର୍ବେ ନିୟମ କରିବା ଥାଇ ଏ ଠାବରେ ।
ଦୁର୍ଯ୍ୟୋଧନ ଆଜ୍ଞାକଲେ ଶକୁନିକୁ ଚାହିଁ
ପାଣ୍ଡବଙ୍କୁ ଡାକି ଆଣ ଜଇନ୍ତାକୁ ଯାଇ ।
ଶୁଣି ଶକୁନି ସଚିବ କରିଲେ ଗମନ
ଜଇନ୍ତାରେ ପାଣ୍ଡବଙ୍କୁ ହେଲେ ଦରଶନ ।
ଶକୁନି ବୋଲନ୍ତି ଧର୍ମ ବଦନକୁ ଚାହିଁ
ହସ୍ତିନାକୁ ଚାଲ ଏବେ ତୁମ୍ଭେ ପାଞ୍ଚଭାଇ ।
ସେ ସ୍ଥାନେ ପଡ଼ିବ ଯୁଦ୍ଧ ନିୟମ ସକଳ
ସେଥିକି ପେଷିଲେ ମୋତେ କୁରୁମହୀପାଳ ।
ତାହା ଶୁଣି ବୃକୋଦର ବୋଇଲା ବଚନ
ଏଠାକୁ ନଇଲ କପାଁ କୌରବ ରାଜନ ।
ଆମ୍ଭେମାନେ ଯିବୁ କପାଁ ଆଜ୍ଞାବନ୍ଧ ହୋଇ
ଏ କଥା ଆମ୍ଭଙ୍କୁ ବଡ଼ ଦୂଷଣ ଅଟଇ ।
ଶୁଣି ଶକୁନି ବୋଇଲା ଶୁଣ ବାତସୁତ
ତୁ ଯାହା କହିଲୁ ତାହା ଅଟଇ ଯୁକତ ।
ସେ ସଭାରେ ଛନ୍ତି ନାନାଦେଶ ମହୀପାଳ
ନାନାଦି ଯୁକ୍ତିରେ ସବୁ ହୋଇବ ନିର୍ମଳ ।

ସେ ସଭାକୁ ଗଲେ କପାଁ ହେବ ଅପମାନ
କାଳେ ତୁମ୍ଭଙ୍କୁ ପ୍ରାପତ ହେବ ସେହି ସ୍ଥାନ ।
ଅତଏବ ଚାଲ ସର୍ବେ ହସ୍ତିନା ନଗରେ
ଶୁଣି ପାଞ୍ଚଭାଇ ଗଲେ କୃଷ୍ଣ ସହିତରେ ।
ମାନ ଗୋବିନ୍ଦ ନିକଟେ ହୋଇଲେ ପ୍ରବେଶ
ଏକତ୍ରେ ବସିଲେ ସର୍ବେ ହୋଇ ହସ ହସ ।
ଯୁଧିଷ୍ଠିର ପଚାରିଲେ ଶୁଣ ସହଦେବ
କେବଣ ଦିନେ ସମର କରିବା ଆରମ୍ଭ ।
ଶୁଣି ସହଦେବ ତାଙ୍କୁ ଜଣାଏ ଉତ୍ତର
ବିଷ୍ଟି ଶୁକ୍ଳ ତ୍ରୟୋଦଶୀ କାଲି ବୁଧବାର ।
କାଲି ତ ଉତ୍ତମ ଦିନ ଜାଣ ନୃପବର
ଆରମ୍ଭ କରନ୍ତୁ ଏବେ ଭାରତ ସମର ।
ଏ କଥା ଶୁଣି ସମସ୍ତେ ହୋଇଲେ ସମ୍ମତ
ମାନଗୋବିନ୍ଦ ବୋଇଲେ ଶୁଣ ଧର୍ମସୁତ ।
ଭାଇ ଭାଇରେ ତ ଆମ୍ଭେ କରୁଛୁ ସଂଗ୍ରାମ
ସମସ୍ତେ ଏକମନରେ କର ଏ ନିୟମ ।
କାହାରି ମନରେ ହିଂସା କପଟ ନ ଧର
ଏହା ହେଉଅଛି ଧର୍ମ ଭାରତ ସମର ।
ଏଥେ ସାକ୍ଷୀ ହୋଇଥିବେ ପ୍ରଭୁ ନାରାୟଣ
ଧର୍ମ ପ୍ରମାଣେ ହୋଇବ ଶେଷେ ହାରି ଜିଣ
ଦେବଶର ଏ ସମରେ କେହି ନ ପେଷିବ
ମନଭେଦି ନ ମାରିବେ ମଧ୍ୟମ ପାଣ୍ଡବ ।
ଗୁରୁମୁଖେ ଯେଉଁ ଅସ୍ତ୍ର ଶିକ୍ଷାଅଛି ହୋଇ
ପ୍ରୟୋଗ କରିବ ତାହା ରଣମଧ୍ୟେ ଥାଇ ।
ସମରକାଳେ ଯାହାକୁ ଯେ ପାରିବ ମାରି
ଯୁଦ୍ଧ ରହିଲେ ବୁଝିବ ନିଜ ମିତ୍ରପରି ।
ହାସ ପରିହାସ ଖେଳା କରିବ ସେକାଳେ
କୁଟିଳତା ନ କରିବ କେହି ଅନ୍ତରାଳେ ।
ପୁଣି ଅସ୍ତ୍ର ଧରି ଯେବେ କରିବ ସମର
ମହାଶତ୍ରୁ ବୋଲି ମନେ କରିବ ବିଚାର ।
ଏ ସକଳ ଶୁଣି ସର୍ବେ ନିୟମ କରିଲେ
ସମସ୍ତଙ୍କ ସାକ୍ଷୀରୂପେ ଶ୍ରୀକୃଷ୍ଣ ରହିଲେ ।
ଏସର୍ବ ନିୟମ ଅଟେ ଆମ୍ଭର ପ୍ରମାଣ
ଏହାକୁ ଲଙ୍ଘିବ ଯେହୁ ପାଇବ ଦୂଷଣ ।
ଭୀଷ୍ମ ବୋଇଲେ ଶୁଣିବା ହେଉ ବାସୁଦେବ
ଯେ କାଳରେ ନନ୍ଦିଘୋଷେ ବିଜେ କରିଥିବ ।

ସାରଥି ହୋଇଣ ଥିବ ଅର୍ଜୁନ ରଥରେ
ପ୍ରତିଜ୍ଞା କରନ୍ତି ଅସ୍ତ୍ର ନ ଧରିବ କରେ ।
ଭକତ ବତ୍ସଳ ପ୍ରଭୁ କରୁଣା ସାଗର
ମୁଁ ତୁମ୍ଭ ଦାସର ଜାଣ ଅଟଇ କଙ୍କର ।
ସେ ପ୍ରତିଜ୍ଞା ନ ରହିବ ନିଶ୍ଚୟରେ ଜାଣେ
ମୋ ଯୋଗୁ ଧରିବ ଅସ୍ତ୍ର ସମର ପ୍ରାଙ୍ଗଣେ ।
ହେ ଦେବ ପୃଥିବୀ ଭାର ଉଶ୍ୱାସିବା ପାଇଁ
ଥିବ ଦୁଇପକ୍ଷ ସାକ୍ଷୀ ସ୍ୱରୂପରେ ରହି ।
ତୁମ୍ଭ ଶ୍ରୀ ମୁଖ ଗୃହିଁଣ ସମରେ ପଢ଼ିବୁ
କୋଟି ଜନମର ପାପ ଅକ୍ଲେଶେ ନାଶିବୁ ।
ଏମନ୍ତ ବିଚାରି ସର୍ବେ ସଭାରୁ ଉଠିଲେ
ଯେ ଯାହା ଗୃହକୁ ପୁଣି ଗମନ କରିଲେ ।
ପଞ୍ଚପାଣ୍ଡବେ ପ୍ରବେଶି ଜଇନ୍ତା ନଗରେ
ଯୁଦ୍ଧ ଆୟୋଜନ କଲେ ନାନାଦି ପ୍ରକାରେ ।
ଶ୍ରୀ କୃଷ୍ଣଙ୍କ ପାଦେ ସଦା ରଖିଣ ମାନସ
ଉଦ୍‌ଯୋଗ ପର୍ବ ଲେଖଇ ଶ୍ରୀ ଶାରଳାଦାସ

---

## ଶଙ୍ଖାସୁରଠାରୁ ବେଦଉଦ୍ଧାର ଓ ସ୍ତୋତ୍ର

ଜୟ ତୁ ସୃଷ୍ଟି କରତା ଜୟ ତୁ ବିରଞ୍ଚି
ଛପନକୋଟି ଜୀବଙ୍କୁ ତୁହି ଅଛୁ ସଞ୍ଚି ।
ଆକାଶ ତେଜିଣ ପିତା ନିତ୍ୟକର୍ମ ବିଧି
ଚନ୍ଦ୍ରଭାଗା ତୀର୍ଥ ଯେହୁ ଅଛଇ ପୟୋଧି ।
ବେଦପୋଥି ତଳେ ଥୋଇ କରିଲେ ଗମନ
ସେ ଜଳରେ ପଶି ପିତା କରନ୍ତେ ସ୍ନାହାନ
ଏମନ୍ତ ସମୟେ ଶଙ୍ଖାସୁର କଉଣପ
ମହାଜଳରେ ବିକାଶେ ତାହାର ସ୍ୱରୂପ ।
ରତ୍ନ ପୀଢ଼ାର ଉପରେ ବେଦପୋଥି ଥିଲା
ସେହିକାଳେ ଶଙ୍ଖାସୁର ତାହାକୁ ଭକ୍ଷିଲା ।
ଜଳରେ ତର୍ପଣ ସାରି ସେ ସୃଷ୍ଟି କରତା
ବେଦପୋଥିକି ନ ଦେଖି ମନେ କଲେ ଚିନ୍ତା
ବିକଳ ହୋଇ ଖୋଜନ୍ତି ସେହୁ ତତ୍‌କତ
ଉଚ୍ଚସ୍ୱରେ ଡାକଦେଲେ କିଏ ନେଲା ପୋଥି
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡକୁ ବ୍ରହ୍ମା କଲେ ପୁଚ୍ଛା
ନ ପାଇଣ ବେଦପୋଥି ହୋଇଗଲେ ମୂର୍ଚ୍ଛା ।
ହେ କୃଷ୍ଣ ହେକୃଷ୍ଣ ବୋଲି ବ୍ରହ୍ମା ଡାକଦେଲେ
ବେଦବରଙ୍କ ବିକଳ ଶ୍ରୀକୃଷ୍ଣ ଶୁଣିଲେ ।
ଯେଉଁ ଶ୍ରୀହରି ଅଟନ୍ତି ଦୈତ୍ୟ ନିସୂଦନ
ବୋଇଲେ ପିତା ବିକଳ କପାଇଁ ଏସନ ।
ଧାଇଁକାରେ ବଇକୁଣ୍ଠ ତେଜି ଦେବହରି
ଧ୍ୟାନରେ ଜାଣିଲେ ଶଙ୍ଖା ବେଦ କଲା ଚୋରି
ପିତାଙ୍କୁ ସାକ୍ଷାତ ଦେଇ ପ୍ରଭୁ ଦେବରାଜେ
ମୀନ ରୂପରେ ସମୁଦ୍ରେ କରିଲେ ସେ ବିଜେ ।
ସ୍ୱର୍ଣ୍ଣରୂପେ ନାରାୟଣ ତହିଁ ଅବତରି
ଜଳରେ ଖୋଜିଲେ ଗୁଣସିନ୍ଧୁ ଲୋଡ଼ିକରି ।
ମହାମନ୍ତ୍ର ପୋଥି ଗିଳି ଦୈତ୍ୟ ଶଙ୍ଖାସୁର
କ୍ଷୀର ସାଗରେ ବିକାଶେ ଶରୀର ତାହାର ।
ସୂର୍ଯ୍ୟୋଦୟ ପ୍ରାୟ ଦିଶେ ସେ ଅଗାଧ ପାଣି
ଦେଖେ ବାସୁଦେବ ମୂର୍ତ୍ତି ତାହାଠାରୁ ଜାଣି
କ୍ଷୀର ସମୁଦ୍ରରେ ପ୍ରଭୁ ଯାଇଣ ଲୋଡ଼ିଲେ
ତହିଁ ମହାବାହୁ ବିଶ୍ୱରୂପ ପ୍ରକାଶିଲେ ।
ମହାକୋପେ ଶଙ୍ଖାସୁର ନିକଟରେ ଭେଟି
ରେ କୌଣପ ବୋଲି ତାକୁ ପୁଚ୍ଛିଲେ ଲେଉଟି
ଦେଖିଲେ ଶଙ୍ଖାସୁରକୁ ମେରୁ ଗିରି ସରି
ତହିଁ ଗୁରଗୁଣ ରୂପ ବିକାଶିଲେ ହରି ।
ଶଙ୍ଖାସୁର ପଚାରେ ତୁ କେଉଁ ମହାତମା
ମୁହିଁ ଦେଖୁଅଛି ତୋର ଅତିବ ମହିମା ।
କେଶବଙ୍କର ସ୍ୱରୂପ ଦେଖି କଉଣପ
ଧାଇଁକାରେ ଘୋଟିଲା ସେ କରି ଅତି ଦର୍ପ ।
ଶଙ୍ଖାସୁର ରୂପ ଦେଖି ପ୍ରଭୁ ବନମାଳୀ
ବିଶ୍ୱରୂପ ଧଇଲେ ସେ କୋପରେ ପ୍ରଜ୍ୱଳି ।
କୂଳକୁ ଉଚ୍ଛୁଳି ଗଲା ସାଗରର ନୀର
ଚୌରାଅଶୀ କାଠି ଅଟେ ଯାହାର ଗଭୀର ।
ଶଙ୍ଖାକୁ ସେ ଆକର୍ଷିଲେ ମୀନରୂପେ ହରି
କ୍ରୋଧେ ବେନି ନେତ୍ରୁ ମହା ଅନଳ ବାହାରି
ଜଳତେଜ ବ୍ରହ୍ମାଣ୍ଡରେ ଉଠିଲା ସେ ବହ୍ନି
ସପ୍ତ ସମୁଦ୍ର ଘୋଟିଲା ଜଳୋଦ୍ୟାନ ଘେନି ।
ଶଙ୍ଖାସୁର ପଚାରେ ତୁ କେଉଁ ମହାତମା
ଦେବ ମାନବେ ଦୁର୍ଲ୍ଲଭ ତୋହର ଗାରିମା ।
ମୀନ ବୋଇଲା ରେ ଶଙ୍ଖା ମୁହିଁ ନାରାୟଣ
ଆକାଶେ ଶୁଭିଲା ମୋତେ ତୋର ଦୁଷ୍ଟପଣ ।

ତୋର ପାଦଘାରେ ସହି ନ ପାରିଲ ମହୀ
ତୋର ମୋର କାର୍ଯ୍ୟ ଅଛି ତେଣୁ ଅଛି ସହି
ଶଙ୍ଖା ବୋଇଲା ହରି ହେ ମୁହିଁ ନସ୍ତରିଲି
ତୋତେ ଭେଟିବାକୁ ବେଦ ପୋଥି ଚୋରିକଲି
ମୀନବୋଇଲେମୋଠାରେ ଭକ୍ତି ଯେବେହାଦେ
ବହନ ତୁ ପୋଥି ଦିଅ ନ ପଡ଼ ପ୍ରମାଦେ ।
ଶଙ୍ଖା ବୋଇଲା ଭକ୍ଷିଲି କ୍ଷୁଧାର ବକଳେ
କୃଷ୍ଣ ବୋଇଲେ ବିଶ୍ବାସ ନୁହେ ମୋତେ କାଳେ
ତୋର କଥା ମୋ ମନକୁ ନ ଆସେ ଯୁକତେ
ତୋ ଶରୀର ବିଦାରିବି ନଷ୍ଟେ ନଖାଘାତେ ।
ଶଙ୍ଖ ହସିଲା ମୀନର ଏହି କଥା ଶୁଣି
ବୋଲେ ଭୁଜ ଥିଲେ ନଖ ଆନ୍ତା ଚକ୍ରପାଣି ।
କିସ ଦେନ ବିଦାରିବୁ ତୁହି ମୋର ବୁକୁ
ବଡ଼ ଅସମ୍ଭବ କଥା ବୋଲୁଛି ଆମ୍ଭଙ୍କୁ ।
ଗୋବିନ୍ଦ ବୋଇଲେ ତୋତେ ହାଣିବି ମୁଁ ଦାଢ଼େ
ବେନିଫାଳ କରିଦେବି ମୋ ପ୍ରତିଜ୍ଞା ଗାଢ଼େ
ତୋତେ ବିଦାରି ଶୋଧିବି ଜାଣ ତୋରପେଟ
ତେବେ ଜାଣିଥାଅ ଯିବ ବ୍ରହ୍ମାର ସଙ୍କଟ ।
ଶଙ୍ଖା ବୋଲେ ମନ୍ଦ କହୁ ଦେବରାଜ ହୋଇ
ମାଛ ଦାଢ଼ରେ ଶଙ୍ଖାର କାୟାକ ଛୁଡ଼ଇ ।
ଗୋବିନ୍ଦ ବିଗ୍ରହ କଲେ ଶଙ୍ଖବାକ୍ୟ ଶୁଣି
ଗର୍ଭରୁ କାୟା ବିସ୍ତାର କଲେ ଚକ୍ରପାଣି ।
ଦକ୍ଷିଣ ଭୁଜରେ ଚକ୍ର ବାମରେ କୋଦଣ୍ଡ
କୌମୋଦକୀ ଗଦା ଶୋହେ ପୃଥ୍ୱୀ ନବଖଣ୍ଡ ।
ନୀଳୋତ୍ପଳ ବର୍ଣ୍ଣ କିଣି ପ୍ରଭୁ ଦେହଗୋଟି
ଅଶେଷ ବ୍ରହ୍ମାଣ୍ଡଯାକ ରୂପ ଅଛି ଘୋଟି ।
ତ୍ରୈଲୋକକୁ ମୋହୁଅଛି ନୀଳୋତ୍ପଳ ବର୍ଣ୍ଣ
ଶଙ୍ଖାକୁ ଚାହିଁଲେ କରି କଠୋର ନୟନ ।
ଦେଖିକରି ନମସ୍କାର କଲା ଶଙ୍ଖାସୁର
ବୋଲେ ନିସ୍ତରିଲି ଦେଖି ମୀନ ଅବତାର
ଜନ୍ମେ ଜନ୍ମେ ସଦା ମୁହିଁ ଭାବୁଥିଲି ଯାହା
ଦେଖିଲି ସେ ରୂପ ଏବେ ଆହେ ଜଗନ୍ନାଥା
ବଦନ୍ତି କେଶବ ନାଚଗଲୁ ଶଙ୍ଖାସୁର
ଏବେ ଚହେ ବିଦାରିବି ତୋହର ଶରୀର ।
କରଯୋଡ଼ି ଶଙ୍ଖାସୁର କରେ ତାଙ୍କୁ ପୁଚ୍ଛା
ତିନିଭୁଜେ ଅସ୍ତ୍ର ଏକଭୁଜ କିପାଁ ତୁଚ୍ଛା ।

ଗୋବିନ୍ଦ ବୋଇଲେ ଅଛି ମୁହିଁ ଚରମାଣି
ତୋ ତନୁନାଶି ହୋଇବି ମୁହିଁ ଶଙ୍ଖପାଣି ।
ଚଇତନ ପଚାରିଲେ ହେ ଅଗସ୍ତି ଶୁଣ
ବଡ଼ ଦୁର୍ଗପଦ କଥା କହିଲ ଆପଣ ।
ଶଙ୍ଖାସୁର ବେଦପୋଥି ଚୋରିକରି ନେଲା
ପୋଥି ନ ଥିବାରୁ ବ୍ରହ୍ମା କି ମନ୍ତ୍ର ପଢ଼ିଲା ।
ଶଙ୍ଖ ମୀନ କଥାବାର୍ତ୍ତା ହେଲେ ଯେତେଯେତେ
ଏହିରୂପେ ଗଲା କେତେ କାଳ ପର୍ଯ୍ୟନ୍ତେ ।
ସତ୍ୟଯୁଗ ପ୍ରଥମରୁ ପୋଥି ଚୋରିକଲା
ଲେଉଡ଼ୁ ଲେଉଡ଼ୁ ସେହି ଯୁଗ ଶେଷ ହୋଇଗଲା
ଏତେକାଳ ଯାଏ କିସ କଲା ବେଦପତି
ମନ୍ତ୍ରାଭାବେ ଶସ୍ୟ କେହ୍ନେ ଉପୁଜିଲା ପୃଥ୍ୱୀ ।
ଅଗସ୍ତି ବୋଇଲେ ଶୁଣ ଏହା ତତ୍ତ୍ୱକଥା
ପୋଥି ହଜାଇଣ ବ୍ରହ୍ମା ଲଭିଲେ ଅବସ୍ଥା ।
ହେଠ ବଦନରେ ବ୍ରହ୍ମା ପୃଥ୍ୱୀକୁ ଚାହାନ୍ତେ
ପ୍ରଥମ ଋକବେଦ ଯେ ହେଲା ହୃଦଗତେ ।
ଅତି ବିକଳ ହୋଇଣ କାନ୍ଦୁ ବେଦବର
ତହିଁରୁ ଯଜୁର୍ବେଦ ଯେ ହୋଇଲା ବାହାର ।
ଯଜୁର୍ବେଦ ହିକ୍କାସ୍ୱରେ ଯହୁଁ ଉପୁଜିଲା
ତୃଷ୍ଣାସ୍ୱ ଅଥର୍ବ ବେଦ ହୃଦେ ବିକାଶିଲା ।
ଶ୍ରୀକୃଷ୍ଣଙ୍କୁ ଦେଖି ବ୍ରହ୍ମା ହେଲେ ତୋଷମନ
ଶ୍ରୀମୁଖରୁ ସାମବେଦ ହେଲା ଉଚ୍ଚାରଣ ।
ଏହି ଚାରିବେଦ ବ୍ରହ୍ମା ମୁଖରୁ ଲେଖାନ୍ତି
ଋକବେଦ ବଶିଷ୍ଠଙ୍କୁ ବ୍ରହ୍ମା ଦେଲେ ଘେନ ।
ସାମବେଦକୁ ପାଇଲେ ମୁନି ପଉଲସ୍ତ୍ୟ
ଅଥର୍ବ ବେଦକୁ ଦେଲେ ଅଗସ୍ତିଙ୍କ ହସ୍ତ ।
ଯଜୁର୍ବେଦ ନାରଦଙ୍କୁ ବ୍ରହ୍ମା ଦେଲେ ଘେନ
ଯୁଗକଳ୍ପ ବଞ୍ଚାଇଲେ ମହାମନ୍ତ୍ର ମୁନି ।
ମନୁ ବୋଲେ ଫିଟିଗଲା ମୋର ମନୋଭ୍ରାନ୍ତ
ରାଜାଙ୍କ ଅଗ୍ରତେ ମୁନି ପୁଣି ବଦୟନ୍ତ ।
ଏଥୁ ଅନନ୍ତରେ ଶୁଣ ଶଙ୍ଖାସୁର କଥା
ଶଙ୍ଖା ଶ୍ରୀହରି ଦୁହିଙ୍କ ଯୁଦ୍ଧର ବାରତା ।
ଆରେ ଆରେ ଶଙ୍ଖାସୁର ଦିଅ ବେଦପୋଥି
ଅନେକ ପ୍ରଶଂସା ତାକୁ କଲେ ଦାଶରଥି ।
ଯହୁଁ ଶଙ୍ଖାସୁର କୃଷ୍ଣ ବଚନ ନ କଲା
ତହୁଁ ଶ୍ରୀହରିଙ୍କ ବିଶ୍ୱରୂପ ପ୍ରକାଶିଲା ।

ତହୁଁ ଶଙ୍ଖାକୁ ଧଇଣ ଦେଲେ ଓଲଟାଇ
ହୃଦକମଳ ଉପରେ ବସିଲେ ସେ ଯାଇଁ ।
ଶଙ୍ଖାର ଶରୀର ଦେବ କଲେ ବିଦାରଣ
ପୋଥି ଲୋଡ଼ି ନ ପାଇଲେ ପ୍ରଭୁ ନାରାୟଣ ।
ଗର୍ଭେ ଧରି ବେଦପୋଥି କେହ୍ନେ କଲା ଜୀର୍ଣ୍ଣ
ହୃଦଗତେ ବିଚାରନ୍ତି ପ୍ରଭୁ ନାରାୟଣ ।
ଅତି କଠୋରରେ ତହୁଁ ପାଇଲେକ ପୋଥି
ସେ ପୋଥି ଥୋଇଲେ ନେଇ ବ୍ରହ୍ମାଙ୍କର କତି
ଯହୁଁ ସେହୁ ଦନୁଜର ନ ଗଲାକ ପ୍ରାଣ
ସେ ଶଙ୍ଖାକୁ ବାମକରେ ଧଇଲେ ଆପଣ ।
କୃଷ୍ଣ ବୋଇଲେ ମଧୁର ତୋର ବାଣୀ ଶୁଣି
ତୃପତ ହୋଇଲି ବର ମାଗ ବୀରମଣି ।
ଶଙ୍ଖା ବୋଲେ ନିସ୍ତରିଲି ମୁହିଁ ତୁମ୍ଭେଭେଟେ
ଶୁଦ୍ଧ ଶରୀର ଧଇଣ ବସିବି ବୈକୁଣ୍ଠେ ।
ଅନିତ୍ୟ ସଂସାର ନାଥ ମୋହଜାଲ ଫାଶି
ଏଥିରୁ ଉଦ୍ଧରି ମୁକ୍ତି ଗତିକୁ ଦିଅସି ।
ପ୍ରସନ୍ନ ହୋଇଲେ ଦେବ ଅନାଦି ଅରୂପ
ବାମକରେ ସଂହାରିଲେ ଶଙ୍ଖାସୁର ଦର୍ପ ।
ଅଗୋଚର ଅଟଇ ସେ ମୀନର ମହିମା
ଅନେକ ସ୍ତୁତି କରିଲେ ଯାଇ ବେଦବ୍ରହ୍ମା ।
କେଶବ ବୋଇଲେ ପିତା ସଦା ଯ୍ୟାକୁ ପଢ଼
ଏଡ଼େ ବଡ଼ ମନ୍ତ୍ରପୋଥି କପାଁ ହେଲେ ଛାଡ଼
ସମ୍ଭାଳ ତୁ ମହାଯନ୍ତ୍ର ନ ଛାଡ଼ିବୁ ପୁଣ
ଏତେ ବୋଲି ବୈକୁଣ୍ଠକୁ ଗଲେ ନାରାୟଣ
ସେ ମୀନରୂପକୁ ମୋର ନମସ୍କାର ନିତି
ମୀନରୂପ ଦର୍ଶନରେ ଫିଟିଗଲା ଭ୍ରାନ୍ତି ।
ଦୁରାପଦ ସଂସାରରେ ଦୁଃଖ ଆଉ ଜରା
ସଂସାର ସାଗରେ ପଶି କଲା ମହାଝରା ।
ସେ ଅସୁରତଣ୍ଡାଳେ ଯେ ବଢ଼ଇ ହୋଇବ୍ୟାପି
ବିଶ୍ୱଲୋକଙ୍କୁ କଟାଳ କରନ୍ତି ଅଦ୍ୟାପି ।

ଅନିତ୍ୟ ସଂସାର ଏହୁ ମୋହଜଳ ପାଶୀ
ଏଥୁପାରିକର ମୋତେ ମୁକତି ଦିଅସି ।
ଶ୍ରୀ ମହାଭାରତ ଏହୁ ବିଷ୍ଣୁଙ୍କ ପୁରାଣ
ଏକଲୟ କରି ସୁଜ୍ଞଜନମାନେ ଶୁଣ ।
ଏ କଳରୁ ତରିବାକୁ ଅନ୍ୟଗତି ନାହିଁ
ଅନ୍ୟାୟୀ ଲୋକେ ଶୁଣିବେ ଯ୍ୟାକୁ ପୁଣି କାହିଁ
ପାପ ଆଚରଣେ କାଳ କାଟନ୍ତି ଯେ ଜନ
ସେହି ଲୋକ ଶୁଣିବାକୁ ହେବ କି ଭାଜନ ।
ବିଷ୍ଣୁଙ୍କର କଥା ଅଟେ ତର ଏହା ଶୁଣି
ବିଶ୍ୱାସ କଲେ ବୈକୁଣ୍ଠ ଦେବେ ଚକ୍ରପାଣି ।
ଏହି ମନ ଦୃଢ଼କଲେ ସର୍ବଫଳ ପାଇ
ଏ ମନ ଦୃଢ଼ ନ କଲେ ସର୍ବ ନାଶଯାଇ ।
ଏହିମନ ଏହାକୁ ଯେ ଦଣ୍ଡ ଦେଉଥାଇ
ଏହି ମନ ଏହାକୁ ଯେ ବୈକୁଣ୍ଠେ ନିଅଇ ।
ଆହେ ସୁଜ୍ଞଜନମାନେ ଏ ଭାରତ ଶୁଣ
ଧନ ପୁତ୍ର ଥାଇ ଅନ୍ତେ ପାଇବ କାରଣ ।
ଭାରତ ନିନ୍ଦା ନ କର ହେ ସୁଜ୍ଞ ସୁଜନ
ଭାରତ ନିମନ୍ତେ ହରି ସଂସାରେ ଉତ୍ପନ୍ନ ।
ଆତ୍ମ ବଡ଼ାଇ ନ କର ହେ ପଣ୍ଡିତଗଣ
ଶ୍ରୀକୃଷ୍ଣଙ୍କ ଲୀଳା ଏହୁ ଶ୍ରୀକୃଷ୍ଣ ପୁରାଣ ।
ଭାରତ ଶୁଣାଇବାକୁ ଶକ୍ତି ମୋର କାହିଁ
ଶାରଳା ଚଣ୍ଡୀ ପ୍ରସାଦେ ଏହା ରଚିଲଇଁ ।
ଶ୍ରୀ ଚଣ୍ଡୀ ଶାରଳା ପାଦେ ନମେ ସ୍ତବଦନ
ଏଣୁ ଉଦଯୋଗ ପର୍ବ କଲି ସମାପନ ।
ମନୁ ବୋଇଲେ ହେ ମୁନି କହିଛ ଆପଣ
ଭୀଷ୍ମବୀର ସେନାପତି ହେବେ ଦଶଦିନ ।
ସେ ଭୀଷ୍ମର ଯୁଦ୍ଧ ମୋତେ କହିବ ସମ୍ବାଦ
କହନ୍ତି ଶାରଳା ଦାସ ଦିଅ ପ୍ରଭୁ ବୁଦ୍ଧି ।
ଆହେ ସାଧୁ ସୁଜ୍ଞଜନେ ଶୁଣ ଦେଇ ଚିତ୍ତ
ଶାରଳା ଦାସଙ୍କ ଏହି ଶ୍ରୀମହାଭାରତ ।

ମହାଭାରତ ଉଦ୍‌ଯୋଗ ପର୍ବ ସମ୍ପୂର୍ଣ୍ଣ

ମୁଦ୍ରାକର—ଶ୍ରୀ କମଳଲୋଚନ ଗଡ଼ବଡ଼ୁ, ଶ୍ରୀରାଧାରମଣ ପ୍ରେସ, କଟକ—୧୯୮୪

# ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ପ୍ରସ୍ତୁତ ଅଛି । ଅଗ୍ରିମ ସହ ଅର୍ଡର ପାଇଲେ ଉଚିତ କମିଶନ ସହ ଯୋଗାଇ ଦିଆଯାଏ ।

| | | | | | |
|---|---|---|---|---|---|
| ମହାଭାରତ | ୭ସେଟ୍ | ଟ ୧୩୫-୦୦ | ବ୍ରହ୍ମ ପୁରାଣ | ,, | ଟ ୨୭-୦୦ |
| ବାଲ୍ମୀକି ରାମାୟଣ | ,, | ଟ ୭୫-୦୦ | ସ୍କନ୍ଦ ପୁରାଣ | ,, | ଟ ୨୭-୦୦ |
| ହରିବଂଶ | ,, | ଟ ୭୩-୦୦ | ବୈଦେହୀଶ ବିଳାସ | ,, | ଟ ୨୭-୦୦ |
| ନୃସିଂହ ପୁରାଣ | ,, | ଟ ୭୨-୦୦ | ଦାର୍ଢ୍ୟତାଭକ୍ତି | ,, | ଟ ୧୪-୦୦ |
| ଭାଗବତ | ,, | ଟ ୭୨-୦୦ | ,, ବଡ଼େଇ | ,, | ଟ ୧୭-୦୦ |
| ବ୍ରହ୍ମ ବୈବର୍ତ୍ତ ପୁରାଣ | ,, | ଟ ୪୭-୦୦ | ଛଉବବୋଧ | ,, | ଟ ୨୭-୦୦ |
| ଶିବ ପୁରାଣ | ,, | ଟ ୨୫-୦୦ | ଅବୋଲକରା କାହାଣୀ | ,, | ଟ ୧୫-୦୦ |
| ବାୟୁ ପୁରାଣ | ,, | ଟ ୩୨-୦୦ | | | |

**ତୁଳସୀ ରାମାୟଣ :** (ଶ୍ରୀନାଥ ମିଶ୍ରଙ୍କ କୃତ) ଟ ୧୦୦-୦୦



| | | | |
|---|---|---|---|
| ପଦ୍ମପୁରାଣ | ଟ ୧୦-୦୦ | ଭବିଷ୍ୟତ ପୁରାଣ | ଟ ୭-୫୦ |
| ନାମରତ୍ନ ଗୀତା | ଟ ୧୦-୦୦ | ସୂର୍ଯ୍ୟ ପୁରାଣ | ଟ ୮-୨୫ |
| ଗରୁଡ଼ ପୁରାଣ | ଟ ୧୦-୦୦ | କୃଷ୍ଣଲୀଳା | ଟ ୧୦-୫୦ |
| ଜଗନ୍ନାଥ ପୁରାଣ | ଟ ୧୦-୦୦ | ଗୀତା ବଡ଼େଇ | ଟ ୭-୫୦ |
| ଲକ୍ଷ୍ମୀ ପୁରାଣ | ଟ ୮-୦୦ | ,, ସାଧା | ଟ ୪-୫୦ |
| ଲିଙ୍ଗ ପୁରାଣ | ଟ ୧୭-୦୦ | ଜାତକ ଦର୍ପଣ | ଟ ୩୫-୦୦ |
| [illegible] ପୁରାଣ | ଟ ୧୦-୫୦ | ମାଧବକର ନିଦାନ | ଟ ୧୦-୦୦ |
| [illegible] ପୁରାଣ | ଟ ୨୨-୦୦ | ଗଦାଧର ପଦ୍ଧତି | ଟ ୨୦-୦୦ |
| ଟୀକା ମହାଭାରତ | ଟ ୧୨-୦୦ | ଅଧ୍ୟାତ୍ମ ରାମାୟଣ | ଟ ୧୨-୦୦ |
| ମାର୍କଣ୍ଡେୟ ପୁରାଣ | ଟ ୧୨-୦୦ | ଅମରକୋଷ (ବଡ଼େଇ) | ଟ ୧୦-୦୦ |
| ବିଲଙ୍କା ରାମାୟଣ ୧ ସେଟ୍ | ଟ ୧୨-୦୦ | ହନୁମାନ ବାହୁକ | ଟ ୨-୫୦ |

ପ୍ରାପ୍ତିସ୍ଥାନ:— ଫୋନ : ୨୦୦୨୫

## ଶ୍ରୀରାଧାରମଣ ପୁସ୍ତକାଳୟ

ବାଲୁବଜାର? ଚୌକ, କଟକ—୭୫୩୦୦୨